# BIKRAMADITYA.

BY

**Chintamani Mahanty.**



# ବିକ୍ରମାଦିତ୍ୟ ।

ଶ୍ରୀ ଚିନ୍ତାମଣି ମହାନ୍ତି ପ୍ରଣୀତ ।



ପ୍ରକାଶକ—

ଶ୍ରୀ ଉପେନ୍ଦ୍ର ପ୍ରସାଦ ମହାନ୍ତି ବି. ଏ.



ଦ୍ୱିତୀୟ ସଂସ୍କରଣ ।

୧୯୨୪

ମୂଲ୍ୟ ୦ ୧୫



ଲକ୍ଷ୍ମୀଗଡ଼ାଧୀଶ୍ୱର ଶ୍ରୀ ଶ୍ରୀ ମାହେଶ୍ୱରୀପ୍ରସାଦ ଦେବ ।

# ଉପହାର ।



ଫେଡ଼ ଫେଡ଼ ସିଂହଦ୍ୱାର କେ ଅଛୁ ପ୍ରହରୀ,
ବହୁ ଦୂର ଆସିଛି ମୁ ରାଜପୂଜାପାଇଁ ।
ଉତ୍କଳ-ଉଜ୍ଜ୍ୱଳରତ୍ନ, ସାହିତ୍ୟ-ଭରସା,
ବାଣୀକୁଞ୍ଜ-ଲଞ୍ଜିଗଡ଼-ମଞ୍ଜୁ-ମହୀଭୂଷା,
ଶ୍ରୀଯୁକ୍ତ ଶ୍ରୀ ମାହେଶ୍ୱରୀପ୍ରସାଦ ଦେବାଖ୍ୟ
ହେ ନୃପ, ଯେନବାହେଉ ଯାନ ଅର୍ଘ୍ୟପୂଜା
ଯାନର, ନୃପତି ତୁମ୍ଭେ, ଥିବ ବହୁଗୁଣେ
ବିମଣ୍ଡିତ, କଲ୍ୟାଣିତ ନିସର୍ଗ ନିଭୃମେ,
ମାତ୍ର ମୋର ପୂଜାଲକ୍ଷ୍ୟ ନୁହେ ସେ ସକଳ ।
ଗୁପ୍ତ ସାହିତ୍ୟିକ ତୁମ୍ଭେ ନୀରବ ସାଧକ,
ଧରିଛ ଆତ୍ମଗୋପନ— ମହାଜନଧାରା,
ପ୍ରଚ୍ଛନ୍ନେ ପ୍ରତିଷ୍ଠା କର ବାଣୀ-ସ୍ୱର୍ଣ୍ଣ-ସୌଧ,
ପୂଜୁଛ ପ୍ରଚ୍ଛନ୍ନେ ବାଣୀ ବରଦ ନୂପୁର;
ସେ ପୂଜାର ଘଣ୍ଟାଧ୍ୱନି ପବିତ୍ର ମଧୁର,
ଶୁଣୁଛି ଉତ୍କଳ ତାହା ଉତ୍କର୍ଣ୍ଣେ ଉତ୍ସବେ ।
ତାହାହିଁ ମୋହର ପୂଜା ଉଦ୍ଦେଶ୍ୟ କେବଳ,
ତାହା ମୋ ଅନ୍ତରତର ପ୍ରାଣର ଆକାଙ୍କ୍ଷା ।

ତୁମ୍ଭର ସେ ପୂଜା ନୁହେ ସ୍ୱାର୍ଥ-କଳୁଷିତ,
ତୁମ୍ଭର ସାହିତ୍ୟ ସେବା ସାହିତ୍ୟ ସକାଶେ,
ନୁହ ହେ ତୁମ୍ଭର ତୁମ୍ଭେ—ତୁମ୍ଭେ ଜଗତର,
ହୋଇ ପାରେ ନିଜପାଇଁ କିଂଶୁକସୌରଭ,
ଚମ୍ପକ ରହିଛି ମାତ୍ର ଜଗତ ସକାଶେ ।
କିଏ ସାହିତ୍ୟିକ, ନୃପ ? ସାହିତ୍ୟ ଯେ ବୁଝେ,
ଆଦର ସାହିତ୍ୟେ କରେ ରକ୍ଷଣ ପୋଷଣ
କାୟମନଃପ୍ରାଣେ, ସେହି ସାହିତ୍ୟିକ ଏକା,
ନ ଲେଖୁ ପଛକେ କାବ୍ୟ, ନ ଲେଖୁ ନାଟକ ।
କେଉଁ ପୁଣ୍ୟବଳେ ପୁଣି କେଉଁ ପୁଣ୍ୟବେଳେ
ହୋଇଥିଲି ପରିଚିତ ତବ ସହ ସିଏ ?
ଢାଳିଲି ଯେ ଉତ୍ସାହର ଅମୃତପ୍ରବାହ
ନିଷ୍ଫଳ-ବାସନା-କ୍ଲାନ୍ତ ନୈରାଶ୍ୟସନ୍ତପ୍ତ
ହୃଦୟେ ମୋହର, ଜାଣେ ମନ ମୋର ତାହା,
ଶୁଣି ତବ ଉତ୍ତେଜନା ଉଚ୍ଚାଟ ସଙ୍ଗୀତ
ବାଜିଣ ଉଠିଲା ମୋର ଜୀର୍ଣ୍ଣ ମନୋବୀଣା—
ଛିନ୍ନତାର, ଚିରସାଢ଼, ସତତ ନୀରବ ।
ନୋହିଥିଲେ ଶ୍ରୀଗୁରୁଙ୍କ କୃପାଦୃଷ୍ଟିପାତ
ହୋଇଥାନ୍ତା ପରିଣତ ଏ "ବନମାହାତ୍ମ୍ୟ"
କୀଟଖାଦ୍ୟ କିମ୍ବା କାଳଖାଦ୍ୟ କିଛି କାଳେ,
ଏ କୃପାର ପ୍ରତିଦାନ କି ଦେବ ନୃବର ?

ଅର୍ପୁଛି ତାହାକୁ ଏକା ଉପହାରରୂପେ,
ଇନ୍ଦ୍ରଙ୍କ କୃପାର ଫଳ—ବନ ଫଳ ଫୁଲ,
ସେହି ଫଳ ଫୁଲେ ପୁଣି ପୂଜନ୍ତି ଇନ୍ଦ୍ରଙ୍କୁ ।
ତବ ପୂତ ସ୍ନେହ-ସ୍ମୃତି ରହିଲା ଜଡ଼ିତ
ଏ "ବନମାଧୁର୍ଯ୍ୟ" ସହ, ଥିବାଯାଏଁ ତାହା,
ଏହାହିଁ ମୋହର ନୃପ, ସାନ୍ତ୍ୱନା ଆନନ୍ଦ ।

ଭଦ୍ରଖ
୭ । ୯ । ୧୯୧୭ ।



ଶ୍ରୀଗୁରୁଙ୍କର
ସ୍ନେହାନୁଗତ
ଶ୍ରୀଚନ୍ଦ୍ରମଣି ମହାନ୍ତି ।



# ଭୂମିକା ।।

—※—

ଅତୀତର ସ୍ମୃତିରୁ ବର୍ତ୍ତମାନ ନିୟମିତ ହେଲେ ଭବିଷ୍ୟତରେ ଫଳ ଲାଭ ହୁଏ । ଅତୀତ କାଳ ଗୌରବାନ୍ୱିତ ଥିଲେ ତାହାର ସ୍ମରଣଦ୍ୱାରା ବର୍ତ୍ତମାନ ପୁରୁଷାର୍ଥ ସାଧନାରେ ତତ୍ପରତା ଜାତ ହୋଇ ଭବିଷ୍ୟତରେ ନଷ୍ଟଗୌରବର ଉଦ୍ଧାର ହେବାର ସମ୍ଭାବନା । ଏହି ନ୍ୟାୟରୁ ଅତୀତର ଆଲୋଚନା ସର୍ବଥା କର୍ତ୍ତବ୍ୟ । ପୃଥିବୀର ଶୀର୍ଷସ୍ଥାନୀୟା ରତ୍ନଗର୍ଭା ଭାରତ-ଭୂମି ଅତୀତ କାଳରେ ବହୁ ମହାତ୍ମାଙ୍କ ସିଂହାସନରେ ପରିଶୋଭିତ ହୋଇ ସମଗ୍ର ପୃଥିବୀରେ ବିଜୟପତାକା ଉଡ଼ାଇଥିଲା । ସେ ବହୁଯୁଗର କଥା । ଅପେକ୍ଷାକୃତ ସ୍ମରଣୀୟ ସମୟରେ ବିକ୍ରମାଦିତ୍ୟଙ୍କ ରାଜତ୍ୱ ଇତିହାସର ଅଧୀନ । ତାହା ହେଲେ ସୁଦ୍ଧା ପୂର୍ବକାଳୀନ ଲୋକମାନଙ୍କର ତ୍ରୁଟି ହେତୁ ନାନା ପ୍ରକାର କିମ୍ବଦନ୍ତୀ, ଗାଳଗଳ୍ପ ଏବଂ ଅନ୍ଧବିଶ୍ୱାସ ପରମ୍ପରା ଆଘାତ ହୋଇ ସେହି ମହାତ୍ମାଙ୍କ ଉଦ୍ଭବ, ଜୀବନୀ ଓ କାର୍ଯ୍ୟକଳାପ ଇତିହାସର ନିୟମରୁ ବାହାରିଯାଇଅଛି । ଖ୍ରୀଷ୍ଟପୂର୍ବ ୫୭ ବର୍ଷ ସମୟରେ ଏହାଙ୍କ ସମ୍ବତ ଆରମ୍ଭ ହୋଇଅଛି ; ମାତ୍ର ଅନେକ ତତ୍ତ୍ୱବିତ୍ ପଣ୍ଡିତମାନେ ସ୍ଥିର କରି-ଅଛନ୍ତି ଯେ, ଛ ଶତ ବର୍ଷ ତହିଁରେ ଯୋଗ ହୋଇ ଗଣନାରମ୍ଭ ହୋଇ-ଥିବା ହେତୁ ପ୍ରକୃତରେ ସମ୍ବତ ୫୪୪ ମସିହାରେ ଆରମ୍ଭ ହୋଇଥିବା ସିଦ୍ଧାନ୍ତ ହେଉଅଛି । ଅନେକଙ୍କର ମତ, ବିକ୍ରମାଦିତ୍ୟ ଷଷ୍ଠ ଶତାବ୍ଦୀର ଆରମ୍ଭରେ ରାଜତ୍ୱ କରୁଥିଲେ । ଏହା ହେଲେ ସେହି ସମୟରେ ଉତ୍କଳରେ ଯଯାତିକେଶରୀ ରାଜତ୍ୱ କରୁଥିବାରୁ ବିକ୍ରମାଦିତ୍ୟଙ୍କୁ ତାଙ୍କର ସମସାମୟିକ ବୋଲିବାରେ ଆପତ୍ତି ନାହିଁ । ପୁରୀ ଦେଉଳ ଯଯାତିକେଶରୀଙ୍କ କର୍ତ୍ତୃକ ନିର୍ମିତ ହୋଇଥିବା ହେତୁ ସେ ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟା ପାଇଥିଲେ ଏବଂ ବିକ୍ରମାଦିତ୍ୟଙ୍କ ଚରିତରେ ତାହାର ବର୍ଣ୍ଣନା ଓ ଯଯାତିକେଶରୀଙ୍କ ସହ ତାଙ୍କର ବନ୍ଧୁତ୍ୱ ସ୍ଥାପନ କରିବାରେ ଉତ୍କଳ-କବି ଉତ୍କଳ-ଗୌରବର କଳ୍ପନା କରିବା ସ୍ୱାଭାବିକ । ବିକ୍ରମାଦିତ୍ୟଙ୍କ ଐତିହାସିକ ତତ୍ତ୍ୱ ଉଦ୍ଧା-

କାଳରେ ସମାଚ୍ଛନ୍ନ ଥିବାରୁ ଏହି କାବ୍ୟଗତ କଳ୍ପନାମାନ ପାଠକେ ସମାଦୃତ ହୋଇ ଆସ୍ୱାଦନ କରିବେ । ନବରତ୍ନାଳଙ୍କୃତ ସଭର ମହାପ୍ରତାପୀ ନ୍ୟାୟାଧୀଶ ରତ୍ନାକରତୀରସ୍ଥ ଭାରତର ରତ୍ନଭୂତ ସକଳଲୋକକର୍ଷଣକାରୀ ଶ୍ରୀ ମନ୍ଦିର ଓ ଜଗନ୍ନାଥଦେବଙ୍କର ଦର୍ଶନ କରି ନ ଥିବା କବିଙ୍କ ମନକୁ ଆସୁ ନାହିଁ, ଅଥଚ ସେ ଉତ୍କଳକୁ ଆପଣାର ଆୟତ୍ତାଧୀନ କରି ନ ଥିଲେ । ଏଣୁ କବି କଳ୍ପନାରେ ଯାହା କିଛି ଅଧିକ ହୋଇଅଛି, ତାହା ପୂର୍ବ କଳ୍ପନା ସହିତ ସଂଯୋଜିତ ହେବ ।

ମୁଁ ଏହି କାବ୍ୟ ଖଣ୍ଡିକର ପାଣ୍ଡୁଲିପି ପାଠ କରିବାକୁ ପାଇ ଆପଣାକୁ ଧନ୍ୟ ମଣିଅଛି ଏବଂ ଅନୁରୁଦ୍ଧ ହୋଇ ଭୂମିକା ଲେଖିବାଦ୍ୱାରା କାବ୍ୟର ମର୍ଯ୍ୟାଦା କିଛି ମାତ୍ର ବୃଦ୍ଧି ପାଇ ନ ଥିଲେହେଁ ମୋତେ ଦୁଇ ପଦ କହିବାର ଅବସର ମିଳିଅଛି । ପାଠକମାନେ ଏ କାବ୍ୟରୁ ନାନାବିଧ ରତ୍ନ ସଞ୍ଚୟ କରି ପାରିଲେ ଆଧୁନିକ କବିକୁଳକୁଶଳଙ୍କ ଶ୍ରମ ସାର୍ଥକ ହେବ ।

୩୧ । ୧ । '୬୭
କଟକ ।

ଶ୍ରୀ ରାମଶଙ୍କର ସହୁ

# ପ୍ରଥମ ସଂସ୍କରଣ ପ୍ରକାଶକଙ୍କର ନିବେଦନ ।



ଅତୀତ ଗୌରବର ପୁଣ୍ୟସ୍ମୃତି ବର୍ତ୍ତମାନ ଏବଂ ଭାବୀ ଯୁଗରେ ଉନ୍ନତିର-ପ୍ରବର୍ତ୍ତିକା ଜାଳ ଦିଏ । ବିଶେଷତଃ ଜାତୀୟ ଉନ୍ନତିର ବିରାଟ ସୌଧ-ପ୍ରତିଷ୍ଠାତା ଯେଉଁ ଯୋଗଜନ୍ମା ମହାପୁରୁଷମାନେ ଦେଶବାସିଙ୍କ ସ୍ମୃତି-ମନ୍ଦିରରେ ନିଜର ସଚନ୍ଦନ ପୁଷ୍ପାସ୍ତୃତ ମୂର୍ତ୍ତି ସଂସ୍ଥାପନ କରି ଯାଇଅଛନ୍ତି ଏବଂ ସେହି ଅସାଧାରଣୀ ସ୍ମୃତି-ମୂର୍ତ୍ତି ଅତୁଳ ପାବିତ୍ର୍ୟ ଓ ସ୍ନିଗ୍ଧ ତରଳ ମଧୁରତାରେ ଅବଧି କମନୀୟ ହୋଇ ରହିଅଛି ଏବଂ ଚିରକାଳ ଥିବ, ସେହି ପ୍ରାତଃସ୍ମୃତ ମହାତ୍ମାମାନଙ୍କର ଆଦର୍ଶ ଜୀବନୀ ଅନୁଧ୍ୟାନ କେବଳ ବାହ୍ୟିକ ଉନ୍ନତି ନୁହେ – ବିପୁଳ ପୁଣ୍ୟାର୍ଜନର ସୁପନ୍ଥା, ଏହା ଦ୍ୱିରୁକ୍ତି ନୁହେ । ଅର୍ଦ୍ଧଭାରତର ଅର୍ଥାତ୍ ସମଗ୍ର ଆର୍ଯ୍ୟାବର୍ତ୍ତର ଅପ୍ରତିଦ୍ୱନ୍ଦ୍ୱୀ ସମ୍ରାଟ, ପରମେଶ୍ୱାସ, ଧାର୍ମିକପ୍ରବର ବିକ୍ରମାଦିତ୍ୟ ମଧ୍ୟଯୁଗର ଉନ୍ନତି-କଳ୍ପଦ୍ରୁମ ଅଟନ୍ତି । ତାହାଙ୍କ ରାଜତ୍ୱକାଳରେ କି ସାହିତ୍ୟ, କି ଜ୍ୟୋତିଷ, କି ଆୟୁର୍ବେଦ, କି ଇତିହାସ, କି ଦର୍ଶନ, କି କୃଷି, କି ଶିଳ୍ପକଳା, କି ବାଣିଜ୍ୟ ସକଳ ବିଦ୍ୟାର ଅସାଧାରଣ ଉନ୍ନତି ସଂସାଧିତ ହୋଇଥିଲା । ମାତ୍ର ପରିତାପର ବିଷୟ, ତାହାଙ୍କ ସମ୍ବନ୍ଧରେ ଇତିହାସ ପ୍ରାୟ ନୀରବ । ବିକ୍ରମାଦିତ୍ୟଙ୍କ ଚରିତବର୍ଣ୍ଣନାତ୍ମକ ଯେ କେତେଖଣ୍ଡ ପ୍ରାଚୀନ ପୁସ୍ତକ ଅଛି, ତାହା ଏରୂପ ଅତିରଞ୍ଜିତ ଏବଂ ଅମାନୁଷୀ ଘଟଣାପୂର୍ଣ୍ଣ ଯେ, ତାହା ଉପରେ ବିଶ୍ୱାସ ସ୍ଥାପନ କରିହୁଏ ନାହିଁ । ସେଥିରେ ସତ୍ୟର ସତ୍ତା ବା ମୌଳିକତା ଥିବା ପରି ପ୍ରତୀତ ହୁଏ ନାହିଁ । ଜାତୀୟ ସାହିତ୍ୟରେ ଏତାଦୃଶ ସତ୍ୟଗୋପନ ଏବଂ କାଳ୍ପନିକତାର ପ୍ରଚୁର ସାହିତ୍ୟର ପ୍ରାଣବାୟୁ ପକ୍ଷରେ ବିଷମ ବିଷାକ୍ତ ଏବଂ ଘୋର ଅସ୍ୱାସ୍ଥ୍ୟକର । ଯାହାଙ୍କ ଯୋଗେ ଭାରତଭୂମି ଚିରଗୌରବାନ୍ୱିତା, ଯାହାଙ୍କ ଜୀବନର ପୂତ ଲଳିତ ସୁନ୍ଦର ସାହିତ୍ୟ ପ୍ରାଣମୟୀ ରାଗିଣୀରେ କୋଟିକଣ୍ଠରେ ଗୀତ ହେବାର ବାଞ୍ଛନୀୟ,

ତାଙ୍କର ଜୀବନୀ ତମସାଚ୍ଛନ୍ନ ! ଆମ୍ଭମାନଙ୍କର ଜାତୀୟ କବି ଚନ୍ଦ୍ରମଣି ଏହି ତ୍ରୁଟି ଅନୁଭବ କରି ନାନା ପୁସ୍ତକ, ପତ୍ରିକା ଓ ଆଖ୍ୟାୟିକା ଅବଲମ୍ବନ-ପୂର୍ବକ "ବିକ୍ରମାଦିତ୍ୟ" କାବ୍ୟ ପ୍ରଣୟନ କରିଅଛନ୍ତି । ସେ ଯହିଁରୁ ଯେତିକି ଐତିହାସିକ ସତ୍ୟ ପାଇଅଛନ୍ତି, ତହିଁରେ ନିଜର କବି-କଳ୍ପନା ମିଶାଇ, କାବ୍ୟର ଅଙ୍ଗପ୍ରତ୍ୟଙ୍ଗ ଗଠନ ଏବଂ ମଣ୍ଡନ କରିଅଛନ୍ତି । ଅନେକ ସ୍ଥଳରେ କବିବର ଚନ୍ଦ୍ରମଣିଙ୍କର କଳ୍ପନା ବାସ୍ତବବତ୍ ପ୍ରତୀୟମାନ ହୁଏ । କାବ୍ୟର ଗୁଣାଗୁଣ ସମ୍ବନ୍ଧରେ ମୁଁ କିଛି କହିବି ନାହିଁ । ସାହିତ୍ୟପ୍ରାଣ ବହୁମାନ୍ୟ ରାମଶଙ୍କର ରାୟ ମହୋଦୟଙ୍କ ଲିଖିତ ଭୂମିକା ସେଥିର ନୀରବ ସାକ୍ଷୀ । ରେଣୁମାତ୍ର ହୀରାକଣୀରୁ ବହୁକିରଣ ରେଖା ନିର୍ଗତ ହେଲା ପ୍ରାୟ, ସେହି ସଂକ୍ଷିପ୍ତ ଭୂମିକାରୁ କାବ୍ୟର ଅଶେଷ ଉତ୍କର୍ଷ ଆଭାସି ଉଠୁଅଛି । ମେଘାସନ ପର୍ବତଶିଖରରୁ ପ୍ରାକୃତିକ ଉତ୍କଳର ଦୂରଶୋଭା ଦର୍ଶନ, ପୁରୁଷୋତ୍ତମକ୍ଷେତ୍ରର ବର୍ଣ୍ଣନା ଏବଂ ବିକ୍ରମାଦିତ୍ୟଙ୍କ ନବରତ୍ନଶୋଭିତ ସଭାର ବର୍ଣ୍ଣନା ପ୍ରଭୃତି ପାଠ କଲେ ପାଠକବର୍ଗ କାବ୍ୟର ଉପାଦେୟତା ଅକ୍ଲେଶରେ ହୃଦୟଙ୍ଗମ କରି ପାରିବେ ।

କଳାହାଣ୍ଡି ଅନ୍ତଃପାତୀ ଲାଞ୍ଜିଗଡ଼ର ସାହିତ୍ୟପ୍ରେମିକ ପ୍ରତିଭା-ବିହିତ ରାଜା ଶ୍ରୀଯୁକ୍ତ ଶ୍ରୀ ମାହେଶ୍ୱରୀ ପ୍ରସାଦ ଦେବ ମହୋଦୟ ସ୍ୱତଃପ୍ରବୃତ୍ତ ହୋଇ ଏହି ବିରାଟ କାବ୍ୟର ମୁଦ୍ରଣବ୍ୟୟ ପାଞ୍ଚଶତ ମୁଦ୍ରା ପ୍ରଦାନ କରି-ଅଛନ୍ତି । ଏହି ଦୁର୍ଲଭ ବଦାନ୍ୟତା ହେତୁ ସେ ଏକା ଉତ୍କଳ ସାହିତ୍ୟର ନୁହେଁ—ଉତ୍କଳ ଜାତିର ଧନ୍ୟବାଦଭାଜନ ହୋଇଅଛନ୍ତି । କବି ମହୋଦୟଙ୍କର ପ୍ରତିମୂର୍ତ୍ତିସହ ଶଂସିତ ରାଜା ମହୋଦୟଙ୍କର କୋମଳ କମନୀୟ ପ୍ରତିମୂର୍ତ୍ତି କାବ୍ୟାଦ୍ୟରେ ସଂଯୋଜିତ ହେଲା ।

ବ୍ରହ୍ମପୁର, ଗଞ୍ଜାମ ।
୨ । ୯ । ୧୯୧୭ ।

ଶ୍ରୀ ମାନ୍ଧାତା ଗୋରାଚନ୍ଦ୍ର ପଟ୍ଟନାୟକ ।

# ବିକ୍ରମାଦିତ୍ୟ ।

## ପ୍ରଥମ ସର୍ଗ ।



ସ୍ୱାଗତ ଅତୀତ ସ୍ମୃତି ପୁରାବୃତ୍ତମୟୀ,
ସୁଖ-ଦୁଃଖ-ଉନ୍ମେଷିଣୀ, କହ କୃପା କରି
ରାଜର୍ଷି ବିକ୍ରମାଦିତ୍ୟ ପବିତ୍ର ଆଖ୍ୟାନ,
ଫେଡ଼ି ତବ ରଙ୍ଗାଳୟ ମହାଯବନିକା
ଦେଖାଅ ସେ ନାଟକର ପୁଣ୍ୟ ଅଭିନୟ ;
ସ୍ମୃତି-ଯଜ୍ଞବେଦିକାରେ ବସି ଗୁର୍ବାସନେ
ଶିଖାଅ ସେ ଅଭିନୟ କରି ମୋତେ ସ୍ପଷ୍ଟ ।

ଅମର କୌସ୍ତୁଭଭୂଷା ପୁଷ୍କରମାଳିନୀ *
କାମଗତି, ଧର୍ମ୍ମମତି, ଭବେ ଅପ୍ରତିମା,
ଜ୍ୟୋତ୍ସ୍ନାସାର ଉପାଦାନେ ହୋଇ ସେ ଗଠିତ,
ସୌଦାମିନୀ ପ୍ରଭା-ଜଳେ କରିଅଛି ସ୍ନାନ

---

* ଇନ୍ଦ୍ର ସଭା ।

ଦେବପ୍ରଭଙ୍କ ସେ ସଭା, ସ୍ଫଟିକ-ଭାସ୍ୱର,
ଉପଯୁକ୍ତ ବ୍ୟବହାରେ ଜ୍ୱଳେ ଦାଉ ଦାଉ ।
ଭୃତ ଦ୍ୱାରେ ଗବାକ୍ଷରେ ଯାଉଁଳି କବାଟ
ହୀରଦୀପ୍ତ, ଦଶେ ତାର ନେତ୍ରପଥ ପ୍ରାପ୍ତ,
ଉଚ୍ଚ ବହୁ ସ୍ୱର୍ଣ୍ଣସ୍ତମ୍ଭ ହୋଇ ଧାଡ଼ି ଧାଡ଼ି
ଧରି ରତ୍ନ ମେହେରାବଚମ୍ଭ, ଶବଳିତ,
ଝୁଲୁଛି ମାଣିକ୍ୟ ହାଣ୍ଡି, ମାଣିକ୍ୟର ଝାଡ,
ଥୋପା ଥୋପା ଗଜମୁକ୍ତା ଗୁମ୍ଫିତ ରୁଚିରେ,
ସ୍ୱର୍ଣ୍ଣଦୀ-ଶୀକର-ସିକ୍ତ-ଶୀତ-ସମୀରଣ
ଖେଳେ ତହିଁ ମନ୍ଦେ ମନ୍ଦେ, ବିତରି ସତତ
ନନ୍ଦନର ପାରିଜାତ-ପୁଷ୍ପ-ପରିମଳ ।
ସେ ମହାସଭାରେ ମେଘ ମର୍କତ ଆସନ,
ବିଦ୍ୟୁତହିଁ ବିଜଡ଼ିତ କୁନ୍ଦନ ଲତିକା,
ତାରରାଜ ପ୍ରଜ୍ୱଳିତ ରତ୍ନ ଦୀପାବଳୀ,
ଚନ୍ଦ୍ର ଚନ୍ଦ୍ରଶାଳାଚୂଳେ ରଜତ କଳସ ;
ସ୍ୱର୍ଗ ପ୍ରଦର୍ଶନୀରୂପେ ବିରାଜେ ସେ ସଭା,
ଧରେ ଯାହା ଗର୍ଭେ, ତାହା ସକଳ ସ୍ୱର୍ଗୀୟ,
ବିନଶ୍ୱର ପାର୍ଥିବତା ନାହିଁ ତହିଁ କିଛି ;
ପବିତ୍ର କୁଷ୍ମାଣ୍ଡେ ମନା ଅଳାବୁ ମିଶ୍ରଣ ।
ଏସନ ସଭାରେ ଦିନେ ବିଜେ ବଜ୍ରପାଣି
ଗଜଦନ୍ତ ସିଂହାସନେ, ଉପବିଷ୍ଟ ଦେବେ

ମେଘ-ମଞ୍ଚେ, ଯତବ୍ରତ ଦେବର୍ଷିଙ୍କ ସହ ;
କରୁଛନ୍ତି ପିକକଣ୍ଠ ଗନ୍ଧର୍ବନକର
ପଞ୍ଚମେ ସତାଳାପ ଝଙ୍କାର ବଲ୍ଲକୀ,
ନୃତ୍ୟେ ରତ ଅପ୍ସରାଏ, ଅଶେଷ ଠାଣିରେ ।
ସେ ଦୃଶ୍ୟ ମଧୁର ବଡ଼, ପ୍ରାଣ ଉନ୍ମାଦକ,
ଯେସନ ଚନ୍ଦ୍ରକାହାସୀ-ମଧୁ-ପର୍ବନଶା ।
ଆଖ୍ୟାରେ ଗନ୍ଧର୍ବସେନ ଇନ୍ଦ୍ରଙ୍କ କୁମର
କରୁଥିଲେ ନୃତ୍ୟକଳା ସଭା ମଧ୍ୟେ ବସି,
ସ୍ୱଭାବତଃ ନାଟ୍ୟନୃତ୍ୟ ଚାଞ୍ଚଲ୍ୟ-ଉଦ୍ଦୀପା,
ଏକେ ସେ ଯୁବକ ହେଲେ ଚଳଚଞ୍ଚ ତହିଁ ।
ବୁଝି ପାର ବଜୀ ତାହା ଆକାର ଇଙ୍ଗିତୁ,
ଉଠିଲେ ପ୍ରଜ୍ୱଳି ଖରେ ରୋଷେ ଘୂର୍ଣ୍ଣାଭରେ,
ବଳିଗଲା ତାଙ୍କ କ୍ରୋଧ ଦୁର୍ବାସା କ୍ରୋଧକୁ,
ଭାଷିଲେ ତନୁଜେ ଚାହିଁ ଆରକ୍ତନୟନେ,—
ବର୍ବର, ନୋହୁ ତୁ ଯୋଗ୍ୟ ବସିବାକୁ ଏଥି,
ଅପବିତ୍ର କଲୁ ଆଜ ପୁଣ୍ୟ ଦେବସଭା,
ହୋଇ ତୁ କାମାନ୍ଧ ମୂଢ଼, ପ୍ରାକୃତ ପ୍ରକାରେ
ପାପ-ପଦେ ଦେବ-ଧର୍ମେ ଦେଲୁ ପୁଷ୍ପାଞ୍ଜଳି,
କେଡ଼େ ଅକରଣୀ ତୋର, ଅହୋ କି ଅଦ୍ଭୁତ,
ହେଲା ନାହିଁ ଲଜ୍ଜା ତଳେ ସୁରଗଣ ପ୍ରତି,
କମ୍ପା ଗୀତ ମୋହୋ ପ୍ରତି, ଧିକ କୁଳାଙ୍ଗାର !

ସହେ ନାହି ପାପଭାର ପବିତ୍ରା ଅମରା,
ଅତଏବ ଆରେ ଦୁଷ୍ଟ ପାଗଳ-ଆତ୍ମଜ,
ଏହି ମୁହୂର୍ତ୍ତରେ ତୁହି ହୋଇ ସ୍ୱର୍ଗଚ୍ୟୁତ,
ରହି ଯାଇ ମର୍ତ୍ତ୍ୟପୁରେ ଖର ରୂପ ଧରି ।
ଶୁଣି ଏ କଠୋର ଶାପ ପୁରନ୍ଦରସୂନୁ,
ଭୟେ କମ୍ପି ଥରହର, କୃତାଞ୍ଜଳିପୁଟେ
ନିବେଦିଲେ ପିତୃପଦେ କରୁଣେ କାତରେ,—
ଅଜ୍ଞାନ ବାଳୁତ ମୁହିଁ, ପିତଃ, ଦୁରାଚାର,
ମାତ୍ର ତୁମ୍ଭେ କ୍ଷମାମୟ ପିତା, ପୁତ୍ର ପ୍ରତି
ପିତୃସ୍ନେହ ନୈସର୍ଗିକ ବିଧି, ପିତାପାଶେ
କ୍ଷମଣୀୟ ଆତ୍ମଜର କୋଟି ଅପରାଧ,
ଘଟେ ପୁଣି ଅତିବଡ଼ ଧୀମାନ ଜନର
ସ୍ଖଳନ ଏ ଭବେ ପଦ, କି ଗୁରୁ ବା ଏଥି
ମୋ ଭଳି ତରଳମତି ଅଜ୍ଞ ବାଳକର ?
ଜାଣୁ ଜାଣୁ ଏହା, କଲ ସିନା ଦଗ୍‌ଧମୋତେ
ତୀବ୍ର ଦୁରୀକ୍ଷଣାନଳେ, * ଅହୋ କି ଯନ୍ତ୍ରଣା !
ବରଂ ଏହାଠାରୁ ଶ୍ରେୟଃ ଶିରେ ବଜ୍ରାଘାତ,
ସଦ୍ୟ ପ୍ରାଣହନ୍ତିର ତାହା ନୋହେ ଦୁଷ୍କୃତର ।
ପିତୃଦେବ, ଶୁଣିଛି ମୁଁ ମର୍ତ୍ତ୍ୟର ବେଭାର
ନିର୍ମମ, ନିଷ୍ଠୁର, ନାହିଁ ତହିଁ ମୈତ୍ରୀ, ପ୍ରୀତି—

---

* ଅଭିସମ୍ପାତାଗ୍ନିରେ ।

ଅନାବିଳା, ଜଳେ ଖରେ ସ୍ୱାର୍ଥ-ହୁତାଶନ,
ପୁଣି ତାହା ବସର୍ପିତ ଦ୍ୱେଷ-ହିଂସା-ବକ୍ଷେ ;
ଯେହ୍ନୁ ଧର୍ମ ଅପଳାପ ଭୂମି, ନାହିଁ ଯହିଁ
ସାମ୍ୟ-ସୁଧା, ଝରେ ନାହିଁ ସ୍ନେହ-ମନ୍ଦାକିନୀ,
ଫୁଟେ ନାହିଁ ପୁଣି ଆହା ଶାନ୍ତି- ପାରିଜାତ,
ସେ ଅସ୍ୱର୍ଗରାଜ୍ୟେ ପିତଃ, ଯିବାକୁ ସର୍ବଥା
ନ ବଳେ ମାନସ, ହୁଏ ମହାଭୟ ଜାତ,
ମାଗୁଛି ଏ ଭିକ୍ଷା ତେଣୁ, ପ୍ରକାଶି କରୁଣା
କର ଶାପମୁକ୍ତ ଏହି ହତଭାଗ୍ୟ ସୁତେ ।
ଅଶ୍ରୁସିକ୍ତ କାତରୋକ୍ତି ଶୁଣି ସୁନାଶୀର
ଗନ୍ଧର୍ବସେନର, ହେଲେ ଦୟାର୍ଦ୍ରହୃଦୟ,
ଝିମିଟେ * ମିଳାଇଗଲା ସେ ଦୁର୍ବାର କ୍ରୋଧ;
ଅଲକ୍ଷଣସ୍ଥାୟୀ ସିନା ମହତର କୋପ,
ଜଳର ଉଷ୍ଣତା ପ୍ରାୟ, କୋପ ନୁହେ ତାହା,
କେବଳ କୋପର ଛଳ, ଅବ୍ୟର୍ଥ ବର ସେ
ଦୁର୍ନୀତି ଦମନ ପକ୍ଷେ, ଅତ୍ୟୁକ୍ତି ଏ ନୁହେ ।
ଭଷିଲେ ସହସ୍ରାକ୍ଷ କୋମଳ ବଚନେ—
ବତ୍ସ, ଆସେ ନାହିଁ ଫେର କାହିଁ କେଉଁ କାଳେ
କହିଗଲା କଥା, ତଥା ବହିଗଲା ପାଣି,
ହସ୍ତଚ୍ୟୁତ ଶର ଆଉ ନ ଆସେ ହସ୍ତକୁ ;

* ମୁହୂର୍ତ୍ତକରେ ।

ହେବ ନାହିଁ ପଣ୍ଡ ବାବୁ, ବଚନ ମୋହର,
ଫଳିବ ନିକର * ତାହା । ଏକା ଜଗତ୍ପିତା
କୁକର୍ମର ଦଣ୍ଡଦାତା, ବିହିଲେ ସେ ତୋତେ
ମୋହୋଦ୍ୱାର ଶାସ୍ତି, ମୁହିଁ ନିମିତ୍ତ ମାତର ।
ହେବ ନାହିଁ ଭୋଗିବାକୁ ଏ ଅଭିସମ୍ପାତ
ଚିରଦିନ ତୋତେ, ଶୀଘ୍ରେ ହେବୁ ତୁ ମାନବ,
ଦିବସେ ଗର୍ଦ୍ଦଭ ରୂପ ଧରିବୁ ଆବର,
କିଛୁକାଳ ଏହିପରି ରହିବୁ ମର୍ତ୍ତ୍ୟରେ;
ଧାରା ନଗରୀର ରାଜା ପରମ ଧାର୍ମିକ,
ଧରନ୍ତି ସେ ଧାର ନାମ, କରିବେ ସେ ଯେବେ
ଭସ୍ମୀଭୂତ ତୋର ଏହି ଗର୍ଦ୍ଦଭ ଶରୀର,
ଶାପମୁକ୍ତ ହୋଇ ତେବେ ଆସିବୁ ମୋ ପାଶେ;
ସହିବାକୁ ଦୁଃଖ କେବେ ନ ହେବୁ ବିମୁଖ,
ନାହିଁ ତ ସୁଖର ସାଧ ସୁଖ ଉତ୍ପାଦନେ,
ଦୁଃଖର ତା' ସାଧ, ଦୁଃଖ ସୁଖଠାରୁ ଶ୍ରେୟଃ,
କରେ ଦୁଃଖ ଚିତ୍ତକୁ ବିଶୁଦ୍ଧ ନିର୍ମଳ,
ଦୂଷିତ ଆବିଳ ଜଳେ ସ୍ଫଟିକାରି † ଯଥା ।
କ୍ଲେଶ ଏକା ଜୀବନର ପ୍ରବଣ ନିହାଣୀ,
ଖଞ୍ଜି ଦେଇ ଜୀବନର ଗମନସୋପାନ,
ଗଢ଼ି ଦିଏ କରି ତାକୁ ଅନିନ୍ଦ୍ୟ ସୁନ୍ଦର ।

---

* ନିଶ୍ଚୟ ।   † ପ୍ରଚଳିତ ନାମ ଫିଟ୍‌କିରୀ ।

## ପ୍ରଥମ ସର୍ଗ ।

ନିରବନ୍ତେ ଆଖଣ୍ଡଳ, ସେହି ମୁହୂର୍ତ୍ତରେ
ଋଷି ଅଭିଶପ୍ତ ସ୍ୱର୍ଗୁ, କ୍ଷୀଣପୁଣ୍ୟ ଯଥା,
ପୃଥିବୀ ପରଶେ ହେଲେ ପ୍ରାପ୍ତ ଖରବେର;
ତହୁଁ ଯାଇ ଧୀବରରାଜ୍ୟେ ହୋଇ ଉପସ୍ଥିତ,
ରହିଲେ ବିରସମନେ ଜୀବନ୍ମୃତ ପ୍ରାୟ,
ନବସନ୍ତ ରଙ୍ଗେ ନିତ୍ୟ ନରରୂପେ ଗ୍ରାମେ,
ଦିବସେ ଗର୍ଦ୍ଦଭରୂପେ ଏକ ସରୋବର ।
ଅଶୁଛି ସମସ୍ତ ଆପ୍ଷେ ତୁରଙ୍ଗଗଡରେ,
ମାନ ଯାଏ ମଠେ ଅଟ, କମଠ ଯେସନ,
ଅଟେ ଏହା ପ୍ରକୃତିର ଶାଶ୍ୱତ ନିୟମ ।
ଏହିରୂପେ କିଛୁକାଳ ହୋଇଗଲା ଗତ ;
ଭାବୁଥାନ୍ତି ଅନୁକ୍ଷଣ ଉପଲ୍ଲ ବାସବ,
କେମନ୍ତେ ଭେଟିବି ଯାଇ ଧାରା ନଗରୀକ୍ଷେ,
କେତେଦିନେ ହେବ ଅବା ଦୁର୍ଗତି ମୋଚନ,
ହୋଇ ଦେବରାଜସୁତ, କୃତକର୍ମ ଦୋଷେ
ହରାଇ ବସିଲି ହାୟ କେତେ କଡ଼ପଣ,
ଜନ୍ମି ଦେବ ଔରସରୁ, ଦେବ ଦେହ ବହି
ଲଭିଲି ପଶୁତ୍ୱ ଏବେ, ଧିକ ମୋ କରଣି ।
ଅହୋ, କି ଭୀଷଣ ଶତ୍ରୁ ଦୁରନ୍ତ ଯୌବନ !
କରେ ନିତ୍ୟ ଆୟୁଃ ପାନ ତରଜ ସହିତ,
ଯଦ୍ୟପି ଆକୁତବନ୍ତ ହୋଇଥାନ୍ତା ସେହୁ,

ଦିଅନ୍ତି ସମ୍ପ୍ରତି ତାକୁ ଅନଳେ ନିକ୍ଷେପି
ଏହିପରି ଝୁରି ଝୁରି କେତେକାଳ ପରେ
ନିୟତି ଘଟାଇଦେଲା ଶୁଭଯୋଗ ଆଣି ;
କରେ ଆନୟନ ଯଥା ଜୀବନେ ସେ ଦୁଃଖ,
ତଥା ସୁଖ-ସୁଧା ସୁଦ୍ଧା ଦାତବ୍ୟ ତାହାର ।
ଦୈବେ ଦିନେ ବିପ୍ର ଜଣେ ବାସର ଶୈଶବେ *
ପ୍ରବେଶି ମଘବାସୂନୁ-ନିବାସ-ତଡ଼ାଗେ,
ସ୍ନାନ ତର୍ପଣାଦି ଶେଷେ ବାହୁଡ଼ିବାବେଳେ
ସମ୍ବୋଧି ତାହାଙ୍କୁ ଐନ୍ଦ୍ରି, ଜଳଗର୍ଭେ ଥାଇ
ଭାଷିଲେ ଏସନ ନମ୍ରେ—ମର୍ତ୍ତ୍ୟଦେବ, ହେଉ
ମଙ୍ଗଳ ତୁମ୍ଭର, କର କିଛି ଉପକାର
ମୋର, ପର ଉପକାରେ ମିଳେ ଯେ ସୁଫଳ
ସୁଧାମୟ, ଥିବ ତୁମ୍ଭେ ତାହା, ସୁବିଦିତ
କି କହିବି ଅଧିକ ମୁଁ, ସେହି ତ ତ୍ରିଦିବ ;
ଧନ୍ୟ ସେ, ଝରେ ଯା ନେତ୍ରୁ ଅଶ୍ରୁ ପରଦୁଃଖେ,
ସେହି ଅଶ୍ରୁ ନିଶ୍ଚେ ସ୍ୱର୍ଗ ମନ୍ଦାକିନୀ ଧାର ।
କହି ଯାଇ ଧାରେଶ୍ୱରେ କରି ଅନୁଗ୍ରହ,
ମୋହର ଏ ବାର୍ତ୍ତା—ମୁହିଁ ଦେବରାଜ ସୁତ,
ନାମ ମୋ ଗନ୍ଧର୍ବସେନ, ପିତୃ ଅଭିଶାପେ
ରହିଛି ମୁଁ ତାଙ୍କ ରାଜ୍ୟେ ଆସି ବହୁଦିନୁ

* ପ୍ରାତଃକାଳରେ ।

ଏହି ସରୋବରର ମଧ୍ୟେ, ସ୍ୱୀୟ କନ୍ୟାଦାନେ
କରନ୍ତୁ ସେ ଯଥାଯୋଗ୍ୟ ସମ୍ମାନିତ ମୋତେ ।
ତଥାସ୍ତୁ ଉଚ୍ଚାରି ଦ୍ୱିଜ, ଯାଇ ଯଥାକାଳେ
ନିବେଦିଲେ ଏ ବୃତ୍ତାନ୍ତ ନରବର ଧାରେ ।
ଶୁଣି ରାଏ ଏ ଅଦ୍ଭୁତ ଅଶ୍ରୁତ ସମ୍ବାଦ,
ହେଲେହେଁ ଆଶ୍ଚର୍ଯ୍ୟ, କଲେ ନାହିଁ ଅବିଶ୍ୱାସ,
ଜାଣନ୍ତି ସେ ଏ ଦୁର୍ଜ୍ଜେୟ ବିଷମ ସଂସାରେ
ନୁହେ କିଛି ଅସମ୍ଭବ, ଏ ତ ରହସ୍ୟର
ରଙ୍ଗଭୂମି, ନାହିଁ ଏଥି କେଉଁ ଅଭିନୟ ?
କାର୍ଯ୍ୟବିହି ବିପ୍ରେ ଘେନି ତହୁଁ ଧାରାଧୀଶ,
ହେଲେ ଉପସ୍ଥିତ ସେହି ପୁଷ୍କରିଣୀତୀରେ ।
ଅନନ୍ତର ଉଚ୍ଚକଣ୍ଠେ କହିଲେ ବ୍ରାହ୍ମଣ—
ହେ ଗନ୍ଧର୍ବସେନ, ବିଜେ ନୃପମଣି ଏଥି,
ଅଛି ଯା ବକ୍ତବ୍ୟ ତବ ବଖାଣ ସତ୍ୱର ।
ଉଠିଲାକ ତତକ୍ଷଣେ ଜଳରାଶି ଭେଦି
ଏସନ ଭାରତୀ—ନୃପ, ଇନ୍ଦ୍ରସୁତ ମୁହିଁ,
ନିବେଦୁଛି ମୋ ଅଭୀଷ୍ଟ ପୂର୍ବରୁ ଛଦ୍ମରେ
ଏହି ଦ୍ୱିଜଦ୍ୱାରା, ହୁଏ ଯଦି ମନୋମତ
ତାହା, ତେବେ କର ସେହି ଶୁଭମହୋତ୍ସବ ।
ଉତ୍ତରିଲେ ଭୂପ—କିବ କରୁ ପେ ବିଶ୍ୱାସ
ତୁମ୍ଭେ ଇନ୍ଦ୍ରପୁତ୍ର ବୋଲି, ଗର୍ଦ୍ଦି ଦେବ ଯେବେ

ଆଜ୍ଞା ରାଜି ମଧ୍ୟେଏକ ଲୌହମୟ ଗଡ଼
ଏହି ସ୍ଥାନେ, ଦୈର୍ଘ୍ୟେ ଦଶ କୋଶ, ପ୍ରସ୍ଥେ ତଥା,
ଉତ୍ସର୍ଗରେ ତିନ କୋଶ, ସପରଖ, ତେବେ
ବୁଝିବ ଯଥାର୍ଥ ତୁମ୍ଭେ ମହେନ୍ଦ୍ର ତନୟ ।
ବୋଇଲେ ବଜ୍ରୀଜ ତହୁଁ, ହେଉ ତେବେ ରାଏ,
ଯାଅ ଆଜ, କାଲି ଆସି ଦେଖିବ ପ୍ରଭାତେ ।
ଶୁଣି ଏହା ନରନାହା ବାହୁଡ଼ି ନଗରେ,
ପରଦିନ ପ୍ରତ୍ୟୁଷରେ ଆସି ପୁନରପି
ହେରିଲେ ଅଦ୍ଭୁତ ଦୃଶ୍ୟ, ହୋଇଛି ନିର୍ମିତ
ଦୁର୍ଗ ସ୍ୱନିର୍ଦ୍ଦେଶ ମତେ, ଅଧିକନ୍ତୁ ତାହା
ବିମଣ୍ଡିତ ରାଜୋଚିତ ଭାବେ । ଆୟସୀ ଭିତ୍ତିକା
ପିହିତ ପୁରଟ-ପତ୍ରେ * ଟଙ୍ଗା ତହିଁ କେତେ
ଚିତ୍ର,—ପ୍ରକୃତିର ଦିବ୍ୟ ସାମୟିକ ରୂପ,
ଗୃହଦଗେ ରାଜେ ଗୁରୁ ସୁବିଶାଳ ଦ୍ୱାର,
ଖୋଦିତ ଉର୍ଦ୍ଧ୍ୱରେ ତାର ଦଶ ଅବତାର,
ଚଣ୍ଡୀଯୁଦ୍ଧ, ରାମାୟଣ, ଭାରତ ଘଟନା,
ଭୂତଳେ ଅତୁଳ ସେହି ଆଲେଖ୍ୟ ମହିମା,
କୃତ୍ରିମ ସେ, ମାତ୍ର ଦିଶେ ନୈସର୍ଗିକ ପ୍ରାୟ ।
ଦ୍ୱାରେ ଦ୍ୱାରେ ଲମ୍ବମାନ ଜାଲି-ଯବନିକା,
ଝଟକେ ତହିଁରେ ଥୋପା ଥୋପା ହୀରା-ମାଳା—

* ସ୍ୱର୍ଣ୍ଣ ପତ୍ରରେ ।

ମୋତି-ମାଣିକ୍ୟାଦି ରତ୍ନରାଜି, ଝଟକେ କି
ପ୍ରାତେ ହିମକଣିକାକ୍ତ ଲୂତାତନ୍ତୁ ଜାଲ.
ବାଳାରୁଣ ରକ୍ତ ପୀତ ମିଶ୍ରିତ କିରଣେ ।
ବିସ୍ତୀର୍ଣ୍ଣ ପରିଖା ପୂର୍ଣ୍ଣ ନିର୍ମଳ ସଲିଳେ,
ଉଠି କ୍ଷୁଦ୍ର କ୍ଷୁଦ୍ର ବୀଚୀ ମନ୍ଦ ଗନ୍ଧବହେ
ଦେଉଅଛୁ ଶିର ପିଟି ଦୁର୍ଗ ପାଦତଳେ ।
ଅବଲୋକି ପ୍ରଜାପାଳ ଏସନ ନଗର
ଅପୂର୍ବ, ଭାବିଲେ ଅହୋ, କେଡ଼େ ଅମାନୁଷୀ
କଳ୍ପନା ଅତୀତ କ୍ରିୟା ହେଲା ଅଜି ମୋର
ପ୍ରତ୍ୟକ୍ଷେ ଗୋଚର, ଯାର କ୍ଷମତା ଏ ଭଳି
ଅଲୌକିକ, ନୁହେ ସେନ୍ତୁ ଦୁର୍ବଳ ମାନବ
ପ୍ରକାଶ୍ୟେ ଆହ୍ୱାନ ତହୁଁ ଭାଷିଲେ ମଧୁରେ—
ହେ ଗନ୍ଧର୍ବସେନ, ତୁମ୍ଭେ ମହେନ୍ଦ୍ରତନୁଜ,
ଅନୁକୂଳ ସାକ୍ଷ୍ୟ ତାର ତବ ଏ କରଣୀ ।
ତୁଟିଲା ସନ୍ଦେହ ମୋର, ହେଲା କୃତସତ୍ୟ,
ବରିବି ଜାମାତୃପଦେ ତୁମ୍ଭଙ୍କୁ ନିଶ୍ଚୟ;
ହେଉଛି ବିବାହ ଆଜି, ଶୁଭଲଗ୍ନ ବୁଝି
ବିବାହ ସମ୍ଭାର ସର୍ବ ଆସିବ ସତ୍ୱର ।

ଅନନ୍ତର ନିରୂପିତ ବିବାହ ଦିବସେ
ଭିଆଇ ଉତ୍ସବ, ରାଏ ପାଜି ମିଳି ସବୁ

ବଜେ ହେଲେ ପଟୁଆରେ, ପୁରନାରୀବ୍ରାତ
ଚଳିଲେ ଜେମାଙ୍କୁ ଘେନ ଶିବିକା ଆରୋହି ।
ବାଜିଲା ମଙ୍ଗଳବାଦ୍ୟ, ଉଡ଼ିଲା ନିଶାଣ,
କୃତ୍ରିମ ଉଦ୍ୟାନଶ୍ରେଣୀ ମୋହନ ମାଧୁରୀ
ରଚିଲା ଦ୍ୱିପାଶେ, ମଧ୍ୟେ ଧାରି ନରପାଳ
ଚଳିଲେ ମନ୍ତ୍ରିମନ୍ତ୍ର ବାରଣେ ଆରୋହି ;
ଚଳିଲା ପୁରତେ ଛତ୍ର, ତସର, ଆଡ଼ାଣୀ
ମଣିମୟ ; ସ୍ୱର୍ଣ୍ଣମୟ ରାଜଦଣ୍ଡ ଟେକି
ଚଳିଲା ଖୁଣ୍ଟିଆ, ଘୋଷି ଉଚ୍ଚେ ଘନ ଘନ
"ରାଜ ବଜେ, ରାଜ ବଜେ," ବୋଲିଲା ଚମର,
କୁଟିଳ-କୁଞ୍ଚିତ ଖଣ୍ଡ, ମଧୁରେ ସଧୀରେ ।
ମିଳିଲେ ସକଳେ ଯାଇ ପୁଷ୍କରିଣୀ ତୀରେ
ସେହି ହିରଣ୍ମୟୀ ପୁରୀ ମଧ୍ୟେ, ହେରି ତାର
ସୁଧାଧୋଳା ମଧୁରିମା, ଅଦୃଷ୍ଟପୂରୁବ,
ମଣିଲେ ବସନ୍ତ ମିଶା ଆନନ୍ଦ ଅନ୍ତରେ
ନିଶ୍ଚୟ ଏ ସ୍ୱପ୍ନ ସ୍ୱର୍ଗ । ଅଙ୍କିତ ତହିଁରେ
ହେମଦୀପ୍ତ ବର୍ତ୍ତିତଳେ ଶୁଭଶ୍ଳୋକାବଳୀ,
ଅଙ୍କିତ ଦମ୍ପତ୍ତି ହୃଦେ ଚିରଦୁଃଖ ଯଥା ।
ନୁହେ ମାନବର ସାଧ୍ୟ ଏ ପୁରୀନିର୍ମାଣ,
ଏଉପଅମରାପୁରୀ ନିର୍ମାଣ ଯଦ୍ୟପି
ହୋଇଥାନ୍ତା ସାଧ୍ୟାତୀତ ନରର, ତେବେ ସେ

ଲଭିଥାନ୍ତା ଦେବଲୋକ ଉଚ୍ଚରେ ଆସନ ।
ବସିଲା ବିବାହ ସଭା ମଣ୍ଡିତ ମଣ୍ଡପେ,
ଉପବିଷ୍ଟ ନୃପ ସହ ବିବାହ ଯାତ୍ରିଏ
ଯଥାଯୋଗ୍ୟ ସ୍ଥାନେ, ଘେର ରତ୍ନମୟ ବେଷ୍ଟ
ବସିଗଲେ କୁଶାସନେ ବ୍ରହ୍ମା ପୁରୋହିତେ
ଆବର ବରଣୀ ବିପ୍ରେ କୁଶବଟୁ କରେ,
କେହି ଅବା ଶ୍ରୁବ, ସ୍ରୁଚ, ପାଠପୋଥି ଧରି ।
ବାଜିଲା ମଙ୍ଗଳ ବାଦ୍ୟ, କମ୍ବୁପଂକ୍ତି ଘୋଷେ
ଅମ୍ବୁପତି ଯଥା—ସ୍ଥୂଳ ଅବିଚ୍ଛିନ୍ନ ସ୍ୱରେ;
ମୁହୁର୍ମୁହୁଃ ହୁଳାହୁଳୀ, ସେ ଶବ୍ଦ ସାଗରେ
ସୃଜିଲା ଲହରୀମାଳ, ଉଛୁଳିଲା ଦିଗ ।
ଜଣାଇଲେ ପାଠଯୋଷୀ * ଗଣି ଶୁଭବେଳା
ନୃପତି ଛାମୁରେ, ତହୁଁ ସିଏ ଆଦେଶିଲେ
ପୁରୋହିତେ, ଆନୟନେ ଦେବେନ୍ଦ୍ରକୁମାରେ ;
ନିଜ ସରୋବରଖଣ୍ଡରେ ସତ୍ୱର ପୁରୋଧା
କହିଲେ ସମ୍ବୋଧି ଉଚ୍ଚେ—ହେ ଗନ୍ଧର୍ବସେନ,
ଉପସ୍ଥିତ ଲଗ୍ନ, ଆସ ବିବାହ ମଣ୍ଡପେ ।
ଅନନ୍ତର ଉଠି ସବୁଁ ଖାଭସ୍ତ ଗର୍ଦ୍ଦଭ
ଢକାଦ୍ର ଶବ୍ଦରେ ହେଲା ଉପସ୍ଥିତ ଖରେ
ସଭା ମଧ୍ୟେ ; ଦେଖି ତାହିଁ ତୌର୍ଯ୍ୟତ୍ରିକଲୀଳା,

* ପଞ୍ଚଜ୍ୟୋତିଷଗଣକ ।

ଜାହ୍ନୁ ଅଂସେ * ମୂର୍ଖ, କଲା କର୍କଶ ଆରାବେ
ସଂଦୂବୋଧ ସ୍ଫୂର୍ତ୍ତିପୂରୀ ସଙ୍ଗୀତ ଆଳାପ ।
ଅବଲୋକ ଏ ଅଦ୍ଭୁତ ଅଶ୍ରୁତ ଘଟଣା
ଗଣିଲେ ତାଙ୍କା ସର୍ବେ, ନୃପ, ସଭାଜନେ,
ନୀରବ ନିସ୍ପନ୍ଦ ଯଥା ଭଜାଲିକ ସଭା,
କିଛୁକ୍ଷଣ ପରେ ସେହି ନୀରବତାକୋଡ଼େ
ଉଚ୍ଛୃଙ୍ଖଳ ହାସ୍ୟରାଶି ଉଠିଲା ଉଭାସି,
ପୋତିଲେ ତଳକୁ ମଥା ଲଜ୍ଜାବଶେ ରାଏ ।
ନ କହିଲେ ପ୍ରତ୍ୟକ୍ଷରେ କେହି କିଛି ଭୟେ,
ମାନ କଲେ ବନ୍ଧୁ ବ୍ୟଙ୍ଗ ଲଘୁତମ ସ୍ୱରେ,
କେ କହିଲା, ବିଜେ ଦେଖ ଇନ୍ଦ୍ରଙ୍କ ତନୁଜ
ବରବେଶେ, କି ଶୋଭାରେ ଆହା ଏ ରୂପରେ,
ଦେଖି ଗୃହିଁ ବସିଛନ୍ତି ରାଜା ଏ ଜାମାତା
ଶଙ୍ଖୁଆଙ୍କ ଦାନାବୁଡ଼ା, କେ ବୋଲେ, ଏବର
କୁରୁଚି-ରୁଚିର, କିମ୍ବା ସୁନ୍ଦର୍ଯ୍ୟ ସୁନ୍ଦର,
ବିବାହେ ଏ ଯୁଗ୍ମଳର୍ମୀ—ବର, ବାଦ୍ୟକାର ।
ଅଶ୍ୱିନୀକୁମାର—କାନ୍ତି ସୁନ୍ଦର ସଂସାରେ,
ଏ ତା' ନବ ସଂସ୍କରଣ—ଗର୍ଦ୍ଦଭକୁମାର ।
ବସିଥିଲେ ସଭାଗୃହେ ପୁରନାରୀବ୍ରାତ
ଲୋକଚକ୍ଷୁ ଅନ୍ତରାଳେ, ଦେଖି ସେ ଗର୍ଦ୍ଦଭେ

* ସ୍କନ୍ଧରେ ।

ଉଠିଲେ ଚମକି, ଶୁଣି ପୌରସ୍ତ୍ରୀର ମୁଖେ
ସବିସ୍ମୟେ, ଏହି କଥା ହେଲେ କହାକହି—
ଅହୋ, କି ଅଶୁଭ, କିପାଁ ବିବାହକାଳରେ
ଉପସ୍ଥିତ ଅମଙ୍ଗଳ ଧୂମକେତୁ-ଖର ?
ସତେ କି ଏଶୋଭା-ସ୍ୱପ୍ନ-ପ୍ରତିମାକୁ, ହାୟ,
ଛନ୍ଦିବେ ଗର୍ଦ୍ଦଭ ପଦେ ଆମ୍ଭ ନରବର !
ସୃଜିଲ କି ବିଧି, ଶୋଭା-ରାଜ୍ୟ-ପାଟରାଣୀ
ଫୁଲେ ତୁଚ୍ଛ କାଠ ପାଇଁ, ଅବା ମଳୟଜେ
(ଦେବଭୋଗ୍ୟ) ଖଳ କାଳ ହଳାହଳୀ ଲାଗି ?
ହା ବିଧାତଃ ! ତବ ପକ୍ଷେ କିବା ଅସମ୍ଭବ ?
କେମାଶ୍ଚର୍ଯ୍ୟ ଏ ଲଜ୍ଜା-ଏ ତୀବ୍ର ଉପହାସ
କେଉଁ ପାପେ ଅବା ଶାପେ ? ହାୟ କି ବିପାକ !
ରଖିଛ ତ ତୁମ୍ଭେ ଆହା ଶୋଭାଙ୍ଗୀ କମଳେ
କଦର୍ଯ୍ୟ ଦୁର୍ଗନ୍ଧମୟ ପଙ୍କ ସହବାସେ,—
ମିଶାଇ ମାଟିରେ ରତ୍ନେ—ମୋତି ଶୁକ୍ତିକାରେ ;
ଜିହ୍ୱଛତ ପୁଣି ଗଙ୍ଗା ପାପହା ସଲିଳେ
ସର୍ପ, ଭେକ, ମତ୍ସ୍ୟ କୂର୍ମ କୁମ୍ଭୀର ମକରେ,
କି ବୈଚିତ୍ର୍ୟ ଉପସ୍ଥିତ ଅଘଟନେ ଅବା !
ଭାଷିଲା ଜରତୀ ଜଣେ, କିପାଁ ନନ୍ଦ ବିଧି,
ଅଛି ଏଥି କିଛି ଗୁପ୍ତ ରହସ୍ୟ ନିହିତ,
ଏହିକ୍ଷଣି ଅବଶ୍ୟ ତା' ହେବ ଉଦ୍ଘାଟିତ,

ଆସେ ଯାହା ଅମଙ୍ଗଳରୂପେ, ହୁଏ ତାହା
ମଙ୍ଗଳନିଦାନ ଶେଷେ, ଥାଏ ପୂର୍ଣ୍ଣିସିନା
କଷି ଆମ୍ରେ ଅମ୍ଳ କଷାରସ, ମାତ୍ର ସେହି
ରସ ହୁଏ ପରିଣାମେ ଅମୃତ ସମାନ ।
ଏ ଉକ୍ତିରେ ଉପଦିଷ୍ଟ ପଣ୍ଡିତମଣ୍ଡଳୀ
କହିଲେ ସମ୍ବୋଧି ନୃପେ, ଧାରାରାଜ, କିଏ
ଇନ୍ଦ୍ରପୁତ୍ର ? ପ୍ରତେ ହୁଏ ପ୍ରତାରଣା ପରି ;
ଦେଖା ନାହିଁ କାହିଁ କେବେ ଏରୂପ ବିବାହ,
ଶୁଣା ଅଛି ମାତ୍ର ପୂର୍ବେ ଉପକଥା ଏକ—
ବିବାହ ଗର୍ଦ୍ଦଭ ଉଷ୍ଟ୍ରେ, ଦେଖି ସେ ବିବାହେ
ଗର୍ଦ୍ଦଭ ଉଷ୍ଟ୍ରର ରୂପ, ହୋଇ ବିମୋହିତ,
ବୋଇଲା ଆହାରେ କିବା ଅପରୂପ ରୂପ !
ତଥା ଉଷ୍ଟ୍ର ସୁଦ୍ଧା ଶୁଣି ଗର୍ଦ୍ଦଭ ଆରବ,
କହିଲା କି ସୁଧା ସ୍ୱର—କର୍ଣ୍ଣ ରସାୟନ !
କିନ୍ତୁ ସେ ବିବାହ ଥିଲା ସବର୍ଣ୍ଣ ବିବାହ
ପଶୁ ପଶୁ ମଧ୍ୟେ, ନୁହେ ଏ ତାହା ସମାନ,
ନର ପଶୁ ପରିଣୟ କିମାଶ୍ଚର୍ଯ୍ୟ ଅହୋ !
ଦେବ କହେ ସତେ କେହି ଜାଣୁ ଜାଣୁ ଦିଏ,
ସୁଧାପୂର୍ଣ୍ଣ ସ୍ୱର୍ଣ୍ଣକୁମ୍ଭ ଦାନବ ହସ୍ତରେ ?
ଅଦ୍ୟକାର ଏ ଘଟଣା ହେବ ଉଦ୍‌ଘୋଷିତ
ବହୁକାଳ କାଳ-କଣ୍ଠେ, ଆଜିର ଏ ଦିନ

ନୋହିବ ପର୍ଯ୍ୟବସିତ ଷଷ୍ଟି ତମ ପଳେ, *
ବହୁଯୁଗ ବ୍ୟାପିବ ତା' ଦୀର୍ଘ ପରମାୟୁ,
ଅନନ୍ତ ସମୟ-ସ୍ରୋତେ ଖେଳିବ ଯାବତ
ଅତ୍ୟଦ୍ଭୁତ ଏ ଘଟଣା, ଦେଶକାଳାତୀତ,
ସ୍ମରଣୀୟ ଆଜ ଦିନ ଅନସ୍ତ ତାବତ ।
ଗର୍ଦ୍ଦଭସ୍ୱରୂପୀ ଐନ୍ଦ୍ର ଶୁଣି ଏ ବଚନ
ହେର ପୁଣି ନୃପତିଙ୍କ ମୌନ ଭାବ, ହେଲେ
ହତାଶ, ନ ହେଲେ ମାତ୍ର ହତାକାଂକ୍ଷ କଦା,
ମରିଯାଏ ଆଶା, କିନ୍ତୁ ଆକାଂକ୍ଷା ଅମର ।
ହୋଇ ସେ ଦୀକ୍ଷିତ ସେହି ଆକାଂକ୍ଷାମନ୍ତ୍ରରେ
କହିଲେ ସମ୍ବୋଧି ତହୁଁ ଭାବୀ ବୈବାହିକେ †
ବିନୟ ତରଳ-କଣ୍ଠେ, ସଂସ୍କୃତ ଭାଷାରେ—
ନରପତେ, କୃତସତ୍ୟ ନ କର ଅନ୍ୟଥା,
କ୍ଷତ୍ରିୟ ନୃପତି ତୁମ୍ଭେ, ସତ୍ୟ ଅବତାର,
ନ ଭୁଲ ନ ଭୁଲ ଗଏ, ସତ୍ୟର ମହିମା ;
ଅନ୍ଧାର ଦହୁଡ଼—ସତ୍ୟ ; ଜଗତ-ନୟନ
ରବି ଶଶୀ ବିତରନ୍ତି ଯେ ମହା ଆଲୋକ,
ସତ୍ୟର ଆଲୋକ ତାହା, ସ୍ନିଗ୍ଧ ସୁଧାମୟ ।
ସତ୍ୟ ସ୍ୱର୍ଗ, ସତ୍ୟ ମୋକ୍ଷ, ଦେବତ୍ୱ ସତ୍ୟହିଁ,
ପୁଣି ସତ୍ୟ ସୃଷ୍ଟିସତ୍ତା, ସତ୍ୟ ସମ୍ଭାଳନ

---

* ଷାଠିଏ ଦଣ୍ଡ । † ଶ୍ୱଶୁର

ମାନବର ଅବିଚ୍ଛିନ୍ନ ନିତ୍ୟ ଧର୍ମ-ବ୍ରତ ।
ସତ୍ୟ ଦୃଢ଼ ସେତୁବନ୍ଧ ଭବ-ପାରାବାରେ
ଶୋକ-ତାପ-ପାପ-ଦୁଃଖ-ଘାତୀ ବିଭୀଷଣ,
ସତ୍ୟ ସତ୍ୟବାନ ଦେହେ ସୁରକ୍ଷା-କବଚ ।
ଥିଲେ ପରିଜ୍ଞାତ ସତ୍ୟ-ଗୌରବ-ଗରିମା
ସାଧୁ ଯୁଧିଷ୍ଠିର, ଧର୍ମରାଜ, ସତ୍ୟରାଜ,
ସନିର୍ବନ୍ଧ ଅନୁରୋଧେ ସୁଦ୍ଧା କୃଷ୍ଣଙ୍କର,
ସ୍ୱୟଂ କୃଷ୍ଣଗତପ୍ରାଣ, କୃଷ୍ଣଭକ୍ତବର,
ନ ତେଜିଲେ ସତ୍ୟ କେବେ, "ଅଶ୍ୱତ୍ଥାମା ହତ"
କହି, ଶେଷେ କହିଥିଲେ "ନରେ ବା କୁଞ୍ଜରେ,"
କଳା ଦେଲେ ମିଥ୍ୟାଟିକ ସତ୍ୟ-ଅର୍ଗଳରେ,
ସଶରୀରେ ସ୍ୱର୍ଗେ ସେହୁ ଗଲେ ସତ୍ୟ ହେତୁ ।
ପରିଧେୟ ବସ୍ତ୍ର ତୁଲ୍ୟ ଜୀବ କଳେବର,
ହୁଏ ଜୀବ ମାନ୍ୟାମାନ୍ୟ ଗୁଣାଗୁଣ ହେତୁ—
ବସ୍ତ୍ରହେତୁ ନୁହେ, ଅତଃ ଉଚ୍ଚ ନୀଚ ନ୍ୟାୟ
ନୁହେ ସୁସଙ୍ଗତ କେବେ ଦେହ ସମ୍ପର୍କରେ ;
ନୀଚକୁ ବା କାହିଁ ଘୃଣା, ନୀଚର ମହିମା
ନୁହେଁ ତ ସାମାନ୍ୟ, ତାହା ଅଗାଧ ଅସୀମ,
ରଖେ ସିନା ବୃଷ୍ଟିବାରି ସଞ୍ଚି ନୀଚ ଭୂମି ।
ମୋର ଏ ରସଭଟନୁ ପିଣ୍ଡୁ ଅଭିଶାପୁଁ,
ହେବ ଯଦି ହେଲେ ନର, ନାକର ସନ୍ଦେହ ।
ସ୍ୱଚ୍ଛ ସକଳ ଜନେ ଶୁଣି ଏ ଭାରତୀ

ଉଚ୍ଚାରିଲେ ସମସ୍ୱରେ ନିଶ୍ଚେ ଏ ବାସବ,
ଛଦ୍ମରୂପୀ, ନୁହେ କେବେ ପ୍ରକୃତ ଗର୍ଦ୍ଦଭ,
ସମ୍ଭବେ କି ପଶୁ ମୁଖେ ବିଶୁଦ୍ଧ ସଂସ୍କୃତ ?
କର କନ୍ୟା ଦାନ ରାଏ, ପରିହର ଦ୍ୱିଧା ।
ବିଷମ ଦୁଃସହ ଖେଦେ ନୃପତିଙ୍କ ମତି
ଯାଇଥିଲା କାହିଁ ଉଡ଼ି, ନ ଜାଣନ୍ତି ସେହି,
ମାତ୍ର ଏହି ଖରରୂପୀ ମାଘବେନ୍ଦ୍ର ବାଣୀ
ଆଣିଲା ଓହ୍ଲାଇ ତାକୁ ପ୍ରକୃତରାଜ୍ୟକୁ ;
ନିଦାଘ-ସଂଦଗ୍‌ଧ ମହୀ ଶୁଣିଲା କି ଆହା
ବର୍ଷୋନ୍ମୁଖୀ ନବ ମେଘ ସାନ୍ତ୍ୱନା-ନିଃସ୍ୱନ ।
ପଡ଼ିଲା ବିଷାଦ-ବକ୍ଷେ ଆଶାଲୋକ ରେଖା,
କ୍ଷୀଣ ତାରାଲୋକ ଯଥା ଉଆଁସ ଅନ୍ଧାରେ ;
ବାଜିଲା ଆଶାର ବଂଶୀ ପ୍ରାଣ-ବୃନ୍ଦାବନେ,
ମଧୁରେ ମଧୁରେ, ଆହା, ସୁଧାସିକ୍ତ ତାନେ ।
ନୈରାଶ୍ୟର ମହାଧ୍ୱାନ୍ତ ଲୁଚିଯାନ୍ତେ ଖରେ
ଖୋଲିଲା ନୃପତି ନେତ୍ରେ ତୃପ୍ତିର ମୟୂଖ,
ଆନନ୍ଦ-ଅମୃତବୀଚୀ ଖେଳିଲା ବଦନେ ;
ଆଶା ଆଶ୍ୱାସିନୀ ଶକ୍ତି ତଢ଼ିଲା କ୍ଷଣକେ
ମନୁ ଶୋକବୋଳାସ୍ଥୃତ, ତହୁଁ ନବୋତ୍ସାହେ
ସମାପି ଉଦ୍‌ବାହ କ୍ରିୟା ରାଏ ଯଥାବିଧି,
ରତ ହେଲେ ମହୋଲ୍ଲାସେ ଧନ ବିତରଣେ ।



## ଦ୍ୱିତୀୟ ସର୍ଗ ।



ଅସ୍ତୋନ୍ମୁଖ ରବି-ରଶ୍ମି-ରଜ୍ଜୁ ଧରି ଧୀରେ
ଅବତରି ଦିବୁ ସନ୍ଧ୍ୟା, ତାରକକିରୀଟିନୀ,
ନିଭାଇଲା ପ୍ରକୃତିର ଗୁରୁ ହାସ୍ୟଚ୍ଛଟା ।
ସ୍ତରେ ସ୍ତରେ ସ୍ୱର୍ଣ୍ଣଘନ ପ୍ରତୀଚୀ ଗଗନେ
ଶୋଭିଲେ, ଶମ୍ଭୁଙ୍କ ଯଥା ଆଗ୍ନେୟ ଭୁଜଗ,
ରାଜେ ତାରାରାଜ ତହିଁ ଫଣାମଣିରୂପେ,
ହେଲେ ବୃକ୍ଷେ ଗୁମ୍ଫାଶୂନ୍ୟ ଅନ୍ଧାର ପରଶେ,
ମନୁଷ୍ୟତ୍ୱହୀନ ଯଥା ଦୁର୍ବୁଦ୍ଧି ମାନବେ
ଅବିଦ୍ୟା ସଙ୍ଗମେ । ସନ୍ଧ୍ୟା ଅନ୍ଧକାର ସହ
ଢାଳିଲା ଗାମ୍ଭୀର୍ଯ୍ୟଧାରା ପ୍ରକୃତି ପରାଣେ ,
ଗମ୍ଭୀର ଆକାଶ ଦୃଶ୍ୟ, ଗମ୍ଭୀର ଧରଣୀ,
ସବୁ ଗମ୍ଭୀରତାମୟ, ବାଜିଲା ଗମ୍ଭୀରେ
ଦେବାଳୟେ ଶଙ୍ଖ, ଆହା ପ୍ରକୃତି ତାପସୀ,
ଉଚ୍ଚାରେ କି ଏକାକ୍ଷରୀ ଓଁ କାର ମନ୍ତ୍ରର ?
ସେ ପ୍ରଣବ ପୂତଧ୍ୱନି ବହି ସାନ୍ଧ୍ୟବାତ

ମିଶି ଗଲେ ମହୀରୂହେ ଅନନ୍ତ ତମିରେ,
ସନ୍ତାପ-ସାଗରେ ଲୀନ ଚଉଶାନ୍ତ ଯଥା ।

ସମ୍ମୁଖେ ଗନ୍ଧର୍ବସେନ ଯାଇ କକ୍ଷାନ୍ତରେ
ତେଜି ପଶୁଦେହ, ଧରି ଦେବଦେହ, ଆସି
ଉପସ୍ଥିତ ସଭା ମଧ୍ୟେ ; ମୁହୂର୍ତ୍ତ ଅନ୍ତରେ
ହେଲେ ଉପବିଷ୍ଟ ଯାଇ ନୃପତି ସକାଶେ ।
ବିରାଜେ ପାବନ ସୌମ୍ୟ ବଦନମଣ୍ଡଳେ
ଦେବତ୍ୱର ଦିବ୍ୟବିଭା, ମହିମା-ମଣ୍ଡିତ,
ଉଠୁଛି ଆଭାସି ନେଯେ ଅମର ପ୍ରତିଭା ।
ମୁଖ-ପୁଷ୍ପ, ହାସ୍ୟ-ପୁଷ୍ପ, ଆହା କି ମାଧୁରୀ
ପୁଷ୍ପ ପରେ ପୁଷ୍ପବୃଷ୍ଟି ହେଉଛି ସତତ ।
ଦେବପ୍ରଭା ପୁଣି ଦେବଦେହ ସୌରଭରେ
ହେଲା ସଭା ସମୁଜ୍ଜ୍ୱଳ, ସ୍ନିଗ୍ଧ ସୁବାସିତ ।
ହେରି ସଭାଜନବୃନ୍ଦ ଏ ଦୃଶ୍ୟ ଅଦ୍ଭୁତ,
ଲଭିଲେ ବିସ୍ମୟ, କେହ ସନ୍ଦିଗ୍ଧହୃଦୟ,
ଉଠିଲା ସଭାରୁ ରବ "ଇନ୍ଦ୍ରପୁତ୍ର" ବୋଲି ।
ପୁରନାରୀ ଗହଣରେ ବସି ରାଜବାଳା
ଅଙ୍କୁଥିଲା କି ଅଦ୍ଭୁତ ଦାରୁଣ ଶୋକର
କଳ୍ପିତ ଅରୂପ ଛବି, ଅନଶ୍ରୁ ନୟନେ,
ହୁଏ ସିନା କମ୍ପିତ ଶୋକାଗ୍ନି ଲୋତକେ,

ଯେ ଶୋକ ଲୋତକଶୋଷୀ, ଦୁର୍ବିଷହ ତାହା,
ଯନ୍ତ୍ରଣାଦାୟକ, ଅହୋ, ଯମଦୂତ ପର ;
ଦହେ ସେହୁ ଅନ୍ତସ୍ତଳ ଅନ୍ତଃକରଣର
ପ୍ରଚ୍ଛନ୍ନେ, ପାଦପେ ଯଥା କୋଟର ଅନଳ ।
ହୃଦୟ-କପାଟ-ପୁଟ ଉଦ୍‌ଘାଟି କଶୋଷି
ବିଷାଦର କି କରୁଣ ଦୃଶ୍ୟ ପ୍ରଦର୍ଶନେ
ଇଚ୍ଛୁଥିଲା ମୁହୁର୍ମୁହୁଃ, ମାତ୍ର ମନୋମତ
ଦର୍ଶକ ଅଭାବେ ତାଳା ରଖୁଥିଲା କଳି
ଅତି କଷ୍ଟେ ସେ କପାଟେ ଧୈର୍ଯ୍ୟ-ଅର୍ଗଳରେ ।
ପ୍ରବେଶନ୍ତେ ଏ ସମୟେ " ଇନ୍ଦ୍ରସୁତ " ଧ୍ୱନି
ଶ୍ରବଣକୁହରେ ତାର, ତହୁଁ ସେ ସତ୍ୱର
ଗୃହିଁଲା ଗନ୍ଧର୍ବସେନେ ସ୍ନେହ ଗୃହାଣୀରେ,
ଉନ୍ମୋଚି ଓଢ଼ଣା ଶିରୁଁ ଆବେଗ ଉଚ୍ଛ୍ୱାସେ,
ସୃହେଁ ଯଥା ଫୁଲରାଣୀ ମଧୁପ-ମୋହିନୀ
ପଲ୍ଲବେ ଆଡ଼େଇ ଦେଇ ଅନନ୍ତ ଗଗନେ ।
ଭାବିଲା ସ୍ୱଗତେ ବାଳା, ଏ କି ସ୍ୱପ୍ନ ? ଯେବେ
ସ୍ୱପ୍ନ; ତେବେ ସତ୍ୟଠାରୁ ସ୍ୱପ୍ନ ମହୀୟାନ —
ଛତେବେ ସ୍ୱପନହିଁ ସୁଖ, ଚେତନା ଯାତନା ;
କିପାଁ ସ୍ୱପ୍ନେ ଭ୍ରାନ୍ତି ଆଖ୍ୟା ପ୍ରଦାନେ ସଂସାର,
ହେଲେ ପଛେ ହେଉ ଭ୍ରାନ୍ତି, ମାତ୍ର ତାହାପରି
ମଧୁର ସୁନ୍ଦର କିଛି ନାହିଁ ଜଗତରେ ।

ଉପବାସୀ ଚକ୍ଷୁ ତାର ଲଭିଲା ସହସା
ଅମୃତ ପାରଣା, ଗଲା ଶୁଖି ଆଶଙ୍କାର
ତପ୍ତ ବୈତରଣୀ, ହୃଦେ ବହିଲା ପ୍ରଖରେ
ଆଶା-ତୃପ୍ତି-ଆନନ୍ଦର ତ୍ରିବେଣୀ ପ୍ରବାହ ।
ଦିଶୁଥିଲା ଯେ ଆନନ ନୈରାଶ୍ୟେ ମଳିନ
ପ୍ରାବୃଟ ଚନ୍ଦ୍ରିକା ପ୍ରାୟ, ଭଜିଲା ସେ ଏବେ
ପ୍ରସନ୍ନତା, ସଜୀବତା, ଯଥା କମଳିନୀ
ହୋଇ ଘନଛାୟାମୁକ୍ତ ବାସର ଯୌବନେ,
କରେ ଉପଲବ୍ଧି ପୁଣି ପୂର୍ବ ମଧୁରିମା ।
ନିନ୍ଦୁଥିଲା ଯେଉଁ ଭାଗ୍ୟେ ଯାମପୂର୍ବେ କେମା
ଭାବୁଥିଲା ଅର୍ପି ଯାକୁ ବଳି ଦୁଃଖ ପଦେ
ଲଭିବ ନିଷ୍କୃତି, ଅହୋ ! ସେହି ଭାଗ୍ୟେ ଏବେ
ଦେଖିଲା ମମତାଯୁକ୍ତ ଗୌରବ-ନେତ୍ରରେ,
ନିୟତି ବ୍ୟବସ୍ଥା-ଗ୍ରନ୍ଥେ ଏହା ମହାଧାରା—
ଆଜ ଯେ ନିନ୍ଦ୍ୟ ; ସେ କାଲି ପ୍ରଶସ୍ତି-ପିହିତ ।
ଅନନ୍ତର ଶଶବ୍ୟସ୍ତେ ଉଠି ନୃପମଣି
ନବୀନ ଜାମାତୃବରେ ଆଲିଙ୍ଗି ଆଦରେ
ବର୍ଜି ଆନନ୍ଦାଶ୍ରୁ ସ୍ନେହେ ଚୁମ୍ବିଲେ ମସ୍ତକ,
କ୍ଷମିବ ମୋ ଦୋଷ ବାବୁ, ଭାଷିଲେ ଧାରେଶ,
ପୋଷିଥିଲି ସନ୍ଦେହ ମୁଁ ମନେ ତୁମ୍ଭ ପ୍ରତି
ପାପବୁଦ୍ଧି ଦୋଷେ, ତୁଚ୍ଛ କ୍ଷୁଦ୍ର ନର ମୁହିଁ,

କ୍ଷୁଦ୍ର ମୋ ହୃଦୟ, କାହିଁ ପାରିବ ବା ବୁଝି
ଦେବଲୀଳା, ପଡ଼ିବ କି ଗୋଷ୍ପଦ ସଲିଳେ
ମହାକାଶ ପ୍ରକୃତିର ମହା ପ୍ରତିଛାୟା ;
ଅବା ଚନ୍ଦ୍ର ପ୍ରତିବିମ୍ବ ନଖ-ଦର୍ପଣରେ ?
ଏହା ଭାଷି ନରେଶ୍ୱର ଆନନ୍ଦବିହ୍ୱଳେ
ଘେନି କନ୍ୟା ଜାମାତାଙ୍କୁ ମହାଆଡ଼ମ୍ବରେ
ଯାତ୍ରା କଲେ ସଦଳରେ ନଗରାଭିମୁଖେ ।
ପର ଦିନ ନରନାହା ଯୌତୁକ ସ୍ୱରୂପେ
ଅର୍ପିଲେ କନ୍ୟାକୁ ବହୁ ଧନ, ରତ୍ନ, ଗଜ,
ବାଜି, ଦାସ, ଦାସୀ ସହ ରମ୍ୟ ଅଟ୍ଟାଳିକା
ଏକ, ବିମଣ୍ଡିତ ଦିବ୍ୟ ରାଜୋଚିତ ସାଜେ ;
ରହିଲେ ଗନ୍ଧର୍ବସେନ ରାଜକନ୍ୟା ସହ
ସେ ଆବାସେ, ସୁଖମୟ, ପରମହରଷେ ।
ପବିତ୍ର ଦାମ୍ପତ୍ୟପ୍ରେମ-ମନ୍ଦାକିନୀଧାରା
ବହିଲା ଦୋହିଙ୍କ ହୃଦେ ଖରତର ଭାବେ,
ବୃଦ୍ଧି ଲଭି କ୍ରମେ କ୍ରମେ ସ୍ନେହ-ଅନୁରାଗ-
ବାରି, ଦୋହିଁ ହୃଦ-ସିନ୍ଧୁ କରି ଦେଲା ଏକ ।
ବିଭିନ୍ନ ଶରୀର, ମାତ୍ର ଏକଇ ପରାଣ,
ଏକ ଆଲବାଳସ୍ଥିତ ଯୁଗ୍ମ ତରୁବର
କାଳବଶେ ମିଶି ଯିବା ହୋଇଅଛି ଏକ
କିମ୍ବା ଏକସୂତ୍ରେ ଗୁନ୍ଥା ଯୁଗଳ ମୁକୁତା,

ଅବା ଏକ ବାଦ୍ୟଯନ୍ତ୍ରେ ଲଗ୍ନ ଦୁଇ ତାର ।
ବେନଙ୍କ ସୌନ୍ଦର୍ଯ୍ୟେ ଥିଲେ ବେନିଏ ମୋହିତ,
ସୌନ୍ଦର୍ଯ୍ୟ ବହିର୍ବିକାଶ ଅଟଇ କେବଳ—
ହୃଦୟସ୍ଥ ଅନ୍ତର୍ନିହିତ ପବିତ୍ର ପ୍ରୀତିର,
ସୌନ୍ଦର୍ଯ୍ୟ ମଧ୍ୟରେ ନାହିଁ ସାନ ବଡ ଭେଦ,
ଏଣୁ ସେ ଦମ୍ପତି ସଦା ଅବଲୋକୁଥିଲେ
ପରସ୍ପର ସୌନ୍ଦର୍ଯ୍ୟରେ ଅନନ୍ତ ବିଧିର
ଅନନ୍ତ ସୌନ୍ଦର୍ଯ୍ୟରାଶି । ଜଣକ ହୃଦୟେ
ଉଠେ ଯେବେ ଯେଉଁ ଭାବ, ପ୍ରତିଫଳେ ତାହା
ସେହି ଦଣ୍ଡେ ଆନ ପ୍ରାଣେ, ପ୍ରତିଫଳେ ଯଥା
ଦର୍ପଣେ ପତିତ ଛବି ଗୃହଭିତିପରେ ।
ଭାବି ଏକ ଆରେକକୁ ସ୍ୱଧର୍ମସହାୟ,
ଜୀବନର ମହାସଙ୍ଗୀ ସଂସାର-କାନ୍ତାରେ,
ଅର୍ଦ୍ଧ କଳେବର, ମଣୁଥିଲେ ପରସ୍ପରେ
ନୟନ ସଙ୍ଗାଳ, ତଥା ଉଭେ ଉଭୟର
ବଚନକୁ ମଣୁଥିଲେ ଶ୍ରବଣସଙ୍ଗୀତ
ଆଦର୍ଶ ପୁରୁଷଧର୍ମେ ମିଶି ଉର୍ଜସ୍ୱଳ
ଆଦର୍ଶ ରମଣୀଧର୍ମ, ମର୍ତ୍ତ୍ୟେ ସୃଜିଥିଲା
ଶାନ୍ତିର ବୈକୁଣ୍ଠ ଧାମ ; ବିରାଜେ ଯେ ଗୃହେ
ପବିତ୍ର ଦାମ୍ପତ୍ୟ-ପ୍ରେମ ଅମର-ବାଞ୍ଛିତ,
ସ୍ୱର୍ଗ, ତୀର୍ଥ, ତପୋବନ ନାମାନ୍ତର ତାର ।

ଏରୂପେ ଗନ୍ଧର୍ବସେନ କ୍ଷେପିଲେ ସମୟ,
ଦିବସେ ଗର୍ଦ୍ଦଭ, ରାତ୍ରେ ନରରୂପ ଧରି,
ନବଦମ୍ପତିଙ୍କ ସ୍ନେହ ସୌହାର୍ଦ୍ଦ୍ୟ ବନ୍ଧନ
ହେଲା କ୍ରମେ ଦୃଢ଼ତର, ବଢ଼ିଲା ମମତା
ଅନୁଦିନ ପରସ୍ପର ପ୍ରତି, ତଦ୍ଦର୍ଶନେ
ବଢିଲା ଧାରେଶ୍ୱରଙ୍କ ସନ୍ତୋଷ ବିଶେଷ ।
ଜାମାତା ଦେବକୁମାର, କନ୍ୟା ନାରୀଦେବୀ,
କି ଅଦ୍ଭୁତ ଦୃଶ୍ୟ ଦେବ ଦେବୀ ସମ୍ମିଳନ !
କିଅବା ସେ ସ୍ୱପନର ପ୍ରେମ-ପକ୍ଷିଯୁଗ
ବିଳସନ୍ତି ସ୍ୱପନର ପ୍ରେମ-କୁଳାୟରେ ;
ପୂଜୁଥିଲା ଯଥା ନେମା ପତି ପଦାମ୍ବୁଜ
ଭକ୍ତି-ପାତିବ୍ରତ୍ୟ-ଫୁଲେ, ତଥା ଦେବପତି
ଢାଳୁଥିଲେ ପ୍ରାଣେ ତାର ପ୍ରଣୟ-ଆଶିଷ-
ଧାରା, ଅନାବିଳ, ପୁଣି ଶୀତଳ ମଧୁର ।
ଦୁହିଙ୍କର ଗୁଣ-ଋଣ ଦୁହେଁ ଗୁଣ-ଧନେ
ଦେଉଥିଲେ ଶୁଝି ସଦ୍ୟ, କରି ଦ୍ୱିଗୁଣିତ ।

ଇନ୍ଦ୍ରପୁତ୍ର ଔରସରେ କିଛିଦିନାନ୍ତରେ
ହେଲା ଉପପତ୍ନୀ ଗର୍ଭେ ପୁତ୍ର ଏକ ଜାତ,
ସୁନ୍ଦର, ଲକ୍ଷଣବନ୍ତ, ଆଦରେ ଜନକ
ଦେଲେ ନବଜାତ ଶିଶୁ ନାମ ଭର୍ତ୍ତୃହରି ।

ଗଣି ଶିଶୁ ଜନ୍ମଲଗ୍ନ ପ୍ରବୀଣ ଗଣକେ
ବୋଇଲେ ଏ ହେବ ମହାପ୍ରତିଭା-ବିହିତ ।
କୋଷ୍ଠୀର ସର୍ବୋଚ୍ଚ କେନ୍ଦ୍ରେ ସ୍ଥିତ ବୃହସ୍ପତି
ମିତ୍ର ଗ୍ରହ ସଙ୍ଗେ, ତାଙ୍କ ଶୁଭ ଦୃଷ୍ଟି ସଦା
ଉଜ୍ଜ୍ୱଳିବ ବାଳକର ସୌଭାଗ୍ୟ-ମନ୍ଦିର,
ହେବ ସୁପଣ୍ଡିତ, କବି-କାବ୍ୟକଳାନିଧି,
କେବଳ ସ୍ତ୍ରୈଣତା ଦୋଷେ ଅର୍ଜିବ ଅଖ୍ୟାତି,
କଳାଦାଗେ କଳଙ୍କିତ କଳାକର ଯଥା,
ଜୀବନ-ସାୟାହ୍ନେ ହେବ ସ୍ୱାଧ୍ୟାୟନିରତ ।

ବସିଣ ନଲୁତେ ଦନେ ଧାରଖ୍ୟ ଧାରେଶ
ଭଳିଲେ ସ୍ୱଗତେ, ରୂପେ ଗୁଣେ ମୋ ଜାମାତା
ଲଜା ରୂପ-ଗୁଣ-ରାଜ୍ୟେ, ମାତ୍ର ଦନେ ପଶୁ,
ଏ ଲଜ୍ଜା ତାହାର ମୁହିଁ କରିବ କ୍ଷାଳନ ;
ରାତ୍ରେ ତାର ଅପତନୁ ରହିଥାଏ ପଡି
ଗତିପ୍ରାଣ ପ୍ରାୟ, ଆଜ ନଷ୍ଟ କରି ତାହା
କରିବି ଗନ୍ଧର୍ବସେନେ ମୁକ୍ତ ଖର ରୂପୁଁ,
ଅମର ସେ, ନ ସମ୍ଭବେ ମରଣ ତାହାର ।
ଏହା ଭାବି ସେହି ରାତ୍ରେ ପ୍ରିୟ ଜାମାତାର
ତ୍ୟକ୍ତ ପଶୁ ଦେହ କଲେ ଅନଳେ ନିକ୍ଷେପ,
ମୁହୂର୍ତ୍ତକେ ହେଲା ତାହା ଭସ୍ମେ ପରିଣତ ।

ଅନନ୍ତର ଇନ୍ଦ୍ରାଙ୍ଗନା ମିଳି ନୃପ ପାଶେ
କୋମଳ-କୃତଜ୍ଞ-କଣ୍ଠେ ବୋଇଲେ, ହେ ନୃପ,
ହେଲା ଏତେକାଳେ ଅସି ଶାପାନ୍ତ ମୋହର,
ଦଗ୍ଧ କଲେ ତୁମ୍ଭେ ମୋର ଗର୍ଦ୍ଦଭଶରୀର,
ହେବ ଶାପମୁକ୍ତ ମୁହିଁ, ଥିଲି ନିର୍ଦ୍ଧାରିତ,
ସାଧିଲ ମହୋପକାର ତୁମ୍ଭେ ମୋର ପାଏ,
ଯେଉଁଛି ମେଲାଣି, ହେଉ ମଙ୍ଗଳ ତୁମ୍ଭର
ଯିବି ଏବେ ଚିନ୍ତୁ କତ, ତନୟା ତୁମ୍ଭର
ହୋଇଅଛି ଅନ୍ତଃସତ୍ତ୍ୱା, ଜନ୍ମିବ ଯେ ସୁତ
ଗର୍ଭେ ତାର, ନୃପବର, ହେବ ସେ ବାଳକ
ପ୍ରଚଣ୍ଡ ଆଦିତ୍ୟ ସମ ବିପୁଳବିକ୍ରମୀ,
ଦୋର୍ଦ୍ଦଣ୍ଡ ପ୍ରତାପଶାଳୀ, ବହିବ ଶରୀରେ
ସହସ୍ର ମାତଙ୍ଗବଳ, ହେବ ପୁଣି ଜ୍ଞାନୀ,
ନୀତିଜ୍ଞ,ପରୋପକାରୀ, ସାହସୀ, ଧାର୍ମିକ,
କରିବ ସେ ଏକଛତ୍ରା ସସାଗରାଧରା,
ତାର କୀର୍ତ୍ତି ଯାଗ ଧୂମ-ପବନ-ସୁରଭି
ବହିବ ଅନନ୍ତ କାଳ ଭାରତସ୍ଥ ବାୟୁ,
ଯାବତ ଥିବ ଏ ଧରା, ଥିବ ଏ ଭାରତ ;
ରଖିବ ବିକ୍ରମାଦିତ୍ୟ ବୋଲି ତାହା ନାମ ।

ଶୁଣି ରାଜକନ୍ୟା ସ୍ୱାମୀ ନିଧନବୃତ୍ତାନ୍ତ
କେଶ ବାସ ଅସମ୍ଭାଳେ ଧାଇଁ ଆସି ଘରେ,

ପଡ଼ ସ୍ୱାମୀ ପଦତଳେ, ଢ଼ାଳଲ ଲୋତକ,
ଯଥା କ୍ଷୀଣା ସୌଦାମିନୀ, ନଭଃ-ସ୍ୱର୍ଣ୍ଣଲତା
ଅବଲୁଣ୍ଠି ପ୍ରତ୍ୟାବୃତ୍ତ ବାରିବାହପଦେ,
କରେ ବର୍ଷାଧାରା ବ୍ୟାଜେ ଶୋକାଶ୍ରୁ ବର୍ଜନ ।
ଆହା କି ସୁନ୍ଦର ସେହି ବିଲୁଳିତ ବେଶ,
ଅଯତ୍ନବିନ୍ୟସ୍ତ କେଶ ପଡ଼ି ବାଳା ମୁଖେ
ଦିଶେ ବିଶୃଙ୍ଖଳ ଯଥା ଶୋଭିର ବିପଣୀ,
ଉଡ଼ାଇ ଶୈବାଳରାଶି ଧୀରସମୀରଣ
ପକାଉଛି ଆଣି କିବା ପଙ୍କଜନୀ ପରେ ।
ଭାଷିଲା ଆରତେ ଜେମା ଶୋକ ଗଦଗଦେ,
ସତେ କି ହେ ଛାଡ଼ିଯିବ ଦାସେ, ଏ ଦାସୀକି,
ସତେ କି ସେବକା ହେବ ବଞ୍ଚିତ ଏଣିକି
ସେ ପଦସେବାରୁ ଦେବ, ସତେ କି ହେ କହ
ଫଳିବ ନିଷ୍ଠୁର-ଫଳ କରୁଣା-ପାଦପେ ?
ତୁମ୍ଭେ ପ୍ରାଣ, ମୁଁ ଶରୀର, ପ୍ରାଣର ଅଭାବେ
ସମ୍ଭବେ କି, ସୁରମଣି ଅସ୍ତିତ୍ୱ ଦେହର ?
ତୁମ୍ଭେ ସ୍ୱଚ୍ଛ ଝର ଶୈଳ କର୍କଶ ସଂସାରେ,
ପଦାଶ୍ରିତା ଲତା ମହୁଁ, ଶୁଖି ଗଲେ ଝର,
କେମନ୍ତେ ବଞ୍ଚିବ ଭଲା ଅନାଥା ଲତିକା ?
ପ୍ରାଣ ତରଣୀର ମୋର ତୁମ୍ଭେ କର୍ଣ୍ଣଧାର
ଏ ଭବ-ସାଗରେ, ମୁହିଁ ଆରୋହୀ କେବଳ

ତୁମ୍ଭ ବିନା ସେ ତରଣୀ ଅଶେଷୀ ସନ୍ଧିତେ
ଦୁଃଖ-ବାତ୍ୟାବର୍ତ୍ତେ ପଡ଼ି ହେବ ନିମଜ୍ଜିତ ।
ଯିବ ଯଦି ତବେ, ନାଥ, ନିଅ ଏ ଦାସୀକି,
ଉପେକ୍ଷି ଗ୍ରୀଷ୍ମକୁ କେବେ ଯାଏ ନାହିଁ କାୟା ;
ହୁଏ ଯଦି ସ୍ଥାନାନ୍ତର ଜ୍ୱଳନ୍ତ ପ୍ରଦୀପ,
ଚାଲିଯାଏ ଶିଖା ତେବେ ସଙ୍ଗେ ସଙ୍ଗେ ତାର,
ବହିଗଲେ ସରୁଁ ଜଳ, ରହେ କି ଶଫରୀ ?
ରମଣୀ-କରୁଣ-ବାଣୀ ଶୁଣି ଇନ୍ଦ୍ରସୁତ
ଉଠାଇ ସାଦରେ ତାକୁ ଅବନୀଶଯ୍ୟାରୁ
ସ୍ୱହସ୍ତେ ଆଡ଼େଇ ଦେଇ ବିକ୍ଷିପ୍ତ ଅଳକ
ନିହାଲେ ପ୍ରେୟସୀ ମୁଖେ ଦୃଷ୍ଟି ଅପଲକ,
ଅଞ୍ଚାରେ ଆଉଜେଇ ଦେଇ ଅଧମୁଖେ ଆହା
ଦେଖିଲେ କି ଧନମଣି କମଳିନୀ ମୁଖ ।
ମିଶିଲା ନୟନଜ୍ୟୋତି ନୟନଜ୍ୟୋତିରେ,
ବହିଲା ପ୍ରେମର ଧାରା ନୟନୁ ନୟନୁ,
ନୟନେ ନୟନେ ହେଲା ଅନ୍ତିମ ସମ୍ଭାଷ,
କି ଗମ୍ଭୀର ଉପଦେଶ ଢ଼ାଳିଲା ତରୁଣ
ବିଦଗ୍ଧ ତରୁଣୀ ପ୍ରାଣେ, ନୟନ ସଙ୍କେତେ,
ନୀରବ ଭାଷାରେ, ବାଳା କି ବୁଝିଲା ତହୁଁ,
କେ ଭେଦିବ ପ୍ରେମର ସେ ରହସ୍ୟ ନିଗୂଢ଼ ?
ଏହି ଭାବେ କିଛିକ୍ଷଣ ହୁଅନ୍ତେ ଅତୀତ,

ଭାଷିଲେ ଗନ୍ଧର୍ବସେନ ଶାନ୍ତକୋମଳସ୍ୱରେ—
ରାଜକନ୍ୟେ, ଏ ସଂସାର ସନ୍ଦର୍ଭ ଜଟିଳ,
ବିଷମ ସମସ୍ୟାପୂର୍ଣ୍ଣ, ନୁହେ ଏ ସଂସାର,
ନିଦ୍ରା-ଚନ୍ଦ୍ରପଟାଙ୍କିତ ସୁଖ-ସ୍ୱପ୍ନ ଏହା ।
ନୁହେ ଏ ମିଳନଧାମ, ନିଶ୍ଚେ ବିଚ୍ଛେଦର
ଭୂମି, ନୁହେ ଚିର ଏଥି କାହାର ମିଳନ,
ନେଇ ପାରେ ନାହିଁ ସଙ୍ଗେ ଏଥୁ କିଛି କେହି,
ଆଉ ଆନ କଥା ଦୂରେ, ନିଜର ଶରୀରେ
(ସଂସାରେ ପ୍ରଥମ ପ୍ରିୟ, ଦ୍ୱିତୀୟ ଜୀବନ)
ନେବାକୁ ସଙ୍ଗରେ କାର ନାହିଁ ଅଧିକାର
ମାଟିର ଅର୍ଜନ ରହେ ପଡ଼ିଣ ମାଟିରେ ।
ପ୍ରାକ୍ତନ ନିୟମେ ଜୀବ ଆସେ ଏକୁଟିଆ,
ଯିବାବେଳେ ସେହିପରି ଯାଏ ମଧ୍ୟ ଏକା,
ନୁହନ୍ତି ଅମର କେହି ଏ ମର ଜଗତେ,
କରୁଛନ୍ତି ଅଲକ୍ଷରେ ସର୍ବେ ମହାଗତି,
କି ସ୍ଥାବର କି ଜଙ୍ଗମ, ମୃତ୍ୟୁ ଅଭିମୁଖେ ।
ତୁମ୍ଭେ ସୁଦ୍ଧା କାଳବଶେ ଯିବ ଦିନେ ଚାଲି ;
ଆଜି କିମ୍ବା କାଲି, ନତୁ ଦୂର ଭବିଷ୍ୟତେ,
ମୋହର ଗନ୍ତବ୍ୟଦେଶେ, ଅବଶ୍ୟ ସେ ଦିନ
ଘଟିବ ଉଭୟଙ୍କ ଭାଗ୍ୟେ ଅଖଣ୍ଡ ମିଳନ ;
ନାହିଁ ଗୋ ସେ ଦେଶେ, ସେହି ପୁଣ୍ୟମୟ ଦେଶେ

ବିଚ୍ଛେଦ-ଜନିତ ପ୍ରେମ ଚିରଚ୍ଛେଦ ପ୍ରିୟେ,
କିମ୍ବା ସେ ଦେଶର ପ୍ରେମ, ନୁହେ ଜ୍ୱାଳାମୟ,
ଯଥା ଏ ପାର୍ଥିବ ପ୍ରେମ, ଭଙ୍ଗୁର, ଅସାର ।
ଜୀବନ ସାୟାହ୍ନ ତବ ନୋହିଛି ଯାବତ,
ତାବତ ନିବସ ଧନି, ମର୍ତ୍ତ୍ୟେ ଧୈର୍ଯ୍ୟ ଧରି,
ଯାଉଛି ମୁଁ ଅଗ୍ରେ, ଏବେ ଘେନୁଛି ବିଦାୟ
ରହିଥିବି ସ୍ୱର୍ଗେ ତବ ଗତପଥ ଚାହିଁ,
ଯଥାକାଳେ ପରସ୍ପରେ ହେବ ତହିଁ ଭେଟ ।
ଏହିକାଳେ ଉପସ୍ଥିତ ଆସି ଦେବରଥ,
ଅମର ବିଭବେ ପୂର୍ଣ୍ଣ, ନକ୍ଷତ୍ର—ବାହନ,
ପ୍ରବାହିତ ଦେବବାୟୁ—ସ୍ନିଗ୍ଧ ସୁଶୀତଳ,
ହେଲା ସ୍ଥଳୀ ସୁରଭିତ ଦେବସୌରଭରେ ;
ବସିଲେ ଗନ୍ଧର୍ବସେନ ଦେବରୂପ ଧରି
ସେହି କାମଗତି ରଥେ, ଝଟକେ ଶରୀରେ
କିରଣ-କଞ୍ଚୁକ, ଶିରେ କିରଣ-କିରୀଟ ।
ଭେଦି ଅନମ୍ବର ବର୍ତ୍ମ ଚଳିଲା ସ୍ୟନ୍ଦନ,
ଘନ ଘନ ଜୟଘଣ୍ଟା ହେଲା ନିନାଦିତ,
କ୍ରମେ କ୍ରମେ ଉଠି ଊର୍ଦ୍ଧ୍ୱେ ଅମର ବିମାନ
ଶୂନ୍ୟେ, ମହାଶୂନ୍ୟେ, ଯଥା ପ୍ରଦୀପ-ପଞ୍ଜିସ୍ଥ
ଦୀପାବଳୀ ଅମାବାସ୍ୟା ରାତ୍ରେ, ଗଲା ଶେଷେ
ଅନନ୍ତ—ଅନନ୍ତ ମହାନୀଳିମାରେ ମିଶି ।

ଜାମାତ୍ରୁ ବିଚ୍ଛେଦେ ଯଏ ଏକେ ଶୋକାକୁଳ,
ମିଶିଲା ସେ ଶୋକେ ଭୟ, ଯତେ ତୃଣ୍ଣି ପ୍ରାୟ,
ଜାମାତୃ ଭବିଷ୍ୟ ବାଣୀ ଶୁଣିଲା ବେଳରୁ
ଥରୁଅଛି ଅନ୍ତରସ୍ଥା, ଭାବୀ କନ୍ୟାସୁତ
ହେବ ଚକ୍ରବର୍ତ୍ତୀ, ଏହି ଖ୍ୟାତ କରିଦେଲା
ବୃଦ୍ଧ ନୃପେ ମ୍ରିୟମାଣ, ଜପିଲେ ସେ ତାଙ୍କୁ
ନିଜ ଅଧିକାରଚ୍ୟୁତ ମନ୍ତ୍ର, ବୁଝାଇଲେ
ମନ୍ତ୍ରିବର୍ଗ କେତେ, ମାତ୍ର ସେ କଳ୍ପିତ ଭୟ
ନ ମାନି କାହାର ଦତ୍ତ ସାନ୍ତ୍ୱନା କିଛିହେଁ,
ଲଭିଲା ଉତ୍ତରୋତ୍ତର ବୃଦ୍ଧି ବହୁଗୁଣେ ।
ଯାଏ ହୋଇ ଛନ୍ନମତି, ସ୍ଥିର କଲେ ଶେଷେ,
ଯାହାର ଦୌହିତ୍ରେ ଜାତମାତ୍ରେ, ମୁକ୍ତ ହେବେ
ଆସନ୍ନ ଆଶଙ୍କା-ରାହୁ ଗ୍ରାସଣ କବଳୁ ।
ପାଞ୍ଚି ଏହି ପାପପାଞ୍ଚ, ହକାର ପ୍ରହରୀ
ଜଗାଇଲେ କନ୍ୟାଗୃହ ଚୌପାଶେ ନିବଡ଼େ,
ପ୍ରଦାନ ଆଦେଶ ସର୍ବେ ବିଶେଷଭାବରେ,
ଦେବାକୁ ସମ୍ବାଦ ତୁରା ଶିଶୁଜନ୍ମ କ୍ଷଣେ ।
ଏଣେ ଯଥାକାଳେ ଯାଇ ବାଳକା ବାଳାଇ
ଚିତ୍ରକୂଟ ଷଡ଼ଯନ୍ତ୍ର ସମ୍ବାଦ ଶ୍ରବଣେ
ଶତବଜ୍ର ବଳ, ହାୟ କ୍ଷତ ମଧ୍ୟେ କ୍ଷତ !
ସ୍ମରିବେ ତ ଥିଲା ପତ୍ନୀ-ବିଚ୍ଛେଦ-ବିଧୁରା,

ତହିଁପରେ ସଖା ଆଶା ଭରସାର ସ୍ଥଳ
ଅଜାତ ଶିଶୁର ହତ୍ୟାଶଙ୍କା, ଅହୋ, ହେଲା
ଅଗ୍ନି ବୃଷ୍ଟିପରେ ଅଗ୍ନିବୃଷ୍ଟି, ଦେଲା କରି
ଭସ୍ମୀଭୂତ ହୃଦ ତାର, ବୁଝିଲି ସେ ଏବେ,
ସ୍ୱାର୍ଥପାଇଁ କେଉଁ ପାପେ ପରାଙ୍ମୁଖ ନର ?
ଶିରେ କର ଦେଇ ବାଳା ଖଲିଲା ଏସନ,
କି ପାପ ସଂକଳ୍ପ ! ଅହୋ, ସତେ କି ଜନକ
ଏଭଳି ଗାଭସ୍ରପଣ ପୋଷିଛନ୍ତି ମନେ !
ସତେ କି ସେ ଏହିରୂପେ ଦେବେ ପୂର୍ଣ୍ଣାହୁତି
ଅପତ୍ୟ-ବାତ୍ସଲ୍ୟ-ଯଜ୍ଞେ ! ହେଉଛି ସ୍ମରଣ,
ଖେଳୁଥିଲି ବାଲ୍ୟେ ଯବେ ଧନୁର୍ବାଣ ଘେନ,
ଛାଡୁଥିଲି ଇତସ୍ତତଃ ନିର୍ଲକ୍ଷେ ଶାୟକ,
ସ୍ତନ୍ୟପାୟୀ ଶିଶୁସହ ହୋଇଥିଲା ଉଣ୍ଣ
ପାଳିତ କୁରଙ୍ଗୀ ମୋର, ଦୈବେ ଏକ ଶର
ବାଜନ୍ତେ କୁରଙ୍ଗଶାବ କୋମଳ ଗାତ୍ରରେ,
ଛାଡ଼ିଲା ସେ ପ୍ରାଣ, ତହୁଁ ମାତା ତାର ହୋଇ
ଶୋକୋଚ୍ଛ୍ୱାସେ ରୁଦ୍ଧକଣ୍ଠ, ଗୃହିଁ ଥରେ ମୋତେ,
ଥରେ ମୃତ ଶିଶୁମୁଖେ, ବ୍ୟାକୁଳନୟନେ,
ସମ୍ଭାଳି ନ ପାରି ଧୈର୍ଯ୍ୟ ତେଜିଲା ଜୀବନ ;
ସେ ପାପର ପ୍ରାୟଶ୍ଚିତ୍ତ ଏତେକାଳେ ଅବା
ଘଟାଇଲା ବିଧି ଆଣି ଦଗ୍ଧ ଭାଗ୍ୟେ ମୋର ।

ଶୁଣିଛୁ ପୁରାଣେ, କ୍ରୂର ରକ୍ଷୋଧର୍ମୀ କଂସ
କରିଥିଲା ଦେବକୀଙ୍କୁ ବନ୍ଦିନୀ ଏପରି,
ମାତ୍ର ତାହା ଭ୍ରାତା ଭଗ୍ନୀ ସମ୍ପର୍କର କଥା,
ହୋଇ ଜନ୍ମଦାତା ପିତା, ଏତେକ ନିଷ୍ଠୁର
କନ୍ୟାପକ୍ଷେ, କେଉଁ କାଳେ ଶୁଣା ନାହିଁ କାହିଁ ;
ଆଚରିବା ଥାଉ ତେଣେ ଏଭଳି ପାତକ,
ଉଚ୍ଚାରଣେ ଅପବିତ୍ର ନ ମଣିବ ଭଲା
କେବଣ ନାସ୍ତିକ ସ୍ୱୀୟ କଣ୍ଠ ରସନାକୁ ।
ହୋଇ ଗର୍ଭଧାରିଣୀ ମାତା, କେମନ୍ତେ ଦେଖିବ
ସ୍ୱଚକ୍ଷୁରେ ପୁତ୍ରହତ୍ୟା, ଫାଟିଯିବ ଛାତି,
ଆହା ସେ କରୁଣ ଦୃଶ୍ୟ ସହିବ କି କେବେ
ମାତୃଚକ୍ଷୁ, ମାତୃହୃଦ—ବାତ୍ସଲ୍ୟ-ଗଠିତ !
କଷ୍ଟଭୋଗ ଅବସାନେ ପ୍ରାଣତ୍ୟାଗଠାରୁ
ତା ଆଗୁଁ ମରଣ ଶ୍ରେୟଃ, ହେଲେ ହେଉ ପଛେ
ଆତ୍ମହତ୍ୟା ମହାପାପ, ମାତ୍ର ତା ଯନ୍ତ୍ରଣା
ନୁହେ ତୀବ୍ର ଉପସ୍ଥିତ ଯନ୍ତ୍ରଣା ସମାନ ।
କି ଅଶାନ୍ତ ଝଞ୍ଜାପାତ ହେଲା ପ୍ରବେଶେ, ପ୍ରାଣେ,
ଶାନ୍ତମୟ ତୁମ୍ଭେ, ସୃଜ ଅଶାନ୍ତ କିପାଇଁ ?
ରଖିଛ ଜଡ଼ିତ କରି ସୁଖ ସଙ୍ଗେ ଦୁଃଖ,
ଚରାଚର ତବ ସୃଷ୍ଟି, ତୁମ୍ଭର ସର୍ଜିତ
ସୁଖ, କେ ସୃଜିଲା ଦୁଃଖ, ତୁମ୍ଭ ବିନା ଆଉ ?

ଆନନ୍ଦରେ ଆସ ଜୀବ, ସଂସାରପ୍ରବାସେ
କଟାଇ ଆନନ୍ଦେ ଦୁଇ ଦିନ, ଯାଇ ପୁଣି
ମିଶିଲେ ତୁମ୍ଭର ସତ୍ୟ ସଦାନନ୍ଦମୟ
କୋଡ଼େ, ପ୍ରଭୋ, ଏଥିରେ ବା କି କ୍ଷତି ତୁମ୍ଭର ?
ମାନବ ପକ୍ଷକେ ହେଉ ସ୍ୱଭାବଦୁର୍ବଳ,
ମାତ୍ର ତବ ଶକ୍ତି-ଶଙ୍ଖ-ପାଞ୍ଚଜନ୍ୟ ଧ୍ୱନି
ଶୁଣିବାକୁ ଅକ୍ଷମ କି ସେହି ଦୁର୍ବଳତା ?
ନାହିଁ ପଳାୟନ ପଥ, ଅବରୁଦ୍ଧ ତାହା
ଅସ୍ତ୍ର-କଣ୍ଟକିତ ଭୀମ ପ୍ରହରୀ-ପାଦପେ,
ଜଳରେ କୁମ୍ଭୀରଭୀତି, ସ୍ଥଳେ ବ୍ୟାଘ୍ରଭୀତି,
ଉଭୟ ସଙ୍କଟାକୀର୍ଣ୍ଣ, ଏବେନ ମଧ୍ୟରେ
ନାହିଁ ତ ତୃତୀୟ ସ୍ଥାନ, ଅତଃ ଏ ଦୁଷ୍କାଳେ
ମୁଖୁହିଁ ପରମାଶ୍ରୟ, ବସି ମୃତ୍ୟୁ-ନାବେ
ପାର ହେବି ଅବହେଳେ ଏ ଦୁଃଖ-ବାରିଧି ।
ହେ ହରି, ଅନାଥନାଥ, ବିପନ୍ନ-ବାନ୍ଧବ,
ସ୍ୱାର୍ଥ-ଦ୍ୱେଷ-ବିଷ-ଦଗ୍ଧ ଏ ପାପ ପୃଥିବୀ
ଲାଗୁଛି ଅସୁଖ ମୋତେ, ରୋଗି-ଶଯ୍ୟା ପ୍ରାୟ,
ନାହିଁ ଆଉ ଆକାଂକ୍ଷାର ଦାରୁଣ ପିପାସା,
ହେଲଣି ଅ ଜୀର୍ଣ୍ଣ, ପ୍ରଭୋ, ଆଶା-ବାରି ପାନେ
ବିଷାକ୍ତ ପଙ୍କିଳ ପୁଣି କୀଟାଣୁ-ଦୂଷିତ,
ଘେନ ଏବେ ଏ ଦାସୀକି ଶ୍ରୀପଦସମୀପେ,

ଖଣ୍ଡିବ ସେ ରୋଗ ମୋର ତବ ପାଦୋଦକେ,
ଲୋଡ଼ା ନାହିଁ, ପ୍ରଭୋ, ଭକ୍ତ ହେବାର ଗୌରବ,
ନୁହେଁ ମୁଁ ତହିଁଙ୍କ ଯୋଗ୍ୟ, ହେବ ମାତ୍ର ଦାସୀ,
ପୂରାଅ ଏ ବାଞ୍ଛା ମୋର, ବାଞ୍ଛାକଳ୍ପତରୁ ।
ଏଥୁଅନ୍ତେ ରାଜକନ୍ୟା ବିଷାଦ-ବିବଶା
ଶାଣିତ ଛୁରିକାଘାତେ ବିଦାରି ଉଦର,
ସେହି ମୁହୂର୍ତ୍ତରେ ତହିଁ ତେଜିଲା ଜୀବନ,
ପାର୍ଥିବ ଶୋଚନା ସହ ପାର୍ଥିବ ଶରୀର
ରହିଲା ପୃଥ୍ୱୀରେ ପଡ଼ି, ସାଙ୍ଗ ଭବଲୀଳା ।
ଗର୍ଭରୁ ବାହାରି ଶିଶୁ ଅକ୍ଷତଶରୀରେ
ତଳେ ପଡ଼ି ମୃଦୁ ସ୍ୱରେ ରାବିଲା ସଘନେ,
ଜାଗି ସେ କ୍ରନ୍ଦନ ସ୍ୱରେ ପ୍ରହରୀନିକର,
ମିଳି ଜେମା ଗୃହେ, ଦେଖି ଭୀଷଣ ଘଟଣା
ମଣିଲେ ବିସ୍ମୟ, ତହୁଁ ଯେନ ନବଜାତ
ଶିଶୁ, ସମର୍ପିଲେ ନେଇ ନୃପତି ନିକଟେ,
ଦେଖି ରାଏ ଶିଶୁ ମୁଖ, ଶିଶୁର ଆକୃତି,
ମୋହନ-ମାଧୁରୀବୋଳା, ଯୁକ୍ତ ସୁଲକ୍ଷଣେ,
ହେଲେ ସ୍ନେହସିକ୍ତଚିତ୍ତ, ପିଶାଚୀ ଜିଘାଂସା
ହେଲା ନିର୍ବାସିତା, ଆସି ବସିଲେ ତା ସ୍ଥାନେ
ଦୟା-ଦେବୀ, ପୁଣ୍ୟବତୀ, ସ୍ନିଗ୍ଧ-ସୁଧାମୟୀ ;
ରାଜାଙ୍କ ଦାରୁଣ ପଣ ହେଲା ଅନ୍ତର୍ହିତ ।

ପୌତ୍ର ଯେହୁ ଦେବରାଜ ସୁନାସୀରଙ୍କର,
ସଂସ୍ଥାପି ଭାରତେ ଧର୍ମ ଅଖଣ୍ଡ ସାମ୍ରାଜ୍ୟ
ଧରିବ ଯେ ସାହିତ୍ୟ ଦର୍ଶନ ଆଦିର
ଉଜ୍ଜ୍ୱଳ ବର୍ତ୍ତିକାପୁଞ୍ଜ ଜଗତ ସମ୍ମୁଖେ,
ପ୍ରେରିତ ଯେ ବିଶ୍ୱହିତ ସାଧନ ସକାଶେ,
ଅବତୀର୍ଣ୍ଣ ମର୍ତ୍ତ୍ୟପୁରେ ଯେ ମହାପୁରୁଷ
ମହାକର୍ତ୍ତବ୍ୟର ଭାର ବହି ଶିରୋଦେଶେ,
କାର ସାଧ୍ୟ ସଂହାରିବ ସେ ଦେବବାଳକେ ?
କନ୍ୟାର ମଙ୍ଗଳବାର୍ତ୍ତା ପୁଚ୍ଛନ୍ତେ ନରେଶ,
କହିଲା ପ୍ରହରୀ, ହାୟ, କାହିଁ କନ୍ୟା ନୃପ,
ତବ ସ୍ୱୀୟ ଗର୍ଭ ସେହୁ ହେଲେଣି ଗତାସୁ ।
ଶୁଣି ଏ ଲୋମହର୍ଷଣ ବିପଦ ବାରତା
ହେଲେ ନୃପ ବିଷବର୍ଷୀ ଶୋକରେ ବିହ୍ୱଳ,
ବିସ୍ତାରି ସହସ୍ରଶିଖା ଅନୁତାପାନଳ,
ଦଗ୍ଧ କଲା ମର୍ମସ୍ଥଳ, ମିଶି ତହିଁ ପୁଣି
ଅପତ୍ୟସ୍ନେହର ସ୍ମୃତି ଆହୁତିରୂପରେ
କଲା ତାକୁ କୋଟିଗୁଣେ ଅସହ୍ୟ, ପ୍ରଖର ;
ଭାଷିଲେ ଗଦ୍‌ଗଦେ ରାଜା ଶୋକଭଗ୍ନ ସ୍ୱରେ,
ପୂର୍ଣ୍ଣାଶ୍ରୁ ନୟନେ, ଚାହିଁ ସଚିବ ବଦନ—
ଅହୋ, କେଡେ ପାପିଷ୍ଠ ମୁଁ, ନାରକୀ, ପାମର,
ଲିପ୍ତ ହେଲି କନ୍ୟା-ବଧ-ସମୁତ୍କଟ-ପାପେ,

ଅକ୍ଷାଳିତ ଏ କଳଙ୍କ ରହିଲା ମୋହର
ସୁଦୃଢ଼େ ଅଙ୍କିତ ହୋଇ ପ୍ରାଣ-ପଞ୍ଜିକାରେ,
ପ୍ରାଣାନ୍ତରେ ପୁଣି ମିଶି ରହିବ ସ୍ମୃତିରେ ।
ପ୍ରାକୃତ ପ୍ରାଧାନ୍ୟ, ତୁଚ୍ଛ ଧନମୋହେ ପଡ଼ି
ଅର୍ଜିଲି ଯେ ପାପ, ନାହିଁ ପ୍ରାୟଶ୍ଚିତ୍ତ ତାର,
ଏଥିଲାଗି ପ୍ରାପ୍ୟ ମୋର ହେବ ପରକାଳେ
ଆଗ ବଂଶଧରଙ୍କର ଦୁରବସ୍ଥା ଉପାଧି ।
ଧିକ୍ କାପୁରୁଷ ମୁହିଁ, ସୃଜିଲି ନରକ
ନିଜ ହାତେ ନିଜପାଇଁ, ମୋର ଏ ଦୁଷ୍କୃତ—
ଘୃଣ୍ୟ, ଅମାନୁଷୀ, ଏହି ଅକ୍ଷୟ ଦୁଷ୍କୃତ
ରଖିବାକୁ ଦେଖୁ ନାହିଁ ସ୍ଥାନ ଚରାଚରେ !
ହାୟ, ମା, କି ହେବ ମୋର ପାରତ୍ରିକ ଗତି,
ନିଷ୍ଠୁର ମୁଁ, ନର-ପଶୁ, ପାପୀ, କନ୍ୟାଘାତୀ,
ନୁହେଁ ପିତା ଯୋଗ୍ୟ କେବେ ତୋ ପରି ଦେବୀର,
ମୁହିଁ ପିତା ଅଭାଜନ, ମାତ୍ର ତୁ ମା'ଆ ଲୋ,
ଦୟା-କ୍ଷମା-ସ୍ନେହ-ପ୍ରୀତି-ଭକ୍ତି-ପ୍ରସ୍ରବଣ,
କ୍ଷମିବୁ ସ୍ୱଗୁଣେ ତୋର ଅଧମ ଜନକେ ।
ମାଗିବୁ ମୋପାଇଁ କ୍ଷମା ବିଶ୍ୱପତି କତ,
ମୋ ପରି ଧରମଦ୍ରୋହୀ ଅପବିତ୍ର ତାଙ୍କ
ନ ପାରିବ ପଶି ତାଙ୍କ ପବିତ୍ର ସୁଧାମେ,

ଯଥା ସିନ୍ଧୁଘୋଷ ବଡ଼ଦେଉଳ ବେଢ଼ାରେ ; *
ମା, ତୁ ପୁଣ୍ୟବତୀ ସତୀ, କଲେ ଜଣାମଣା
ତୋର ଏହି କୃପାପାତ୍ର ଦୁଃସ୍ଥ ପିତାପାଇଁ,
ନିଶ୍ଚେ ସେ ମୋ ପ୍ରତି ହେବେ କରୁଣା-ପ୍ରବଣ ।
ଅହୋ, କି କରିବି, କାହିଁ ଯିବି, କେ ରଖିବ
ମୋତେ ଆତ୍ମ-ଦୁଷ୍କୃତିର ଏ ଘୋର କବଳୁ ?
ଯହିଁ ଯେଉଁ ଦିଗେ, ନାଚେ ସ୍ୱକୃତ ପାପର
ଅସଂଖ୍ୟ ବିକଟାକାର ଛାୟା ମୋ ନୟନେ,
କି ଭୀଷଣ ପୁଣି ସେହି ଛାୟାର କରଣୀ,
ପ୍ରଦାନେ ସେ ଧମନୀରେ ଅନଳ ଫୁତ୍କାର ।
ରାଜାଙ୍କ ଏ ଆକ୍ଷେପୋକ୍ତି ପ୍ରଳାପମିଶ୍ରିତ
ଶୁଣି ମନ୍ତ୍ରୀ କାଳୋଚିତ ବୋଧିଲେ ସାନ୍ତ୍ୱନା—
ତେଜ ନୃପ ଖେଦ, ଶୂନ୍ୟଗର୍ଭ ଅନୁତାପ,
ମାନବ ଦୁର୍ବଳମତି, ଏ ସଂସାରେ ତାର
ସ୍ଖଳନ ବିଚିତ୍ର ନୁହେ, ବରଂ ସ୍ୱାଭାବିକ.
ଆସି ନାହିଁ ଭବେ ନର ସୁଖଭୋଗପାଇଁ,
ଆସିଅଛି ସୁଖାର୍ଜନପାଇଁ, ନୁହେ ଧରା
ଭୋଗଭୂମି କାର, ଅଟେ କର୍ମଭୂମି ସିନା,
ଦୁଃଖଭୋଗ ମାତ୍ର ଏଥି ପ୍ରାପ୍ୟ ମାନବର ;
ଅତଃ ନୀରବରେ ସବୁ ସହିବା ଉଚିତ ।

---

ପୁରୀ ଜଗନ୍ନାଥ ଦେଉଳ ବେଢ଼ା ଭିତରେ ସମୁଦ୍ରଗର୍ଜନ ଶ୍ରୁତିଗୋଚର ହୁଏ ନାହିଁ ।

ଏହିରୂପେ ନାନାଭାବେ ପ୍ରବୋଧି ସଚିବ,
ଶିଶୁକୁ କୋଡରେ ଘେନି ମିଳି ଅନ୍ତଃପୁରେ,
ସମର୍ପି ମହିଷୀ କରେ କହିଲେ ଏସନ,—
ଦେବି, ତବ ହୃଦୋଦ୍ୟାନଜାତ ଲତିକାରେ
ଫୁଟିଥିଲା ଏ ଫୁଲଟି, ଘେନନ୍ତୁ ସାଦରେ ।
ନାହାନ୍ତି ଗୋ ତେଜ ପ୍ରାଣ ତନୟା ତୁମ୍ଭର,
ରୂପାନ୍ତର ଏରୂପେ ସେ, ଧରି ଏହି ଭାବ,
କର ଏ ବାଳକେ ଏବେ ଲାଳନ ପାଳନ ;
ଥିଲା ଯେଉଁ ସ୍ନେହ ଜେମା ପ୍ରତି, ସେହି ସ୍ନେହ
ପ୍ରତିଫଳୁ ପୂର୍ଣ୍ଣରୂପେ ଏ ଶିଶୁ ଉପରେ ।
ଦେଖି ଏହି ସୌମ୍ୟମୂର୍ତ୍ତି, ମୃତ୍ୟୁ ଖେ ଶିଶୁ ହାସ,
(ଶୋଭା-ସୁଧା-ପାରାବାରେ ପୁଷ୍କର ଲହରୀ)
କନ୍ୟାର କରୁଣ ସ୍ମୃତି ପାସୋରିବ ମନୁ ।
କରିଛନ୍ତି ରକ୍ଷା ରାଏ ନ ବଧି ଶିଶୁକୁ,
ଜାଣି ଏହା ରାଣୀ ଭକ୍ତି-କୃତଜ୍ଞତା ସହ
ବହିଲେ ଇଷ୍ଟଦେବୋଦ୍ଦେଶ୍ୟେ ଅସଂଖ୍ୟ ପ୍ରଣତି,
ପରିହରି କନ୍ୟା ଶୋକ ତହୁଁ ମହାଦେଈ,
କରାଇଲେ ଭୂରି ଜାତସଂସ୍କାର ଶିଶୁର ।
ବିତରିଲେ ବହୁଧନ ଏକାଦଶ ଦିନେ
ରଖିଣ ବିକ୍ରମାଦିତ୍ୟ ଦୁହିତୃଜ ନାମ
ପିତୃନିର୍ଦ୍ଦେଶାନୁସାରେ, ପୁନନିର୍ବିଶେଷେ
ପାଳିଲେ ସ୍ନେହେ ରାଣୀ ଶିଶୁକୁ ସର୍ବଥା ।



## ତୃତୀୟ ସର୍ଗ ।



ବଢ଼ିଲେ ବିକ୍ରମାଦିତ୍ୟ—ଆଦିତ୍ୟଦର୍ଶନ,
ସୁଖ ସ୍ନେହ ସମ୍ଭୋଗର ସୁକୋମଳ କ୍ରୋଡ଼େ,
ବୟୋବୃଦ୍ଧି ସହକାରେ ବଢ଼ିଲା ପ୍ରତିଭା,
ବଢ଼ଇ ଯଥା ତିଥିଭେଦେ ଶଶଧର ସହ
ସୁହାସୀ ଚନ୍ଦ୍ରିକା—ଚନ୍ଦ୍ର-ଚନ୍ଦ୍ରିମାରୂପିଣୀ ।

ବହିଲା ଶୁଦ୍ଧାନ୍ତେ ଖରେ ସହସ୍ରଧାରରେ
କୌତୁହଳ ବାଳୁତ ଲୀଳା ପବିତ୍ର ଅମୃତ-
ଉତ୍ସ, ଗଲା ତହିଁ ଧୋଇ ରାଜା ରାଣୀ ମନୁ
କନ୍ୟାବିୟୋଗର ସେହି ଜ୍ୱାଳାମୟୀ ସ୍ମୃତି—
ସେ ଅବ୍ୟକ୍ତ ବେଦନାର ଉଚ୍ଛ୍ୱସିତ ଶୋକ ।
ଏହିରୂପେ କିଛୁକାଳ ହୁଅନ୍ତେ ଅତୀତ,
ଯାଇ ଦିନେ ଧୀର ରାଏ ଦ୍ରୌହିତ୍ର ଉଭୟେ
କହିଲେ, ହେ ବତ୍ସ, ତେଜି କ୍ରୀଡ଼ା ସୁଖ ଏବେ
ନାନା ଶାସ୍ତ୍ର ଅଧ୍ୟୟନେ କର ଜ୍ଞାନାର୍ଜନ,
ବିଦ୍ୟାଲାଭ କଷ୍ଟସାଧ୍ୟ, ମାତ୍ର ଅଜ୍ଞତାର
ସୁଖଠାରୁ ସାର ନିଶ୍ଚେ ଜ୍ଞାନାର୍ଜନ ଦୁଃଖ ।
ବିଦ୍ୟାର୍ଜନ ଦୁଃଖ କେବେ ଦୁଃଖ ନୁହେ ବାବୁ,
ସ୍ୱର୍ଗ ସୁଖ ହେତୁର ସେ ସୁବର୍ଣ୍ଣ ସୋପାନ,

ବିଦ୍ୟା ସ୍ପର୍ଶମଣି, ହୁଏ ପରଶେ ତାହାର
କଳଙ୍କିତ ନର-ଲୌହ ଶୁଦ୍ଧ କଳଧୌତ ।
ଜୀବସୃଷ୍ଟି ମଧ୍ୟେ ରାଜା ଯାହା ଯୋଗେ ନର,
ବିଦ୍ୟା ସେହି ହିତାହିତ ଜ୍ଞାନର ପ୍ରସୂତି,
ମାନବ ଜୀବନ ପଥ ଜଟିଳ କୁଟିଳ,
କରିଦିଏ ବିଦ୍ୟା ତାକୁ ସୁଗମ୍ୟ ସରଳ ;
ଅରୂପା ଜନନୀ ବିଦ୍ୟା, ମନୁଜକୁଳର
ଚତୁର୍ବର୍ଗଦାତ୍ରୀ, ବଳେ ଜନୟିତ୍ରୀଠାରୁ,
ମାତୃଦତ୍ତ ଏ ଶରୀର ଅସ୍ଥି ମାଂସମୟ,
କ୍ଷଣସ୍ଥାୟୀ, ମାତ୍ର ବିଦ୍ୟା---ମାତୃ-ଦତ୍ତ ଦେହ
ସୃଷ୍ଟି ଅପାର୍ଥିବ ରହେ, ଚିର ଅନଶ୍ୱର ।
ଅବିଦ୍ୟାର ଶିକ୍ଷାଗାର ଏ ସ୍ଥିର ସଂସାରେ
ବିଦ୍ୟାହିଁ ସଦ୍‌ଗୁରୁ ଏକା, ପ୍ରଦାନଇ ସେହି
ନ୍ୟାୟ-ନିଷ୍ଠା-ଦୟା-ଧର୍ମ-ସତ୍ୟ ସରଳତା-
ବିନୟ-ସୌଜନ୍ୟ-ଶିକ୍ଷା, କରେ ସମୁର୍ବର
ଜ୍ଞାନ-ଭକ୍ତି-ପ୍ରୀତି-ଜଳେ ହୃଦୟ-ଊଷରେ
କରି ପାରେ ବିଦ୍ୟା ବିନା କଦର୍ଯ୍ୟେ ସୁନ୍ଦର,
ନୀଚେ ଉଚ୍ଚ, ଦୀନେ ରାଜା, ଅପୂଜ୍ୟେ ପୂଜିତ
କରି ପାରେ ଦୀପ୍ତ ପୁଣି ତିମିରିତ ସ୍ଥାନେ ।
ବିଦ୍ୟା ଦୁର୍ବଳର ବଳ, ସେ ବଳେ ମାନବ
ଉଡ଼ି ପାରେ ବିହାୟସେ ବିହଙ୍ଗମ ଭଳି,

ଭେଦ ପାରେ ଅନାୟାସେ ଅନଳ ଅର୍ଗଳୀ ।
ବାସ୍ତବ ପରମବନ୍ଧୁ ବିଦ୍ୟା, ତା’ ବନ୍ଧୁତା
ନୁହେ ଦୁଷ୍ଟ ଅଦୃଷ୍ଟତା ଦୋଷେ କଦାଚନ
ପାର୍ଥିବ ବନ୍ଧୁତା ସମ; ମିଶି ରହେ ତାହା
ରୁଧିରର ପରମାଣୁ ସହ ଆଜୀବନ ।
ବିଦ୍ୟା ଅଚୌର୍ଯ୍ୟାପହାର୍ଯ୍ୟା ସମ୍ପତ୍ତି ମହତୀ,
ଅକ୍ଷୟା, ପ୍ରତ୍ୟୁତ ନିତ୍ୟ କ୍ରମବିବର୍ଦ୍ଧିତା,
ପ୍ରାକୃତ ଅର୍ଥ ମୂଲ୍ୟରେ ନୁହେ କ୍ରେୟ ତାହା,
ଉପାର୍ଜ୍ଜେୟ ଐକାନ୍ତିକ ସାଧନା ପ୍ରଭାବେ ।
ଅତଏବ ନାନାଶାସ୍ତ୍ର-କୁସୁମ-ଷଟ୍‌ପଦ
ପ୍ରବୀଣ ପଣ୍ଡିତବର୍ଗେ କରାଇ ପ୍ରସନ୍ନ,
ଶିକ୍ଷା କର ତାଙ୍କଠାରୁ ହିତ ଉପଦେଶ ;
ସମସ୍ତକୁ ନ ନିୟୋଗି ପ୍ରହରପଣରେ,
ତାହାର ପ୍ରହରୀ ହୋଇ କର ଅଧ୍ୟୟନ
କାବ୍ୟ, ବ୍ୟାକରଣ, ବେଦ, ବେଦାଙ୍ଗ, ପୁରାଣ,
ଇତିହାସ, ଧର୍ମଶାସ୍ତ୍ର, ମହାତ୍ମା-ଚରିତ,
ଜ୍ଞାନଶାସ୍ତ୍ର, ନୀତିଶାସ୍ତ୍ର, ଶିଳ୍ପ, ଧନୁର୍ବେଦ,
ସଙ୍ଗୀତ ଶାସ୍ତ୍ରାଦି ଅନ୍ୟ ଶୁଭ ବିଦ୍ୟାମାନ ।
ହୁଅ ପୁଣି ହସ୍ତୀ ଅଶ୍ୱ ରଥାରୋହେ ଦୃଢ଼,
ବ୍ୟାୟାମେ ଅଭ୍ୟସ୍ତ ନିତ୍ୟ, ଲମ୍ଫେ, ଉଲ୍ଲମ୍ଫନେ,
ଗଡ଼ଚକ୍ରଭେଦେ, ବ୍ୟୂହରଚନେ, ଧାବନେ,

ବ୍ୟୂହିତବାହିନୀଭଙ୍ଗେ ହୁଅ ସୁନିପୁଣ ।
ବିଗ୍ରହ, ଆସନ, ସନ୍ଧି, ଯାନ, ଦ୍ୱୈଧାଶ୍ରୟ,
ଏହି ଷଡ଼ ରାଜଗୁଣେ ; ଚୌବିଧ ଉପାୟ—
ଭେଦ, ଦଣ୍ଡ, ସାମ, ଦାନେ ଲଭ କୁଶଳତା ।
ଏହିରୂପେ ଧାରାଧୀଶ ଦେଇ ଉପଦେଶ
ଅର୍ପିଲେ ଦୌହିତ୍ରଦ୍ୱୟେ ଯୋଗ୍ୟ ଗୁରୁକରେ ।
ରତ ହେଲେ ଅଧ୍ୟୟନେ ଉଭୟ କୁମାର,
ଉପେକ୍ଷି ଆଳସ୍ୟ କ୍ରୀଡ଼ା—ଶୈଶବ-ସୁଲଭ,
ନ ରହିଲା ରୁଚି ଆଉ ଆହାରେ ଶୟନେ,
ରୁଚି ଅଧ୍ୟୟନେ ସଦା, ନ ଲାଗିଲା ସୁଖ
ରାଜହର୍ମ୍ୟ ଶିକ୍ଷାଗାର ଭଳି, ବେନି ଭ୍ରାତା
ବାଳ ବ୍ରହ୍ମଚାରୀ ପ୍ରାୟ ପାଠଶାଳାଶ୍ରମେ
ରହିଲେ ସାଧନା-ଯଜ୍ଞେ ଦୀକ୍ଷିତ ନିୟତ ।
ବଢ଼ିଲା ପ୍ରତିଭା କ୍ରମେ ଗୁରୁ ଉପଦେଶେ,
ସ୍ୱଭାବ ତେଜସ୍ୱୀ ହୀରା ପାଇ ଦୀପାଲୋକ
ପ୍ରକାଶିଲା କିବା ଦ୍ୟୁତି ପୂର୍ବୁଁ ବହୁଗୁଣେ ।
ସ୍ପର୍ଶିଲା ପ୍ରତିଯୋଗିତା ବେନି ଭାତା ପ୍ରାଣେ,
ହୁଡ଼ି ରଖି ପରସ୍ପରେ କଲେ ବିଦ୍ୟାଭ୍ୟାସ,
ଜ୍ଞାନାର୍ଜନ ଅର୍ଥେ ଜାତ ଯେ ପ୍ରତିଯୋଗିତା,
ପବିତ୍ର ସେ, ନୁହେ କେବେ ଈର୍ଷା ଅଭିଖ୍ୟାତ,
ଉନ୍ନତି ଅମୃତ ଫଳ କରେ ସେ ପ୍ରସବ,

ପ୍ରସବେ ପିଶାଚୀ ଈର୍ଷା, ପାପ-ହଳାହଳ ।
ହେଲେହେଁ ସୁବିଚକ୍ଷଣ ଜ୍ୟେଷ୍ଠ ଭର୍ତ୍ତୃହରି,
କଠୋର ପ୍ରତିଯୋଗିତା-ପରୀକ୍ଷାକ୍ଷେତ୍ରରେ
ସର୍ବୋଚ୍ଚେ ନିର୍ଦ୍ଦିଷ୍ଟ ହେଲା ବିକ୍ରମଙ୍କ ସ୍ଥାନ ।
ମେଧାବୀ ବିକ୍ରମାଦିତ୍ୟ, ମହାମତିମାନ,
ଅଲୌକିକ ଅତ୍ୟଦ୍ଭୁତ ସ୍ମୃତିଶକ୍ତିବଳେ
ଶିଖିଲେ ବିବିଧ ବିଦ୍ୟା ଅତ୍ୟଳ୍ପ ସମୟେ,
ପଢନ୍ତି ଶୁଣନ୍ତି ଯାହା ବାରେକ ମାତର,
ରଖନ୍ତି ତାହାକୁ ହେତୁ ନୋହେ ତା ବିସ୍ମୃତ,
ଦେଖି ବାଳକର ଏହି ଅଚିନ୍ତ୍ୟ ପ୍ରତିଭା,
ଭାବୁଥିଲେ ଲୋକେ, ସତେ ସ୍ମୃତିଦେବୀ ଅବା
ଆବିର୍ଭୂତ ଧରାଧାମେ ପୁରୁଷ ରୂପରେ ।

ଅନନ୍ତର ରାଜା ପିତେ ଡକାଇ ବିକ୍ରମେ
ବୋଇଲେ, ହେ ବତ୍ସ, ତୁମ୍ଭେ ହୋଇଅଛ ଏବେ
ସର୍ବାଂଶରେ ଉପଯୁକ୍ତ, ଏଣୁ ମୋ ବାସନା,
ସମର୍ପିବି ତବ କରେ ମାଳବ ପ୍ରଦେଶ ;
ମହାକର୍ତ୍ତବ୍ୟର ଭାର ବହି ଏବେ ଶିରେ
କର ପ୍ରଜାପୁଞ୍ଜେ ଧର୍ମେ ଶାସନ ପାଳନ ।
ଶୁଣି କିନ୍ତୁ ରାଜନୀତି ଅବହିତ ମନେ,
ନୁହେ ବ୍ୟକ୍ତିଗତ, ବାବୁ, ନୃପତି ଜୀବନ,

ତାହା ସାଧାରଣ, ରାଜା ପ୍ରଜାର ରକ୍ଷକ ;
ରାଜ୍ୟରୂପ ମହାଗୃହେ ପ୍ରଜା ପରିବାର,
ରାଜା ମୁଖ୍ୟ ଗୃହକର୍ତ୍ତା କୁଟୁମ୍ବ-ପାଳକ ।
ପ୍ରଜାପାଳ ସତ୍ୟ-ନ୍ୟାୟ-ଧର୍ମ-ଅବତାର,
ଆଚରି ସେ ସାମ୍ୟନୀତି କରିବ ଶାସନ,
ବିଚାରି ତାହାର ଜାତି-ଧର୍ମ-ଆତ୍ମ-ପର-
ବିଭେଦରହିତ । ଶାନ୍ତ, ଶିଷ୍ଟ, ନୀତିମାନ,
ଜିତେନ୍ଦ୍ରିୟ, ମିଷ୍ଟଭାଷୀ, ଧାର୍ମିକ, ଦୟାଳୁ
ଯେ ନୃପ, ସେ ପ୍ରକୃତିର ମହାର୍ଘ ଭୂଷଣ ;
ସର୍ବଲୋକନନ୍ଦାମକ ଅଟେ ରାଜନୀତି,
ମାତ୍ର ତାହା ହେଲେ ମୃଦୁ, କରନ୍ତି ପ୍ରଜାଏ
ଅତିକ୍ରମ, ତୀକ୍ଷ୍ଣ ଥିଲେ ହୁଅନ୍ତି ସନ୍ତ୍ରସ୍ତ,
ଅତଃ ତାହା ନାତି-ଉଷ୍ଣ, ବା ନାତି-ଶୀତଳ
ହେବାର ଉଚିତ, ଯଥା ମଳୟ ମାରୁତ ।
କର୍ମମୟ ଏ ଜୀବନ, କର୍ମହିଁ ଜୀବନ,
କର୍ମବିମୁଖତା-ମୃତ୍ୟୁ, ପ୍ରଜାଦର୍ଶ ରାଜା,
ଦେଖି ତାଙ୍କୁ କର୍ମରତ, କର୍ମୀ ହେବେ ପ୍ରଜା;
ଦୈବନିର୍ଭରତା ଖାଲି ଆଳସ୍ୟ ଲକ୍ଷଣ,
କରେ ସିନା କାର୍ଯ୍ୟ ପ୍ରାଣୀ ଜୀବନ ଉପରେ
ପୌରୁଷ, ପୌରୁଷ ସଦା ବାଞ୍ଛିନ୍ତି ଦେବତା ।
ହେବେ ନାହିଁ ଆଦ୍ର ନୃପ ଗୃହ ଚୁକାରିଗିରେ,

ନାହିଁ ଶତ୍ରୁ ମାନବର ସ୍ତାବକ ସମାନ,
ପଶା, ବେଶ୍ୟା, ମଦ୍ୟ ପୁଣି ମୃଗୟାବ୍ୟସନ
ତେଜିବେ ସର୍ବଥା ରାଜା, ନୁହଇ ଉଚିତ
ଭୃତ୍ୟ ସହ ପରିହାସ, କିମ୍ବା କାହା ପ୍ରତି
ବିଶ୍ୱାସ ସ୍ଥାପନ ଅତି, ରଖିବେ ନୃମଣି
ସ୍ୱମନ୍ତ୍ରଣା ଗୁପ୍ତ, ରାଜକାର୍ଯ୍ୟ ପ୍ରତି ଅଂଶ
କରିବେ ପର୍ଯ୍ୟବେକ୍ଷଣ ତନ୍ନ ତନ୍ନ ଭାବେ ।
ଧର୍ମ, ମିତ୍ର, ମନ୍ତ୍ରୀ, ରାଷ୍ଟ୍ର, କୋଷ, ଦୁର୍ଗ, ବଳ,
ରାଜ୍ୟର ଏ ସପ୍ତ ଅଙ୍ଗ, ହୁଏ ଯଦି କେହି
ପ୍ରତିକୂଳ ଯେ କୌଣସି ଏକ ଅଙ୍ଗ ପ୍ରତି,
ହେଲେ ସୁଦ୍ଧା ଗୁରୁ ସ୍ନେହୁ ବିପକ୍ଷେ ଗଣିତ ।
ରାଜା ପ୍ରଜାଶରୀରର ନିସର୍ଗ-କଞ୍ଚୁକ,
ହରିବେ ସେ ନିଜ କଷ୍ଟେ ପ୍ରକୃତି କଷଣ,
ବିଳାସ ଆଶ୍ରୟୀ ରାଜା ଭକ୍ଷ୍ୟ ବିଳାସର ;
ଅନ୍ଧ ଖଞ୍ଜ ଅକ୍ଷମାଦି ଅନାଥପାଳନ,
ଯଥାକାଳେ ଭୃତ୍ୟବର୍ଗେ ବର୍ତ୍ତନପ୍ରଦାନ,
ଅଧୀନସ୍ଥ କର୍ମଚାରୀ ପ୍ରତି ସଦ୍‌ବେଭାର,
କୃଷି, ଶିଳ୍ପ ଶିକ୍ଷା, ଧର୍ମ, ବାଣିଜ୍ୟ ଉନ୍ନତି
ରାଜାର କର୍ତ୍ତବ୍ୟ ମୁଖ୍ୟ ; ଦୋଷେ ଦଣ୍ଡ ପ୍ରାପ୍ତ
ଅଛି ଗୁଣେ ପୁରସ୍କାର, ବିଶିଷ୍ଟ ଗୁଣିକେ
ଲଗାଇବେ କର୍ମେ ସଏ କରି ବୁଦ୍ଧିଦାନ ।

ମନ ସୁଉର୍ବର ଭୂମି କାମନା-ତରୁର,
ଉଠିବ ତହିଁରେ ସଦା ମେଳା ମେଳା ହୋଇ
ସୁପାଦପ କୁପାଦପ ଉଭୟ ଅଙ୍କୁର,
ମାତ୍ର ବତ୍ସ, ବାଛି ତାହା ତୁମ୍ଭେ, "କୁ" ଉପାଡ଼ି
"ସୁ" ପାଳିବ ଯତ୍ନେ, ଯଥା ବିଜ୍ଞ କୃଷୀବଳ
ଉପାଡ଼ି ବାଲୁଙ୍ଗା କ୍ଷେତ୍ରୁଁ ରଖେ ଧାନ ଗଛ ।
ଚଳାଇବ ରାଜକାର୍ଯ୍ୟ ସଚିବ ସହାୟେ,
ମାତ୍ର ତବ ଅନ୍ତରାତ୍ମା-ସୁମନ୍ତ୍ରୀ ମନ୍ତ୍ରଣା
ଶୁଣିବ ସର୍ବାଗ୍ରେ, ପଛେ ଆନ ଅମାତ୍ୟର ।

ମାତାମହ, ଶିରୋଧାର୍ଯ୍ୟ ତବ ଆଜ୍ଞା ମୋର—
କହିଲେ ବିକ୍ରମାଦିତ୍ୟ,—ଆଉର ହେ ଦେବ,
ସୁପାବନ ଉପଦେଶ କୈବଲ୍ୟ-କଣିକା,
ଗ୍ରହିଲି ତା' ଆଶୀର୍ବାଦ ଜ୍ଞାନେ, ଯେବା ହେଉ
ପ୍ରାଣସ୍ପର୍ଶୀ କୃତଜ୍ଞତା ଏ ନୀଚ ହୃଦୟର,
କେବଳ ଏତିକି ନୁହେ, ସେ ଉପଦେଶର
ନୁହେ ଯୋଗ୍ୟ ପ୍ରତିଦାନ କୃତଜ୍ଞତା ଖାଲି,
ପ୍ରାଣଠାରୁ ମୂଲ୍ୟବାନ ଆତ୍ମା ଯଦି କିଛି,
ନୁହନ୍ତା ତେବେ ସେ ସୁଦ୍ଧା କିଞ୍ଚିତ ସମାନ,
ଯାହାହେଉ ଅର୍ପୁଅଛି ସାନନ୍ଦେ ନିଜକୁ,
ଏହା ବିନା ଯୋଗ୍ୟ ଦେୟ ପାଉ ନାହିଁ ଖୋଜି ।

ଅଲଙ୍ଘ୍ୟ ଆଦେଶ ତବ, ଦେବାଦେଶ ପ୍ରାୟ,
ମାତ୍ର ଦେବ, ଅଛନ୍ତି ମୋ' ଜ୍ୟେଷ୍ଠ ଭଗ୍ନୀପତି,
ଜ୍ୟେଷ୍ଠ ସତ୍ତ୍ୱେ କନିଷ୍ଠର କର୍ତ୍ତୃତ୍ୱ ଗ୍ରହଣ
ଧର୍ମବିଗର୍ହିତ, ଅତଃ ହୁଅନ୍ତୁ ସେ ରାଜା,
ରହିବି ମୁଁ ମନ୍ତ୍ରିପଣେ ତାହାଙ୍କ ସକାଶେ ।
ଶୁଣି ଏ ଭାରତୀ ରାଜପାରିଷଦ ଦଳ
ଭାଷିଲେ ବିସ୍ମୟାନନ୍ଦ-ଆଲିଙ୍ଗିତ ସ୍ୱରେ—
କୁମାର, ଉତ୍ତୀର୍ଣ୍ଣ ତୁମ୍ଭେ ଆଜ କି ଅଦ୍ଭୁତ
ଅଗ୍ନିପରୀକ୍ଷାରୁ, ଧନ୍ୟ ହୃଦୟ ତୁମର,
ମହାପୁରୁଷ ଜୀବନେ ଆସଇ ଏପରି
ସୁକଠୋର ପରୀକ୍ଷାର ଶୁଭ ସୁପ୍ରଭାତ ।
ପରମ ଧାର୍ମିକ ତୁମ୍ଭେ, ଧର୍ମରକ୍ଷାପାଇଁ
ରାଜ୍ୟଭୋଗ ତ୍ୟାଗ ମହାପୁରୁଷର କର୍ମ,—
ପୁରୁଷ ମାତ୍ରର ନୁହେଁ, ଯୁକ୍ତିର ବିକଳେ
ପ୍ରୀତ, ମାତ୍ର ତାହା ପୁଣ୍ୟ କେଶରୀ ପକ୍ଷରେ,
ତବ ଏ ବିମଳ କୀର୍ତ୍ତି, ପୂତ ସୁଧାମୟ,
ଭବିଷ୍ୟ ପୁରାଣ-ବକ୍ଷେ ଶୋଭିବ ଉଜ୍ଜ୍ୱଳେ,
ଯେସନ ସୌଭ୍ରାତ୍ରବର ଭରତ ଆଖ୍ୟାନ
ଶୋଭେ ରାମାୟଣ-ବକ୍ଷେ ଅମର-ଅକ୍ଷରେ ।
ଲଭି ପରିତୃପ୍ତି ସର୍ବେ ଦୌହିତ୍ର ବଚନେ
ପ୍ରଶଂସି ବିଶେଷେ ତାଙ୍କୁ, ଭଗ୍ନୀପତି କରେ

ମାଳବ ଶାସନ ଭାର କଲେ ସମର୍ପଣ,
ରହିଲେ ବିକ୍ରମାଦିତ୍ୟ ତାଙ୍କ ମନ୍ତ୍ରୀ ପଦେ ।

ମାଳବର ରାଜଧାନୀ ହେଲା ଉଜ୍ଜୟିନୀ,
ବ୍ୟାପିଲା ସେ ତ୍ରୟୋଦଶ କୋଶ ପରିଧେ, ନବ-
କୋଶ ପ୍ରସ୍ଥେ, ଚଳାଇଲେ ରାଜ୍ୟ-ରଥବରେ
ଭର୍ତ୍ତୃହରି, ସୁସାରଥି ପ୍ରାୟ, ଯୋଡି ତହିଁ
ସୁମନ୍ତ୍ରୀ ବିକ୍ରମଙ୍କର ସୁମନ୍ତ୍ରଣା—ହୟ ।
ଲଭିଲା ଶ୍ରୀବୃଦ୍ଧି ରାଜ୍ୟ ଶାସନେ ପାଳନେ,
ସତ୍ୟ, ଧର୍ମ, ନ୍ୟାୟ, ନିଷ୍ଠା ଆଶ୍ରିଲେ ପ୍ରଜାଏ,
ଦୁର୍ଜନର ଅତ୍ୟାଚାର, ଚୌର୍ଯ୍ୟ ଉପଦ୍ରବ
ହେଲା ତିରୋହିତ, ହର୍ଷେ ହସିଲା ନଗରୀ,
ଷୋଳକଳା ସୁଖ ଶାନ୍ତି ଖେଳିଲା ଚୌଦିଗେ ।

ଥିଲେ ଭର୍ତ୍ତୃହରିଙ୍କର ଯୁଗଳ ମହିଷୀ
ଅନଙ୍ଗା ପିଙ୍ଗଳାନାମ୍ନୀ, ପରମାସୁନ୍ଦରୀ,
ଦ୍ୱିତୀୟା ସରଳା, ସାଧ୍ୱୀ, ପୁଣ୍ୟ-ଦୟାବତୀ ;
ପ୍ରଥମା ତା' ବିପରୀତ—ମୁଖରା, ଦୁଃଶୀଳା,
ରୌଦ୍ର ଚନ୍ଦ୍ରିକାର ଏହା ବିରୋଧ ମିଳନ ।
ମିଶିଥିଲା ଦେବୀ ସଙ୍ଗେ ଦୁର୍ମୁଖା ଦାନବୀ,
ଅଥବା ଅବିଦ୍ୟା ବିଦ୍ୟା ସହ, କେଉଁ ପାପେ

ଅବା ଶାପେ, କେ କହିବ ତାହା, ବହୁଥିଲା
ଏକ ହୃଦେ ନିର୍ମଳର ମନ୍ଦାକିନୀଧାର,
ଆନ ହୃଦେ ଦାଉଦାଉ ଶ୍ମଶାନାଗ୍ନି ଶିଖା ;
ଏକ ମଳୟଜ, ଆନ କଣ୍ଟୁ ହୃଦଲେପ,
ସୁରଭି ଗୋଲାପ ଏକ, ଆନ ଓଲ ଫୁଲ,
ଏକ ହୃଦ ଅନାବିଳ ପ୍ରେମ- ପରାବାର,
ଆନ କ୍ରୋଧ ବିଦ୍ୱେଷର ପଙ୍କିଳ ପଲ୍ୱଳ ;
ଏମନ୍ତ କି, ଏକ ହୃଦ ପବିତ୍ର ସ୍ୱରଗ,
ଆନ ପାପ-କୀଟ-ଦୁଷ୍ଟ ମହାକୁମ୍ଭୀପାକ ;
ସୁଖରୁ ତରଳ-ଚୂଡ଼େ ଶୋଭେ ଏକ ଶିର,
ଲଗନାନ୍ତ ଅଭିମାନ ଅଭଗ୍ନରେ ଆନ ।
ଧୂର୍ତ୍ତା-ଶିରୋମଣିବରା ଅନଙ୍ଗା ରୂପସୀ,
ସ୍ୱାଧୀନ-ଭର୍ତ୍ତୃକା ହେଲା କପଟ କୌଶଳେ,
ନାରୀ ଫାନ୍ଦେ ବନ୍ଦୀ ହେଲେ ରାଜା ଭର୍ତ୍ତୃହରି,
ଅଳି ଯଥା ଊର୍ଣ୍ଣନାଭ-ଜାଲେ, କ୍ଷମ ଯେହ୍ନ
ଲୌହ-ଦୃଢ଼-କାଷ୍ଠ ଭେଦେ, ମାତ୍ର ପାରେ ନାହିଁ
ଛିନ୍ନ କରି ସୂକ୍ଷ୍ମ ସୂତ୍ର ସେ କ୍ଷୁଦ୍ର କୀଟର ।

ଭର୍ତ୍ତୃହରି ସମ ରାଜା, ଶାସ୍ତ୍ରଜ୍ଞ, ଧାର୍ମିକ,
ରହିଲେ ରମଣୀବଶେ ଶୁଦ୍ଧାନ୍ତେ ସର୍ବଦା,
କେଡ଼େ ଆକର୍ଷଣ ଯନ୍ତ୍ର ରମଣୀ ମହୀରେ !

"କାମିନୀ" ତ୍ର୍ୟକ୍ଷର ମନ୍ତ୍ର ବଶୀକରଣର ;
ଅଛି ଏ ଜଗତେ ଯେତେ ଦ୍ରବ୍ୟ ଲୋଭନୀୟ,
ଚୂଡ଼ାନ୍ତ ତାହାର ନିଶ୍ଚେ କାମିନୀ, କାଞ୍ଚନ ।
ପବିତ୍ର ଦାମ୍ପତ୍ୟ ପ୍ରୀତି, ମାତ୍ର ହେଲେ ତାହା
ସ୍ୱାଭଲୀତା-ବିସର୍ଜିତ, ହୁଏ ଅଭିହିତ
କଳଙ୍କ-କାଳିମାମୟ "କାମୁକତା" ନାମେ ;
ଅବନତି ପେଚୁଣୀର କାମୁକା ରମଣୀ
ଅମୋଘ ବ୍ରହ୍ମାସ୍ତ୍ର, ଜାଣେ ସେ ତାହା ବଳରେ ।
ହେଉନ୍ତୁ ନାରୀଏ ପଛେ ସ୍ୱଭାବେ ଅବଳା,
ପ୍ରଭାବେ ପ୍ରବଳା ମାତ୍ର, ସମର୍ଥ ସେମାନେ
ଆଣିବାକୁ ଝିଙ୍କି ବଳେ ଏ ମର୍ତ୍ତ୍ୟ-ନିରୟେ
ଆନନ୍ଦ-ଅମୃତମୟ ଧାମୁ ମୁନିମନେ,
ଯୋଗିଙ୍କର ଯୋଗ-ଯଜ୍ଞ, ସଂଯମି-ସଂଯମ
ପାରନ୍ତି ସେ ପଣ୍ଡ କରି ଭ୍ରୂଭଙ୍ଗ ମାତ୍ରକେ ।
ବନ୍ଦୀ ହେଲେ ଭର୍ତ୍ତୃହରି ଅନ୍ତଃପୁର-ଟୋପେ
ଗଜମୂର୍ଖ ପ୍ରାୟ, ଆଉ ନ ହେଲେ ବାହାର,
ସଂଘଟିଲା ରାଜକାର୍ଯ୍ୟେ ଏଣେ ବିଶୃଙ୍ଖଳା,
ହେଲେ ମନ୍ତ୍ରୀ ପାରିଷଦେ ବିଶେଷ ଚିନ୍ତିତ ।

ଏହିରୂପେ କେତେକାଳ ହୁଅନ୍ତେ ଅତୀତ,
ବିଜେ ହେଲେ ବିକ୍ରମ ବିଜେ ରାଜ ସିଂହାସନେ,

କିନ୍ତୁ ଇତସ୍ତତଃମନା, ଧୃତ ପକ୍ଷୀ ପ୍ରାୟ ;
ନିରେଖି ଏସନ ଭାବ ଭର୍ତ୍ତୃହରିଙ୍କର
ସଚିବ ବିକ୍ରମାଦିତ୍ୟ କହିଲେ ସମ୍ବୋଧି—
ମହାରାଜ, ସର୍ବଶାସ୍ତ୍ର-ଅର୍ଥବେତ୍ତା ତୁମ୍ଭ,
ପରମ ପଣ୍ଡିତ, ଜଣା ମଧ୍ୟ ନୃପତିର
କର୍ତ୍ତବ୍ୟଗୁରୁତା, ମାତ୍ର ଜାଣି ଶୁଣି ପୁଣ
କରନ୍ତି ଯେ ବ୍ୟବହାର, ଆଶ୍ଚର୍ଯ୍ୟ ତା ଅତି ।
ସର୍ବନାଶ ହେତୁ ନିଶ୍ଚେ ରାଜାର ସ୍ତ୍ରୈଣତା,
ଯେ ରାଜା ଅବଳାବଶ, ଅବଳା ସେ, ତାର
ଯୋଗ୍ୟ ସିଂହାସନ-ନାରୀହୃଦ, ରମଣୀର
ବାସାଞ୍ଚଳ ତାର ପ୍ରିୟ ରାଜପରିଚ୍ଛଦ,
ରାଜକାର୍ଯ୍ୟ ପାଶବିକ ପ୍ରୀତି, ପଦ ତାର
"ରମଣୀ-ରଞ୍ଜନ," ନୁହେ "ପ୍ରକୃତି-ରଞ୍ଜନ ।"
ସ୍ତ୍ରୈଣତାର ଶେଷ ଫଳ ମାତ୍ର ବିଷମୟ,
ହୋଇଛି ତା ସପ୍ରମାଣ ମହୋଜ୍ଜ୍ୱଳଭାବେ
ପୁଣ୍ୟଶ୍ଳୋକ ଦଶରଥ ରାଜାଙ୍କ ଜୀବନେ,
ଘଟିଲା ତାଙ୍କର ଯଶୋନାଶ, ପୁତ୍ରଶୋକ,
ଅବଶେଷେ ପ୍ରାଣନାଶ ଘୋର ଅନୁତାପେ ।
ନୃପତିର ଅନୁଷ୍ଠେୟ ସପ୍ତବିଧ ବ୍ରତ—
କରନ୍ତି ପୃଥ୍ୱୀ ପୂର୍ଣ୍ଣ ଇନ୍ଦ୍ର ଯଥା ଜଳେ
ବର୍ଷାକାଳେ, ତଥା ରାଜା ନ୍ୟାୟାର୍ଜ୍ଜିତ ଧନେ

କରିବେ ଭଣ୍ଡାର ପୂର୍ଣ୍ଣ, ଇନ୍ଦ୍ରବତ ଏହା ;
ରସ ରଖି ରବି, ରସ ଶୋଷନ୍ତି ଧରାରୁ,
ସେହିପରି ରାଜା କର କରିବେ ଗ୍ରହଣ,
ଏହା ସୂର୍ଯ୍ୟବ୍ରତ ; ତହିଁପରେ ବାୟୁବତ,
ବ୍ୟାପ୍ତ ସର୍ବଭୂତେ ବାତ, ବାହ୍ୟେ ଅଭ୍ୟନ୍ତରେ,
ପ୍ରକୃତିପୁଞ୍ଜଙ୍କ ପକ୍ଷେ ରାଜାର ଏ ମତି
ପ୍ରଚାରି ସର୍ବଥା ; ହେବେ ଯମ ତୁଲ୍ୟ ଭୂପ
ବିଚାରେ ଅପକ୍ଷପାତୀ, ଏ ଶମନବ୍ରତ ;
ବନ୍ଧି କରି ପାପୀବାରେ ପାଶଅସ୍ତ୍ରେ ପାଶୀ
ରଖେ ଯଥା, ତଥା ନୃପ ବୈରି ଖଣ୍ଡଗଣେ
ରଖିବେ ଶାସନ କରି, ବରୁଣ ବ୍ରତ ଏ ;
ଶଶଧର ସ୍ନିଗ୍ଧକର ବିତରନ୍ତି ପ୍ରାୟ
ସର୍ବଗୁଣେ ବିଭୂଷିତ ହୋଇ ନରମଣି
କରିବେ ସକଳ ଜନେ ସଦା ଆହ୍ଲାଦିତ,
ଧର୍ମଶାସ୍ତ୍ରେ ଉକ୍ତ ଏହା ଚନ୍ଦ୍ରବ୍ରତ ନାମେ ;
ସର୍ବଂସହା ଧରା ପାଳେ ସର୍ବେ ସମଭାବେ,
ତେସନ ନୃପତି ସହି ସମସ୍ତ ଅର୍ଦ୍ଦନ
ସକଳରି, ସମ ଭାବେ କରିବେ ପାଳନ,
ଏହା ପୃଥ୍ୱୀବ୍ରତ, ଏହି ସପ୍ତ ମହାବ୍ରତ
ପାଳନ୍ତି ଯେ ନରବର କାୟ ବାକ୍ୟ ମନେ,
ତାଙ୍କ ଇହ ପରକାଳ ସୁଖେ ସମୁଜ୍ଜ୍ୱଳ ।

ସର୍ବଲୋକ ତୁଚ୍ଛୀକୃତ ସ୍ତ୍ରୈଣ ପ୍ରଜାପାଳ,
ରାଏ, ନୋହି ବହିର୍ଦର୍ଶୀ, ଅନ୍ତର୍ଦୃଷ୍ଟିବଳେ
ଦେଖନ୍ତୁ, ରମଣୀ ଦେହ ମୂଳ ଉପାଦାନ
କି ଗାଉସ୍ତ; ଦୁର୍ଗନ୍ଧିତ ରକ୍ତ ମାଂସ ମେଦେ
ଅଛି କି ସୌନ୍ଦର୍ଯ୍ୟ ? ଅତଃ ହୁଅନ୍ତୁ ମଣିମା
ଅବହିତ । ମହୀନାଥ ମୋର ଏ ବଚନ
ନୁହେ ଛାମୁପ୍ରତି ଶିକ୍ଷା—ସ୍ମରଣ କେବଳ,
ବୋଲିବେ ଅବା, "ଚତଉ ଖାଇବା ଲୋକର
ବନ୍ଧ ଗଣନାରେ ଅଛି କେଉଁ ପ୍ରୟୋଜନ ?"
ମାତ୍ର ଯେ ପିଠଉ ମୂଳପିଣ୍ଡ ଚତଉର,
ହେଲେ ସେ ବିକୃତ, ଆଉ କି ସୁଖ ପିଠାରେ ?
ନିବେଦିବ ନିର୍ଭୟରେ ସର୍ବବିଧ ମତ
ନୃପତି ଛାମୁରେ ମନ୍ତ୍ରୀ, ମନ୍ତ୍ରୀଧର୍ମ ଏହା,
ହୀନ ଯେ କର୍ତ୍ତବ୍ୟବୁଦ୍ଧି ନୈତିକ ସାହସେ,
"ଯେ ଆଜ୍ଞା" "ଯେ ଆଜ୍ଞା" ସଦା ଇଷ୍ଟ ମନ୍ତ୍ର ଯାର,
ନୁହେ ସେ ସଚିବ—ଅଟେ ସ୍ତାବକପୁଙ୍ଗବ,
ପ୍ରତିଧ୍ୱନି ଜଡ଼ଯନ୍ତ୍ର ତାହା କଳେବର;
ଏଣୁ କଲି ଜଣାମଣା ଛାମୁରେ ସକଳ,
ଆଚରନ୍ତୁ ଯାହା ଶ୍ରେୟ, ବିଚାରି ତାହାହିଁ ।

ଶୁଣି ଏ ସୁମତି ବାଣୀ ରାଜା ଭର୍ତ୍ତୃହରି,
ନ କହିଲେ କିଛି, ମାତ୍ର ବିକ୍ରମଙ୍କ ପ୍ରତି

ବହିଲେ ଅନ୍ତରେ କ୍ରୋଧ, ଯଥା ବହ୍ନିଶିଳା
ବାହାରେ ଶୀତଳ, କିନ୍ତୁ ପ୍ରଚ୍ଛନ୍ନେ ଗରଭେ
ଧରେ ଉଷ୍ଣ ଅଗ୍ନିରେଣୁ । ଅଦୂରଦର୍ଶିର
ବଡ଼ କଷ୍ଟ କହୁ ସିନା ତଦୀୟ କାର୍ଯ୍ୟର
ବିରୁଦ୍ଧ ସମାଲୋଚନା, ଅମୃତ ଔଷଧି
ମୁମୂର୍ଷୁ ପକ୍ଷରେ ତିକ୍ତ, କରେ କି ଆଦର
ମତ୍ସ୍ୟପ୍ରିୟ ଆଖୁଭୁକ୍ ମଧୁର ଶର୍କରା ?
ହିତ ଉପଦେଶ ବୃଥା କାମୁକ ନିକଟେ,
ହେଉ ପଛେ ମହୋତ୍କୃଷ୍ଟ ବୀଜ, ପଡ଼ିଲେ ସେ
ଊଷର ଭୂମିରେ, ଲଭ କେଉଁ ଫଳ ତହିଁ ?
ପୂର୍ବ ଭ୍ରାତୃପ୍ରୀତି ଗଲେ ପ୍ରଦାନ ଗଲଥା,
ଆଣିଲା ଆମନ୍ତି କୋପ, ଈର୍ଷା, ଅହମିକା,
ତୁଟି ଗଲା ମୁହୂର୍ତ୍ତକେ ଅଜନ୍ମ-ମମତା ।
ଏଣେ ଏ ଅପ୍ରିୟବାର୍ତ୍ତା ପାଇ ଯଥାକାଳେ
ସ୍ପର୍ଶିଲେ ଅଜଙ୍ଗା କର୍ଣ୍ଣ, ଜଳିଲା ସେ କ୍ରୋଧେ,
ହେଲା ତାର ହିଂସା-ସ୍ରୋତ ପ୍ରଖରେ ଧାବିତ
ସିନ୍ଧୁମୁଖୀ ନଦୀ ପ୍ରାୟ, ବନ୍ଦମଙ୍କ ପ୍ରତି ।
ସ୍ୱଭାବେ ନାଗୁଣୀ ଗଢ଼ା କ୍ରୋଧ ଉପାଦାନେ,
ଗୁଳିଲେ ତାହାକୁ ପୁଣି ମନ୍ତ୍ରରେ ଫ[illegible]
ଅଛି କି ନିସ୍ତାର ଆଉ, ଦଂଶି ସେ ଗୁଳକେ,
ଉପଯୁକ୍ତ ପ୍ରତିଶୋଧ ସାଧେ ତତକ୍ଷଣେ ।

ସେ ଧନୁ ଦୁଃଶୀଳା ରତ ନାନା ଆକର୍ଷଣେ
ବିକ୍ରମାଦିତ୍ୟଙ୍କ ପ୍ରତି ଭର୍ତ୍ତୃହରିଙ୍କର
ମନୋଭଙ୍ଗ ଅର୍ଥେ, ଫଳେ ଘଟାଇଲା ତାହା ;
ସତ୍କାର୍ଯ୍ୟ ସାଧନ ବିନା ଦୁଃସାଧ୍ୟ ମହୀରେ,
ବହୁ ତହିଁ ସ୍ୱାସ୍ଥ୍ୟବନ, ମାତ୍ର ଦୁଷ୍କାର୍ଯ୍ୟର
ଦ୍ୱାର ମୁକ୍ତ, ଅବହେଳେ ହୁଏ ତାହା ସାଧ୍ୟ ।
କି ଅସାଧ୍ୟ କୁଟିଳାର, ପାରେ ସେ ଉତ୍ପାଦ
ବିନା ଅନଳରେ ଧୂମ କୂଟ ବୁଦ୍ଧିବଳେ,
ପୁଣି ସେ ବିନା ସୂତାରେ କର ପାରେ ହାଠ ;
ତାହାର କୁପରାମର୍ଶେ ହୋଇ ଛନ୍ନମତ
ମାଳବେଶ ଭର୍ତ୍ତୃହରି, ସଭା ମଧ୍ୟେ ଦିନେ
କହିଲେ ଅନୁଜେ, ଅତି କଠୋର ଭାଷାରେ-
ହେ ବିକ୍ରମାଦିତ୍ୟ, ତୁମ୍ଭେ ମିତ୍ରରୂପୀ ଅରି,
ନୁହଇ ଉଚିତ ତବ ମୁଖାବଲୋକନ,
ଅତଃ ଏହିକ୍ଷଣି ହୁଅ ଏ ରାଜ୍ୟ ଅନ୍ତର ।
ଯେ ଆଜ୍ଞା ମହିମା, ମୁହିଁ ମିତ୍ରରୂପୀ ଅରି,
ଭାଷିଲେ ବିକ୍ରମାଦିତ୍ୟ କାମାନ୍ଧ ଅଗ୍ରଜେ,
ମୁହିଁ ମିତ୍ରରୂପୀ ଅରି, ହେଉଛୁ ବିଦାୟ,
ଯେବେନୁ [illegible]ଣାମ ତେବେ, ବୁଝିବେ ପଶ୍ଚାତେ
ସବୁ, ଅଧାର୍ମିକ ପାଶେ ଧର୍ମ ଉପଦେଶ
ଧର୍ମ ପ୍ରତି ବିଦ୍ରୂପୋକ୍ତି ଭଳି, ସେଥିପାଇଁ

ଅନୁତପ୍ତ ମୁହିଁ, ଗଜମୁକ୍ତାର ଗୌରବ
ବୁଝିବ କି ଭୀଲ—ଗୁଞ୍ଜା-ଗରଗଡ଼-ପ୍ରିୟ ।
କାହାକୁ ଶୀତଳ ଭଲ ନ ଲାଗେ ସଲିଳ,
ଶିବାଦଂଷ୍ଟ୍ର ରୋଗୀ ପକ୍ଷେ ମାତ୍ର ତା'ର ବ୍ୟତ୍ୟୟ, *
ଦେଖିଲେ ସେ ଜଳ, ମଣେ ଅନଳ ସମାନ,
ଫଳେ ହତଭାଗ୍ୟ କରେ ମରଣେ ବରଣ ।
ଏହା ଭାଷି ବନମାର୍କ ସଭାମଧ୍ୟୁ ଉଠି
ଗମିଲେ ମାଳବ ତେଜି ଅନ୍ୟ ରାଜ୍ୟ ମୁଖେ ।



* ଶିଆଳକାମୁଡ଼ା ରୋଗୀ ଜଳ ଦେଖିଲେ ଭୟରେ ଚିତ୍କାର କରେ

## ଚତୁର୍ଥ ସର୍ଗ ।



ରାଜାଙ୍କ ଏ ଅବିମୃଷ୍ୟକାରିତା ଦର୍ଶନେ
ମନ୍ତ୍ରୀ ପାରିଷଦ ପୁଣି ସକଳ ପ୍ରଜାଏ
ଭଜିଲେ ବିଷାଦ ଘୋର, ରଟିଲା ଅଖ୍ୟାତି
କୋଟିମୁଖେ ଚତୁର୍ଦ୍ଦିଗେ ଭର୍ତ୍ତୃହରିଙ୍କର,
ହେଲା ଏଣେ ରାଜକାର୍ଯ୍ୟ ଅତି ବିଶୃଙ୍ଖଳ
ବିକ୍ରମ ଅଭାବେ, ଯଥା ଛିନ୍ନସୂତ୍ର ହାର,
ରାଜା ସତ୍ତ୍ୱେ ହେଲା ରାଜ୍ୟ ଅରାଜକ ପ୍ରାୟ,
ନାନାବିଧ ଅମଙ୍ଗଳ ଘଟିଲା ଆବର,
ଉଲ୍କାପାତ, ଭୂମିକମ୍ପ ଆଦି, ଦେଖି ଏହା
ହେଲେ ରାଏ ବିକୃତିକ ଏକାନ୍ତ ଉନ୍ମନା ।
ଦିନେ କ୍ଷିପ୍ତ ମନନ ଶାନ୍ତିକରଣାଭିପ୍ରାୟେ
ଗଲେ ବନେ ମାଳବେଶ, ଦେଖିଲେ ସେଠାରେ
ରହିଛି ଉନ୍ମୁକ୍ତ ସଦା ପ୍ରକୃତ-ପ୍ରଣୀତ
ଅଯତ୍ନ ଶୋଭାର ଗ୍ରନ୍ଥ, ବିଶାଳ, ଚଞ୍ଚଳ,
ବୃକ୍ଷେ ବସି ପକ୍ଷିଗଣ, ରତ ଆବୃତ୍ତିରେ
ମୃଦୁସ୍ୱରେ ଜଗତର ଜୀବନ୍ତ କବିତା,

ସୁକଣ୍ଠ -ସେତାର-ତାର ଝଙ୍କାରେ ମଧୁପ
ଉଡ଼ ଉଡ଼, ଫୁଲକୁଳ ନର୍ତ୍ତକୀ ପରାଏ
ଆନ୍ଦୋଳି ମୃଦୁଳ ବାତେ ପ୍ରକାଶନ୍ତ ନାନ
ଅଙ୍ଗଭଙ୍ଗୀ ବିସ୍ତାରିଣ ନୀରବ ସୁହାସ ।
ବିଚରନ୍ତି ମୃଗଯୂଥ, ଶୋଭେ କାହା ଶିରେ
ଦୀର୍ଘ ଝଟାଳିଆ ଶୃଙ୍ଗ, ବିଟପପ୍ରତିମ,
ରତ କେହି ଶାବକର ଶରୀର ଲେହନେ
ମଧୁର ବାତ୍ସଲ୍ୟବଶେ, କେହି ଗେଲବଶେ
ଆଚରେ କୃତ୍ରିମ ରଣ ସମକକ୍ଷ ସହ,
ପଳାଇଲେ ହେରି ସର୍ବେ ଭର୍ତ୍ତୃହରି ନୃପେ
ଇତସ୍ତତଃ, ଚୋର ଯଥା ପ୍ରହରୀ ଦର୍ଶନେ,
ଚାହିଁ ଥରେ ଥରେ ଗ୍ରୀବା ଭଙ୍ଗି ପୃଷ୍ଠଦେଶେ
ସାଧ୍ୱସ ଉଦ୍‌ବେଗବ୍ୟଞ୍ଜୀ କାତର ଚାହାଣୀ ।
କାନନର କେଉଁ ଅଂଶ ହୋଇ ଡାଉକତ
ଗଜମୁକ୍ତା, ଗଜଶିର, ଗଜାସ୍ଥି କଙ୍କାଳେ,
ଦେଉଛି ଚହ୍ଲାଇ ସ୍ପଷ୍ଟ ନୀରବ ସଙ୍କେତେ
ହର୍ଯ୍ୟକ୍ଷପାରଧିସ୍ଥଳୀ ବୋଲି ସେ ନଜଙ୍କୁ ।
ଏରୂପେ ପ୍ରକୃତି-ଗ୍ରନ୍ଥ ପୃଷ୍ଠା ଲେଉଟାଇ
କ୍ରମେ କ୍ରମେ, ପଢ଼ି ତାହା ନସ୍ନନ ବଦନେ,
ହେଲେ ଅଗ୍ରସର ସବେ, ଯାଇ ଏକ ସ୍ଥାନେ
ଦେଖିଲେ ଆଶ୍ଚର୍ଯ୍ୟ ଦୃଶ୍ୟ, ବନ୍ୟ ନାରୀ ଏକ

ଯେନ ମୃତ ପତି କୋଳେ, ଅଗ୍ନିକୁଣ୍ଡେ ଝାସ
ଲଭିଲ ସହମରଣ—ଅମ୍ଳାନ ବଦନେ ।
ଅନନ୍ତର ଭର୍ତ୍ତୃହରି ବାହୁଡ଼ି ନଗରେ
ବିବରିଲେ ଦୃଷ୍ଟପୂର୍ବ ରମଣୀ-କରଣୀ
ନିଜ ପତ୍ନୀ ପାଶେ, କିନ୍ତୁ ଅନଙ୍ଗା ସେ କଥା
ଶୁଣି ନ ଶୁଣିଲା ପ୍ରାୟ ରହିଲା ନୀରବ ;
କହିଲା ପିଙ୍ଗଳା ତହୁଁ—ସତୀର ଜୀବନ
ନୁହେ ସତୀପାଇଁ, ତାହା ପତିପାଇଁ ସିନା,
ଅଛି ଯେଉଁ ରମଣୀର ଏତାଦୃଶ ଜ୍ଞାନ,
ସେହି ମାନ୍ୟା, ସେହି ଧନ୍ୟା, ସେହି ନାରୀଦେବୀ;
ତାହା'ର ସହଗମନ ଧର୍ମ ପ୍ରାକୃତିକ ।
ଥିଲେ ଉଭେ ପ୍ରକୃତରେ ପ୍ରେମିକ ପ୍ରେମିକା,
ପ୍ରେମେ ମିଶି ବେନି ପ୍ରାଣ ହୋଇଥିଲା ଏକ,
ବାସ୍ତବ ପ୍ରେମର ନାହିଁ ବିଚ୍ଛେଦ ଯନ୍ତ୍ରଣା,
ପ୍ରଦର୍ଶିଲେ ସେଥିର ସେ ସଜୀବ ପ୍ରମାଣ ।

ଆଉ ଦିନେ ନରମଣି ହେଲେ ବେଣ୍ଟ (*) ବିଜେ,
ସ୍ୱଭାବ ପରୀକ୍ଷା ଅର୍ଥେ ବେନି ଦିନତାର
ଏକାକୀ କାନନେ ରହି, ସଙ୍ଗୀ ବେଣ୍ଟକାରେ
କଲେ ଆଜ୍ଞା ଦାନ, ଯାଇ ସମସ୍ତେ ନଗରେ
କରିବ ଘୋଷଣା—"ରାଜା ବ୍ୟାଘ୍ରଦ୍ୱାରା ହତ ।"

---

* ପାରିଧି ।

ଶୁଣାନ୍ତେ ଦେହଳୀ ଧର ହୋଇଥିଲି ଟିଆ
ପିଙ୍ଗଳା, ଏକାଳେ ଦୂତ କରନ୍ତେ ପ୍ରକାଶ
ରାଜବଧ ବାର୍ତ୍ତା, ସ୍ତବ୍ଧ ହୋଇଗଲି ଭେକା—
ଆକସ୍ମିକ ମହାଶୋକ-ଅସହ୍ୟ ଆବେଗେ,
ଥିଲି ଯେଉଁ ଅବସ୍ଥାରେ, ରହିଲି ସେପର,
ମାତ୍ର ପ୍ରାଣବାୟୁ ଗଲି ତକ୍ଷଣେ ବାହାର,
ମେଢ଼େ ବିସର୍ଜନ ପ୍ରାପ୍ତ ପ୍ରତିମା ସଦୃଶ
ରହିଲି ଜୀବିତ ପ୍ରାୟ ଉଭା ତାର ଶବ ।
ଅନଙ୍ଗା ଏ ବାର୍ତ୍ତା ଶୁଣି ବାହ୍ୟେ କଲି ଦୁଃଖ,
ଅନ୍ତରେ ଅନ୍ତରେ ମାତ୍ର ଲଭିଲି ଯେ ମୋଦ,
ଅନିର୍ବଚନୀୟ ତାହା, ଆସେ ଯଦି ଫେରି
ମୃତପିଣ୍ଡେ ପୂର୍ବ ପ୍ରାଣ ପୁଣି, ମରଣର
ବହୁଦିନ ପରେ, ତେବେ ହେବ ନାହିଁ କେହି
ତଥା ଆନନ୍ଦିତ । ଦୁଷ୍ଟା କେତେ ଯେ ଦେଖିଲି
ଜାଗ୍ରତ ଦୁରାଶା ସ୍ୱପ୍ନ, କେତେ ଯେ ତୋଳିଲି
ଖ୍ୟାତି-ଭାଗ୍ୟ-ଅଟ୍ଟାଳିକା, ବନ୍ଧାଇଲି ତହିଁ
କଳ୍ପିତ ସୁଖର ସ୍ୱର୍ଣ୍ଣ ସୁଗମ୍ୟ ସୋପାନ,
ଭାଷା, ଭାବ, କଳ୍ପନା ତା ପ୍ରକାଶେ ଅକ୍ଷମ ।
ସ୍ୱର୍ଗତେ ଭାଳିଲି ଭ୍ରଷ୍ଟା—କେଡ଼େ ଶୁଭଦିନ
ଆଜି, ଜଣାଇଲି ଦୂତ କି ଶୁଭ ସମ୍ବାଦ,
ପୂର୍ବରୁ ବିଜୟାଦିତ୍ୟେ ଦେଇଛି ଧଇଡ଼,

ଜୀର୍ଣ୍ଣ ହେଲେ ରାଜା ବନେ ଶାର୍ଦ୍ଦୂଳ ଜଠରେ,
ଥିଲା ସହଚାରିଣୀ ଏକ ପ୍ରାଣଭାଗାରିଣୀ
ମୃତ ସେହେତୁ, ନିଷ୍କଣ୍ଟକେ ଏବେ ରାଜା ହେବ
ଉପପତି ମୋର, ସୁଖେ ରହିବି ନିର୍ଭୟେ ।
ଏକାଳେ ମିଳନ୍ତେ ଆସି ରାଜା ଭର୍ତ୍ତୃହରି
ଭଟ୍ଟା ପଡ଼ିଗଲା ଦୁଷ୍ଟା କଳ୍ପନା-ଜୁଆରେ,
ଦୁରାକାଂକ୍ଷା-ଶୈଳ ତାର ଅକାଳ ଭୂକମ୍ପେ
ଗଲା ଟଳ ଟଳ ହୋଇ, କେତେ ବେଗେ ହାୟ !
କି କଲା ବିଧାତା, ଗୁଞ୍ଜି ଦେଇ ହାତେ ମଣି,
ବାନ୍ଧୁ ବାନ୍ଧୁ ପଣନ୍ତରେ ନେଲା ତା ଛଡ଼ାଇ ।
ବଡ଼ ହଟିଆ ସେ, ନାହିଁ ବିଶ୍ୱାସ ତାହାକୁ,
ଭଣ୍ଡାଏ ସେ ସୁଖ ବୋଲି ଅର୍ପି ଅନୁତାପ ।
ଦୁରାଶା-ପାଦପେ ଦିନା ଫଳେ ଏହିପରି
ଶୂନ୍ୟଫଳ, ନିୟତିର ମହା ନିୟମରେ ।
ଅନଙ୍ଗା ରାଜାଙ୍କୁ ଦେଖି ପାର୍ଶ୍ୱେ ଉପସ୍ଥିତ,
ବିସ୍ତାରି କପଟ ଶୋକେ କପଟ କାନ୍ଦଣା
ବୋଇଲା, ହେ ନାଥ ବଡ଼ ସୌଭାଗ୍ୟ ଦାସୀର,
ଦେଖିଲା ଯା ଚିରପ୍ରିୟ ସୌମ୍ୟମୂର୍ତ୍ତି ତବ,
ଶୁଣି ତବ ଶୋକାବହ ନିଧନ ସମ୍ବାଦ
ଯାଉଥିଲି ଏହି ମାତ୍ର ତେଜିବାକୁ ପ୍ରାଣ
ଅଗ୍ନିକୁଣ୍ଡେ ପଶି, ଦୈବେ ଦେଖିଲି ଶ୍ରୀମୁଖ ।

ହୋଇଥିଲେ କ୍ଷଣମାତ୍ର ବିଳମ୍ବ ତୁମ୍ଭର,
ନ ଘଟନ୍ତା ଭାଗ୍ୟେ ଆଉ ଗୁରୁଙ୍କ ଦର୍ଶନ ।
କଟିଗଲା କେଡ଼େ ରକ୍ଷା ପୂର୍ବ ସୁକୃତରୁ,
ନ ହେଉ ଶତ୍ରୁକୁ ସୁଦ୍ଧା ଏଭଳି ବିପାକ ।
ଶୁଣି ଏହା ଭର୍ତ୍ତୃହରି, ମଣି ପ୍ରବଞ୍ଚନା
ରହିଲେ ନୀରବ, ମାତ୍ର ସତୀଶିରୋମଣି
ପିଙ୍ଗଳା ମରଣେ ହେଲେ ଦୁଃଖିତ ବିଶେଷ ।

ବସି ରାଏ ସଭା ମଧ୍ୟେ ଅନନ୍ତର ଦିନେ
ପଣ୍ଡିତମଣ୍ଡଳୀ ସହ ରତ କାବ୍ୟାଳାପେ,
ଲାଗିଅଛି ପରସ୍ପର କଥା କଟାକଟି
ଯୁକ୍ତି ପ୍ରତିଯୁକ୍ତିବଳେ, ପ୍ରଦର୍ଶାଇ କେହି
ବିବିଧ ଦୃଷ୍ଟାନ୍ତ ଶ୍ଳୋକ ବିବିଧ ଶାସ୍ତ୍ରରୁ
କରୁଅଛି ସ୍ୱମତର ଦୃଢ଼ ପୋଷକତା,
ଅର୍ଥାନ୍ତରେ ଅନ୍ୟ ତାହା କରୁଛି ଖଣ୍ଡନ,
ଏହିପରି ଲାଗିଅଛି ଘୋର ବାକ୍ୟ-ରଣ,
କଳି ତୁଲ୍ୟ କୋଳାହଳେ ମୁଖରିତ ସଭା ।
କେଡ଼େ ମଧୁର ସେ କଳି, ସ୍ୱପ୍ନ-ସୁଧାବୋଳା,
ନାହିଁ ତହିଁ କ୍ରୋଧ-ପ୍ରେରିତ ବିଭୀଷଣ ସ୍ପୃହା,
ପ୍ରତ୍ୟୁତ ସେ ଆମୋଦର ଅମର ଭଣ୍ଡାର,
ସତ୍‌ସାହିତ୍ୟଚର୍ଚ୍ଚା ତାର ପ୍ରଚ୍ଛନ୍ନ ଜୀବନ ।

କୋବିଦ କୋବିଦ ମଧ୍ୟେ ଘଟୁଅଛି କେତେ
ମତଭେଦ, ମାତ୍ର ତାହା ହେଉ ନାହିଁ କେବେ
ମନୋଭେଦେ ପରିଣତ, ଇଚ୍ଛେ ନାହିଁ ସିନା
ଭ୍ରାନ୍ତ ମତ ସଂଶୋଧନେ ଅଜ୍ଞ ଆତ୍ମଶ୍ଳାଘୀ,
ପଣ୍ଡିତ ପ୍ରକୃତ ଜ୍ଞାନୁ ସମ୍ପୂର୍ଣ୍ଣ ବ୍ୟତ୍ୟସ୍ତ,
ମଣନ୍ତି ସେ ମହାଶିକ୍ଷା ଭ୍ରମ ସଂଶୋଧନେ ;
ସ୍ୱଭାବତଃ ଗ୍ରୀଷ୍ମ ଶ୍ରାନ୍ତ ସରସୀ ପ୍ରବେଶେ,
ମାତ୍ର ତହିଁ ସ୍ନାନ ଗଜ ଲଭେ ପରିତୋଷ ।
ଲାଗିଛି ସମାଲୋଚନା ଭର୍ତ୍ତୃହରିକୃତ
ନବ କାବ୍ୟବିଶେଷର, ଧରୁଅଛି କେହି
ଉପମାର ଅପୂର୍ଣ୍ଣତା, ଯତିପାତ ଦୋଷ,
ଶ୍ରୁତିକଠୋରତା ଆଦି ଅଧମ ମେଳର,
ନ ମଣି ଧର୍ତ୍ତବ୍ୟ ତାହା କେବଣ ବିଦୂଷ,
ବିମୋହିତ କବିତାର ପ୍ରାଣସ୍ପର୍ଶୀ ଭାବେ ।
ଏସନ ବାଦାନୁବାଦ ଲାଗିଛି ସଭାରେ,
ଚାଲିଛି ଅପରିଚ୍ଛିନ୍ନ ବାକ୍ୟର ପ୍ରବାହ,
ଉପସ୍ଥିତ ଏହି କାଳେ ତପସ୍ୱୀ ଏକ,
ସ୍ୱାଧ୍ୟାୟ-ନିରତ, ଯାରେ ବଦନମଣ୍ଡଳେ
ବୈରାଗ୍ୟ, ସଂଯମ, ତ୍ୟାଗ, ଶାନ୍ତି, ସନ୍ତୁଷ୍ଟିର
ସୁଧାସ୍ନିଗ୍ଧ ସମୁଜ୍ଜ୍ୱଳ ସ୍ୱପନ ଚନ୍ଦ୍ରମା ।
ପୂର୍ଣ୍ଣ ଭଗବତ ପ୍ରେମେ, ମାତ୍ର ଶୂନ୍ୟାଶ୍ରିତ

କାମନା ସମ୍ପର୍କେ; ଯଥା ଭୋଳା ମହେଶ୍ୱର,
ଜଟ-ସ୍ୱର୍ଣ୍ଣ-ସର୍ପ-ଶୋଭି ପିଶଙ୍ଗିତ ଜଟା, †
ଅଯତ୍ନ ଭୂଷଣ ପ୍ରାୟ ଲମ୍ବିତ ଉରସେ ;
ବଲ୍କଳକୌପୀନଧାରୀ, ହସ୍ତେ ଆଶାବାଡ଼ି
ଶୋଭେ ଭବନଶ୍ୱରାର ନିଦର୍ଶନରୂପେ ।
ପ୍ରଣମନ୍ତେ ଭର୍ତ୍ତୃହରି, ଆଶିଷି ତାପସ,
ଭେଟିରୂପେ ଦିବ୍ୟଫଳ ପ୍ରଦାନ ଗ୍ରୁମୂରେ
ଭାଷିଲେ କୋମଳେ, ନୃପ, ପ୍ରକୃତି-ରଞ୍ଜନ,
ତପୋଲବ୍ଧ ଫଳ ଏହା, ଭୁଞ୍ଜିଲେ ଏ ଫଳ
ନାହି ମିଳେ ଜରା ମୃତ୍ୟୁ ବିପଦ କବଳୁ ।
ତପସ୍ୱୀ ମୁଁ, ସଦା ମୃତ୍ୟୁ-କରୁଣା ଭିଖାରୀ,
କ ଲୋଡ଼ା ଚିରାୟୁ ମୋର, ମୋ ପକ୍ଷେ ତା' ଶାପ,
ବନ୍ଧା ଯା' ଜୀବନ ସୂତ୍ରେ ଜଗତଜୀବନ,
ବାଞ୍ଛନୀୟ ହିନା ଚିରଜୀବନ ତାହାର ।
ସସମ୍ମାନେ ଭର୍ତ୍ତୃହରି ପରିଗ୍ରହି ଫଳ
ପ୍ରକାଶିଲେ କୃତଜ୍ଞତା କୃତାଞ୍ଜଳିପୁଟେ—
ବିନମ୍ର-ସୌଜନ୍ୟସିକ୍ତ ଶୀତଳ ବଚନେ ;
ସନ୍ନ୍ୟାସୀ ମେଲାଣି ମାଗି ହେଲେ ଅନ୍ତର୍ହିତ ।

ବାସର ଯୌବନେ ଭବ ଦେଲେ ମୁକୁଳାଇ
ପ୍ରଭାଭଣ୍ଡାରର ଦରମୁକୁଳା କବାଟ

---

† ପୀତାଭ ବର୍ଣ୍ଣ ଯୁକ୍ତ ଜଟା ।

ଏକାବେଳେ, ଏଣେ ନୃପ ହୃଦୟ- ଅମ୍ବରେ
ଆନନ୍ଦ-ମଧ୍ୟାହ୍ନ-ରବି କଲାକ ବିସ୍ତାର
ଅନନ୍ତ ମୟୂଖମାଳା ଅନନ୍ତ ଆବେଗେ ।
ତହୁଁ ରାଏ ସଭା ଭଙ୍ଗି ବିଜେ ହୋଇ ଖରେ
ଅନ୍ତଃପୁରେ ଦେଲେ ଫଳ ଅନଙ୍ଗା ହସ୍ତରେ,
ଆଗରୁ ତ ଆତ୍ମଦାନ କରିଥିଲେ ତାଙ୍କୁ,
ଏହି ପ୍ରାଣ-ଫଳ ହେଲା ତା' ଯୋଗ୍ୟ ଦକ୍ଷିଣା ।
ଅଜର ଅମର ଫଳ ଲଭି ସେ ଦୁଃଶୀଳା
ମଣିଲା ଦରିଦ୍ର ଜନ ହସ୍ତି ପ୍ରାପ୍ତି ଭଳି,
ଭାବିଲା ଏ ଫଳ ନୁହେ,-ଅଯାଚିତ ବର,
ଅମୂଲ୍ୟ, ଦୁରାଶାମୟ ଅସ୍ୱପ୍ନ-ସୁଲଭ,
ଯୋଗ୍ୟ ଉପହାର ଏହା ମୋ ପ୍ରିୟତମର ।
ଅର୍ପି ଏହା କରିବ ତା' ତୃପ୍ତି ଆକର୍ଷଣ,
ତାହା ତୃପ୍ତି ମୋ ପକ୍ଷରେ ଅମରତା ଏକା,
ନତୁ ମୁଁ ଅମର ହେଲେ କେଉଁ ସୁଖ ଭଲା,
ଯେହୁ ମୋର ଚିତ୍ତଚୋର, ଅର୍ପିଛି ଯା ପାଦେ
ପ୍ରାଣ, କୁଳମାନ ସହ, ଜଳାଞ୍ଜଳିରୂପେ—
ଏ ଫଳେ ତାହାଙ୍କୁ କଲେ ଜରାମୃତ୍ୟୁଞ୍ଜୟ,
ଭୁଞ୍ଜିବି ମୁଁ ତାହା ସୁଖେ ସୁଖ ନିରଙ୍କୁଶ,
ସେହି ମୋର ସୁଖ-ଉତ୍ସ,—ସୁଖର ନିଦାନ,
ତାହାର ପ୍ରଣୟ ମୋର ଆନନ୍ଦ-ଅମୃତ,—

ଜରାମୃତ୍ୟୁନିବାରକ ଅମୋଘ ଔଷଧି ।
ଏହା ଭାଳି, ହୋଇ ତୁଷ୍ଟା ଅତୀବ ଉସତ
ଦେଲା ନେଇ ସେହି ଫଳ ଏକ କ୍ରୀତଦାସେ,
ଥିଲା ଯେଣୁ ବହୁକାଳ ତାହା ସହିତରେ
ବନ୍ଧା ସେ ପ୍ରେମର ପ୍ରଣୟେ । ସେ କ୍ରୀତ କିଙ୍କର
ଆଜୀବନ ବିକା ଏକ ବାରାଙ୍ଗନା ପଦେ,
ଘାଇ ପ୍ରାଣ-ଫଳ ତାକୁ ଅର୍ପିଲା ସରାଗେ ;
ସେ ବେଶ୍ୟା ତାହାକୁ ନେଇ ଭେଟି ଦେଲା ନୃପେ ।
ସନ୍ନ୍ୟାସି ପ୍ରଦତ୍ତ ଫଳେ ଚହ୍ନି ପାରି ରାଏ,
ଘଟିଲେ ସନ୍ଦେହ ; ତହୁଁ ପୁଚ୍ଛନ୍ତେ ତାହାକୁ
ଫଳପ୍ରାପ୍ତି ସମାଚାର, ଭଣିଲା ଗଣିକା,
ଲଭିଛି ସେ ତାହା ତାର ପ୍ରିୟ ଉପପତି
ରାଜଭୃତ୍ୟଠାରୁ ; ଭୂପ ହକାରି ଭୃତ୍ୟକୁ
ପଚାରିଲେ, କହ କାହୁଁ ପାଇଲୁ ଏ ଫଳ ?
ଭୟେ ଭୃତ୍ୟ କମ୍ପି କମ୍ପି କହିଲା ମଣିମା,
ହେଉ ଦାସେ ଦୟା କ୍ଷମା ଅଭୟ ଆଦେଶ,
କହୁଅଛି ସତ୍ୟ, ଦେଲେ ଅନଙ୍ଗା ସେବକେ ।
ଶୁଣି ଏହା ଭର୍ତ୍ତୃହରି ହେଲେ ସ୍ତମ୍ଭୀଭୂତ,
ପଡ଼ିଲା ଆକାଶ ଭାଙ୍ଗି ଯିବା ମସ୍ତକରେ,
ହେଲା ନେତ୍ର ଅପଲକ, ବଦନ ହୁଏ ପାଣ୍ଡୁର,
କଳଙ୍କ ନରକ ଚିତ୍ର ଉନ୍ମୁକ୍ତ ସମ୍ମୁଖେ ।

ଅନଙ୍ଗାର କୂଟ-ପ୍ରୀତି-ଉପେକ୍ଷା-ଫଣିନୀ
ଦଂଶିଲା ସହସ୍ର ମୁଖେ ମର୍ମେ ମୁହୁର୍ମୁହୁଃ,
ଘାରିଲା ସେ ବିଷ ହୃଦେ, ମାତ୍ର ନ ଆଣିଲା
ମୂର୍ଚ୍ଛା, କେ କହିବ କିମ୍ପା ? ଘଟିଥିଲେ ତାହା,
ହୋଇଥାନ୍ତା କ୍ଷଣେ ହେଲେ ଯାତନା ବିସ୍ମୃତ ।
କି ଅମୃତ ସୁଖ ସ୍ପର୍ଶ ଦୁଃଖୀ ପକ୍ଷେ ଆହା
ମୂର୍ଚ୍ଛା, ତା କୋମଳ କୋଳେ ପାସୋରେ ମାନବ
ପଲକେ ଅନନ୍ତ ତାପ ଅନନ୍ତ ବେଦନା,
ସ୍ୱପ୍ନ-ସୃଷ୍ଟି-ସ୍ୱର୍ଗ ତାହା ତାପିତ ପକ୍ଷରେ ।
ତେଜି ଶଏ ଦୀର୍ଘଶ୍ୱାସ—ଅନୁତାପ ସୂଚୀ,
ବିଜେ କଲେ ଏକୁଟିଆ ନିର୍ଜନ ମନ୍ଦିରେ,
ଘୃଣା-ବାତ୍ୟାବର୍ତ୍ତେ ଜାଗି ଅପମାନ-ଝଟୀ,
ଗମ୍ଭୀର ବିକଟ କ୍ରୋଧ ଗର୍ଜନ ଉଠାଇ,
ଉଦ୍ବେଳିଲା ଘନ ଘନ ହୃଦୟ-ସାଗରେ ।
ରୋଧି ତାର ମହାବେଗ ଧୈର୍ଯ୍ୟେ ନରନାହା,
ଭାଳିଲେ ଏସନ—"ହାୟ ! କି ଦୁର୍ଭାଗ୍ୟ ମୁହିଁ
ସ୍ୱଭାବସୌଭାଗ୍ୟଶାଳୀ ରାଜକୁଳେ, ବୁଡ଼ି
ଦୁଷ୍ଟ ପ୍ରେମ-ପାରାବାରେ ସଂଗ୍ରହିଲି ହିନା
ରତ୍ନ ବୋଲି ଶୁକ୍ତି, ସେହି ତୁଚ୍ଛ କୁଭୂଷଣ
ଅଖ୍ୟାତି-ପଦକରୂପେ ବହିବି ବକ୍ଷରେ ;
ଏହା ମୋ ଅର୍ଜିବା ଫଳ, କେ ଭୁଞ୍ଜିବ ଆଉ

ମୋହୋ ବନା, କାଳକୂଟ ଉତ୍ପାଦ ସାଗରୁ,
ହେଲା ଶେଷେ ଶିବଙ୍କୁ ତା' କରିବାକୁ ପାନ ।
ଧିକ ଶତଧିକ ମୋତେ, ମଣିଲି ଯା ମୋହେ
ଉଚ୍ଛିଷ୍ଟାନ୍ନେ ଇଷ୍ଟଦେବ ନିର୍ମାଲ୍ୟ ସମାନ,
ମଣୁଥିଲି ଯାହାକୁ ମୁଁ ପୂତ ନାମାବଳୀ *
ଛି ଛି ସେ ତ କଦାଗ୍ନିର-କନ୍ଥା, ମଣୁଥିଲି
ପ୍ରଶସ୍ତି ଯାହାକୁ, ସେ ତ ସୁତୀବ୍ର ଭର୍ତ୍ସନା ;
କେତେ ସ୍ନେହେ କେତେ ଯତ୍ନେ ହୃଦ-ଉପବନେ
ରୋପିଥିଲି କୁଞ୍ଜଲତା—ନିକୁଞ୍ଜ ସୁନ୍ଦରୀ,
ମାତ୍ର ସେ ଯେ ଶତାବରୀ—କଣ୍ଟକଦନ୍ତୁରା,
ଜାଣିବି କେମନ୍ତେ ଏହା, ମୁହିଁ ମୂଢ଼ମତି,
କାମିନୀ-କୁହୁକେ ଅନ୍ଧ, କାମିନୀ କିଙ୍କର,
ଆଘ୍ରାଣିଲି ହେଙ୍ଗୁ, ସିନା ମୃଗନାଭି ଭ୍ରମେ ।
କି ପ୍ରଭେଦ ମହାକାଳ † ସୁରଙ୍ଗ ରସାଳେ
କି ପ୍ରଭେଦ ଅପଭାଷା ପବିତ୍ର ସଂସ୍କୃତେ
କି ପ୍ରଭେଦ ଅବା ତୀର୍ଥ, ବାରବାମାଳୟେ,
ନ ପାରିଲି ବାରି ହାୟ,, ଦୁର୍ବଳ ବୁଦ୍ଧିରେ !
ବସାଇଲି ଦୁଷ୍ଟାରଣୀ ହଟହଟା-ହାଟ,
* ଲଜ୍ଜା, ଭୟ, ନାରୀଧର୍ମେ ଅର୍ପି ଶିରଚ୍ଛେଦ
ଶାସ୍ତି, କେଡ଼େ ଦୁଃସାହସ ଅହୋ ଦୁଃଶୀଳାର,

---

* ନାମ ମନ୍ତ୍ରଲିଖିତ ଉତ୍ତରୀୟ ।   † ଫଳବିଶେଷ ।

ବୁଡ଼ି ଆପେ ପାପୀୟସୀ କଳଙ୍କ-ନରକେ,
ବୁଡ଼ାଇଲ ମୋତେ, ମୋର ସୁପାବନ କୁଳେ ;
ଯଥା ନଶୀଥିନୀ ବୋଳ ହୋଇ ଦେହେ କାଳ,
ବୋଳେ ସେହି କାଳ ପୁଣି ପ୍ରକୃତ ବଦନେ ।
ଯେ ଅଖ୍ୟାତ-ଅଟ୍ଟାଳିକା ତୋଳିଲି ପାମରୀ,
ନ ଭାଙ୍ଗିବ ସହଜେ ତା, ବହୁକାଳଯାଏ
ବହିଯିବ କାଳସ୍ରୋତ ଜୁହାର ତା ପଦେ
ମାତ୍ର ତହୁଁ ନ ପାରିବ ଖସାଇ ଇଷ୍ଟକ
ଖଣ୍ଡେ । ଯେହୁ ରାଜରାଣୀ, ରମଣୀ ଆଦର୍ଶ,
ପ୍ରକୃତପୁଞ୍ଜର ମାତା, ନାରୀରୂପା ଦେବୀ,
ତାହାର ଏ ଅକରଣୀ—ଏ ନୀଚ ଆଶୟ
ଶୁଣି ନ ମଣିବ କିଏ କଣ୍ଠେ କଳୁଷିତ !
ଏ ଭଳି ନଷ୍ଟା କି ପୁଣି ଲଭନ୍ତି ଜନମ
ସାଧାରଣ ଶିଷ୍ଟଯ୍ତ୍ନୀ ରାଜରାଣୀକୁଳେ !
ବାହାରେ ଅଙ୍ଗାର କି ପାଁ ହୀରକ ଆକରୁ,
କେବା କ୍ଷମ ଭେଦିବାକୁ ଏ ପ୍ରକୃତରହସ୍ୟ !
ନହିଛନ୍ତି ମାଧୁରୀ ଯେ କ୍ଷୁଦ୍ର ଇକ୍ଷୁ ଦଣ୍ଡେ,
ସେ ବିଧି ତ ରଖିଛନ୍ତି ସୁଗନ୍ଧ ଚନ୍ଦନେ
ତିକ୍ତତା, ପଶ୍ଚାତ୍ତେ ଯେଉଁ ହିମାଳୟ ଶୈଳ
ପ୍ରସବେ ଅମରୌଷଧି, ସେହି ତ ପ୍ରସବେ
ବିଷବଲ୍ଲୀ, ବିଧିର ଏ ବିଚିତ୍ର ବିଧାନ ।

ଯେସନ ଛଡ଼ାଇନଏ ପ୍ରକୃତି ମସ୍ତକୁ
ସୁଷମା-କିରୀଟ ଗ୍ରୀଷ୍ମ, ଅନଙ୍ଗା ତେସନ
ମୋର ଚିର ଖ୍ୟାତ-ଚୂଡ଼ା ନେଲକ ଛଡ଼ାଇ,
ଧିକ୍ ମୁହିଁ ନିର୍ବିବେକ, ହୀନ ସହବାସେ
ହେଲି ହୀନତର, ମାତ୍ର ଉଚ୍ଚ ସଂସର୍ଗରେ
ଧରି ତ ପାରିଲି ନାହିଁ ଉଚ୍ଚାଦର୍ଶ ତଳେ,
ଚେତାଇଲା ବାରମ୍ବାର ମୋତେ ମୋ ଅନୁଜ
ଧାର୍ମିକ ବିକ୍ରମାଦିତ୍ୟ—ଅମାତ୍ୟପ୍ରବର,
ତାହା ସଂସ୍ପରଶେ ସୁଦ୍ଧା ନ ଘୁଞ୍ଚିଲା ମୋର
ଜଘନ୍ୟ ସ୍ତ୍ରୈଣତା ଦୋଷ—ଜୀବନ୍ତ କୁଗ୍ରହ,
ସ୍ୱାତୀଯୁକ୍ତ * ବୃଷ୍ଟିବିନ୍ଦୁ ପରଶେ ଶୁକ୍ତିକା
ଧରେ ମୋତି ଗର୍ଭେ, ଏହି ନିସର୍ଗ ନିୟମ
ହେଲା ଏ ଦୁର୍ଭାଗ୍ୟ ଭାଗ୍ୟେ ନିରର୍ଥ ପ୍ରବାଦ ;
ଅବହେଳି ସାଧୁ ବାକ୍ୟ, ସେହି ମହାପାପେ
ଭୁଞ୍ଜୁଛି ମୁଁ ଅଭାଜନ ଏହି ମନସ୍ତାପ ।
ନ ପାରିଲି କଳି ଜଣେ ସାମାନ୍ୟ ନାରୀର
କୁଟିଳ ହୃଦୟ, ଭଲା କେମନ୍ତେ ବା ତେବେ
କଳିବି ଅନନ୍ତ ଏହି ପ୍ରକୃତିପୁଞ୍ଜର
ଅଚିନ୍ତ୍ୟ ମାନସ, ହାୟ, ଗଜୋପାଧି ସିନା
ମୋହେ ପକ୍ଷେ ବିଧାତାର ଅପାତ୍ରରେ ଦାନ,

* ସ୍ୱାତୀ ନକ୍ଷତ୍ରରେ ବୃଷ୍ଟିଜଳ ପାନ କଲେ ଶୁକ୍ତି ମୁକ୍ତା ଧାରଣ କରେ ବୋଲି ପ୍ରବାଦ ଅଛି

ନୁହେ ମୁଁ ତାହାଙ୍କ ଯୋଗ୍ୟ, ଏ ଭାଗ୍ୟବନ୍ଧନ
ଛିଣ୍ଡାଇବ ବଳେ ଆଜି, ହେବ ଆଜି ଦିନ
ମୋର ଭୋଗ-ଜୀବନର ଅନ୍ତିମ ଦିବସ ।
କହୁଥିଲ ସତର୍କ ମୋତେ ଭ୍ରୂକୁଟୀ ସଙ୍କେତେ
ଉଚ୍ଚକଣ୍ଠେ ଭବିଷ୍ୟତ, ଆଜି ଏ ଘଟଣା
ଫିଟାଇଲା ମୋ ହୃଦୟ-ମୋହ-ଯବନିକା,
ଫିଟାଏ ଯେସନ ଉଷା, କମଳରୂପିଣୀ
କମଳ-ପାଟଳ-କରେ ପ୍ରାଚୀ ଆବରଣ
କଜ୍ଜଳ କାଳିମାମୟ, ପୁଣ୍ୟ ପ୍ରାତଃକାଳେ ।
ପିଙ୍ଗଳାର ହତାଦର ଅଭିଶାପରୂପେ
ଫଳିଲା ମୋ ଭାଗ୍ୟେ ଏବେ । ପିଙ୍ଗଳେ, ତୁ ସତୀ
ପ୍ରକୃତ ସହଧର୍ମିଣୀ, ଶୁଣି ମୋ ମରଣ
ତେଜିଲୁ ଜୀବନ, ଦେବି, ଚରିତ୍ର ତୋହର
ବିଶୁଦ୍ଧ ଉଜ୍ଜ୍ୱଳ, ଯଥା ଅନଳମାର୍ଜିତ
କୁନ୍ଦନ, ଅଥବା ଧର୍ମ-ଶାଣିତ ପ୍ରତିଭା,
କାହୁଁ ବା ଚିହ୍ନିବ ତୋତେ ଅପଦାର୍ଥ ମୁହିଁ ।
ଦୁର୍ଲଭ ସୁଲଭ ହେଲେ, ହୁଏ ହତାଦର,
ଏହା ପ୍ରପଞ୍ଚର ଧାରା, ତୋହର ଅଭାବ
ବୁଝାଉଛି ଏବେ ମୋତେ ମହାମୂଲ୍ୟ ତୋର ।
ପବିତ୍ର ଦାମ୍ପତ୍ୟ ପ୍ରୀତି—ଅମିଶ୍ର ଗୋକ୍ଷୀର,
ତାହା ପ୍ରାପ୍ୟ ତୋର, ମାତ୍ର କର ତାକୁ ମୁହିଁ

ପାଣ୍ଡବଙ୍କ କାମୁକତା-ଲବଣେ ବିକୃତ,
ଦେଇଥିଲି ଅକାଙ୍କ୍ଷିତା' ଅନଙ୍ଗା ପାଦରେ,
ସ୍ୱାହାଙ୍କ୍ଷେଗ୍ୟ ଯଜ୍ଞହବି ଅର୍ପିଲି ଶୁନୀକୁ ; *
ଏହି ଅନୁତାପାନଳେ ଦଗ୍ଧ ଆଜୀବନ
ଢାଳୁଥିବି ବସି ତୋର ସ୍ମୃତିରେ ଶୋକାଶ୍ରୁ ।
ଯଦେ ଦଳି ସୁଶୀତଳ ମୃଣାଳଲତିକା,
ଜଡ଼ାଇଲି ବିଛୁଆତି ଅଙ୍ଗେ, ମୋତି ତେଜି
ଖେଳୁଥିଲି ପୁତି † ଯେନ, ଉପେକ୍ଷି ମୋଦକେ
ଗିଳିଲି ଗରଳଗୋଳା-ପ୍ରାଣସଂଘାତକା ।
ଅବସାନ ଏତେକାଳେ ଏ ସତୀଦ୍ରୋହିର
ଜୀବନ କଳ୍ପନାସ୍ୱପ୍ନ, ଜୀଭତ୍ସ, ବିକଟ,
ମାତ୍ର ନୁହେ ଅବସାନ ଜୀବନ-ଶର୍ବରୀ ।
ଗୃହସ୍ୟ-ଚନ୍ଦ୍ରକେ, ଦେବି, ଯେତିକ ତୋ ପ୍ରତି
ହୋଇଥିଲି ମୁଁ ନିର୍ମମ, ତେତିକ ତୁ ସତି,
ଢାଳୁଥିଲୁ ମୋହୋ ଯଦେ ଭକ୍ତି-ସୁଧା-ଧାର,
ସର୍ବଂସହା ଯଥା ଲଭେ ନେତେ କୋଡ଼୍ଡ଼ପୋଡ଼ା
କୃଷୀବଳ ହସ୍ତେ, ତୋଷେ ତତୋଽଧିକ ତାକୁ
ଶସ୍ୟ ଦେଇ ମଣିରତ୍ନ-ଉପସଂହରଣ ।
ନାଚୁଛନ୍ତି ନେତ୍ର ଅଗ୍ରେ ବହୁମୂର୍ତ୍ତି ଧରି
ବିବିଧ ସଦ୍‌ଗୁଣ ତୋର, ପ୍ରଦର୍ଶେ ଦର୍ପଣ

* କୁକ୍କୁରୀ ।  † ପଥରମାଳ ।

ଏକି ପ୍ରତିବିମ୍ବ, ମାନ ହେଲେ ଚୂର୍ଣ୍ଣୀଭୂତ
ସେ ଦର୍ପଣ, ଧରେ ତେବେ ଶତ ପ୍ରତିଛବି ।
ପୁଣ୍ୟଶୀଳେ, ହେଲ ସିନା ହାସ୍ୟ ମୁହିଁ ତୋର
ମୃତ୍ୟୁହେତୁ, ଆତ୍ମକୃତ ସେ ମହାପାପର
ଯୋଗ୍ୟ ପ୍ରାୟଶ୍ଚିତ୍ତ ନଶ୍ୱେ ଆତ୍ମବଳିଦାନ,
ଅତଏବ ବନେ ଯାଇ ତପସ୍ୟା ଆଚର,
ତେଜ ପାପଚକ୍ର ହେବ ଏ ପାପୁଁ ନିସ୍କୃତି ।
ଅହୋ, କି ଅଚିନ୍ତନୀୟ ଅରଣ୍ୟମହିମା,
ତାହା ପୁଣ୍ୟମୟ ଦେଶ, ନ ପଡ଼େ ତହିଁରେ
ପାର୍ଥିବ କୌଟିଲ୍ୟ ଛାୟା, କ୍ଷୁଦ୍ର, ମାୟାତ୍ମକ,
କିମ୍ବା ସେ ବିଷାକ୍ତ ନୁହେ ପ୍ରତାରଣା-ବଟେ,
ଅବିଶ୍ୱାସ-ପାଦପର ସୁଖ-ବୃନ୍ତେ ତହିଁ
ଫୁଟେ ନାହିଁ ସ୍ୱାର୍ଥ-ଫୁଲ-ପୂତିଗନ୍ଧମୟ,
ଶମିବ ସେଠାରେ ଯାଇ ଦୁର୍ବିସହ ଜ୍ୱାଳା ।
ନଖିଳ ପୁରାଣପ୍ରସୂ ଯେଉଁ ଅରଣ୍ୟାନୀ,
ଯହିଁ ବ୍ୟାସ ବାଲ୍ମିକୀ ଆଦି ମହର୍ଷିଏ
(ଭାରତ-ଭାରତୀଖଣି ଘାତ୍ର ମହାମଣି,
ଭାରତ-ଦେବାଳୟର ଅନିର୍ବେୟ ଦୀପ)
ଲଭିଛନ୍ତି ଅମରତା, ଆବର ଯା' କୋଳ
ମୁମୁକ୍ଷୁ ଚରମାଶ୍ରୟ ; ଜୀବାତ୍ମା ଯା' ଯୋଗେ

ଲଭେ ପରମାତ୍ମା-ପଦ-ପଙ୍କଜ-ସନ୍ନିଧି ;
ମାନବ ସଭ୍ୟତାର ଯେ ଆଦ୍ୟ ଜନ୍ମଭୂମି,
ସଦା ସୁପ୍ତା ଶାନ୍ତିଦେବୀ ଯା' ପାବନ କୋଡ଼େ,
ପ୍ରୀତିଦେବୀ ସହ, ସେହି ଅରଣ୍ୟ ବ୍ୟତୀତ
ସାଧନାର ସ୍ୱର୍ଗଧାମ କାହିଁ'ଛି ମହୀରେ ?
କ୍ଷିପ୍ତମନ ଚିକିତ୍ସକ ବନ, ପ୍ରଦାନ ସେ
ନୀରବ ବ୍ୟବସ୍ଥା, ମନୁ ଉପଶମେ ରୋଗ,
ଦେଖାଇ ସେ ବକ୍ଷ ଫେଣ୍ଡି ଅନନ୍ତ ଶୋଭାର
ଅନନ୍ତ ନିର୍ଝର, ଗାଇ ଅନନ୍ତ ସଙ୍ଗୀତ,
ଶିଖାଇ ନିଷ୍କାମ ଦୀକ୍ଷା, କରାଏ ପ୍ରବେଶ
ଅଧ୍ୟାତ୍ମ ମନ୍ଦିର ମଧ୍ୟେ, ଅବଲୋକି ତହିଁ
ପରମାତ୍ମା ଦେବତାଙ୍କ ମହା ନୀରାଜନା,
ମିଶାଏ ସାଧକ ସେହି ଅନନ୍ତ ଆଲୋକେ
ମହାମହୋଲ୍ଲାସେ ସ୍ୱୀୟ ଜୀବାତ୍ମା-ସ୍ଫୁଲିଙ୍ଗ,
ଯେସନ ଖଦ୍ୟୋତ (ତମଃ-ଘନ-ବିଦ୍ୟୁଲ୍ଲତା)
ମିଶାଏ ସ୍ୱକ୍ଷୀଣ ଜ୍ୟୋତି ପ୍ରଦୀପ ଜ୍ୟୋତିରେ ।
ବନ-ସୁତ ଦାବାନଳ, କେବଳ ବନର
ଆବର୍ଜନା ଧ୍ୱଂସ ନୁହେ କର୍ତ୍ତବ୍ୟ ତାହାର,
କଣ୍ଟିଳ ଲାଳସା-ତୃଣ ଦହେ ସୁଦ୍ଧା ସେହି
ସଂସାରର, ଅସ୍ପରଶେ, ହୁଏ ସେ ନିର୍ମଳ ।
ଅନନ୍ତର ଉର୍ମିହର ହାକାର ସରବେ

ଜଣାଇ ସ୍ୱମତ ତାଙ୍କୁ—ବାନପ୍ରସ୍ଥ ବ୍ରତ,
ରାଜ୍ୟ ତେଜି ଗଲେ ବନେ । ନିବର୍ତ୍ତିବାପାଇଁ
ବୁଝାଇଲେ ମନ୍ତ୍ରିବର ବିବିଧ ବିଧାନେ,
ମାତ୍ର ହେଲେ ନାହିଁ ସେଏ ସଂକଳ୍ପ-ବିଚ୍ୟୁତ,
ବର୍ତ୍ତମାନ ଆହ୍ୱାନେ କି ବାହୁଡ଼େ ଅତୀତ ?
କିଅବା ବିଷୟୀ ଡ଼ାକେ ବୈରାଗ୍ୟ ? ଧାବିତ
ଯା' ମତି ଶାଶ୍ୱତ ପଥେ, ଅଛି ସାଧ୍ୟ କାର
ଫେରାଇବ ତାକୁ ? ଗଲାଦିନୁ ତରଙ୍ଗିଣୀ
ଯେତନଣ ମେଲ୍ଲିଣି ଗିରିପଦୁ, ଗିରି ତାକୁ
କେତେ ଯେ ଡ଼ାକୁଛି ନିତି ପଛୁ ଦଗ୍ମୁଖେ,
ମାତ୍ର ସେ ତା' କର୍ଣ୍ଣପାତ କରୁଛି କି କେବେ ?



# ପଞ୍ଚମ ସର୍ଗ ।



ଏଣେ ଶ୍ରୀବିକ୍ରମାଦିତ୍ୟ ଭ୍ରମି ଭାରତର
ବହୁ ଗ୍ରାମ ରାଜଧାନୀ ତୀର୍ଥ ବନ ଆଦି
ଏକାକୀ, ଉଦ୍ଦେଶ୍ୟଶୂନ୍ୟ ନିରାଲମ୍ବଭାବେ,
ସେବି ବହୁ ପୂତ ତୀର୍ଥ, ଅର୍ଜିଲେ ଅପାର
ପୁଣ୍ୟ, ଲୋକାତୀତ ଜ୍ଞାନ । ଦେଖି ନାନା ଜାତି,
ନାନା ଧର୍ମାବଲମ୍ବୀର ଆଚାର ବେଭାର,
କରି ନାନା ଦେଶ ରାଜନୀତି ମର୍ମଭେଦ,
ଲଭି ତହୁଁ ମହାଶିକ୍ଷା କେତେ ଦିନ ପରେ
କଲେ ଅବସ୍ଥାନ ଆସି ଗୁର୍ଜର ପ୍ରଦେଶେ ।
ଦିନେ ନିଶାଯୋଗେ ବୀର ଦେଖିଲେ ସ୍ୱପନେ
ଅଗ୍ରେ ଉଭା ଦେବୀ ମୂର୍ତ୍ତି, ମାତୃଭାବମୟୀ,
ମହିମାର ମହାପ୍ରଭା ସ୍ଫୁରେ ଅପଘନୁ,
ଦୋଦୁଲ୍ୟ କିରୀଟ ଶିରେ ଦିବ୍ୟ ଆଭାମୟ,
ସ୍ୱର୍ଣ୍ଣ ଘଟେ କିବା ସ୍ୱର୍ଣ୍ଣ ତଡ଼ିତ ଜଡ଼ିତ ;
ସ୍ନେହ-ସୁଧାବୋଳା ଦୃଷ୍ଟି, ପ୍ରସନ୍ନ, ପାବନ,
କରୁଣା-କୌମୁଦୀ-ଧାରା ଝଳ ଝଳ ପଡ଼େ ।

ବସନ୍ତେ କୋକଳା ସତୀ ସମ୍ବୋଧିଲା ପ୍ରାୟ
ସମ୍ବୋଧି କହିଲେ ଦେବୀ, ଉଠ ଉଠ ବୀର,
ଉଠ ଶୂରେ, ବଜେ କର ଅବନ୍ତୀ ପ୍ରଦେଶେ,
ଚହ୍ନିଲଟି ମୋତେ, କୁତ, ପଡୁଛି କ ମନେ
ଅତୀତ ବୃତ୍ତାନ୍ତ ? ଯାକୁ ଭ୍ରାତୃଭକ୍ତ ବଶେ
ତେଜିଥିଲ ନର୍ବିକାରେ, ବୀରମଣି, ମୁହିଁ
ସେହି ଉଜ୍ଜୟିନୀ-ରାଜଲକ୍ଷ୍ମୀ, ତେଜିଲେହେଁ
ତୁମ୍ଭେ ମୋତେ, ପାର ନାହିଁ ମାଡ ମୁହିଁ ମନୁ
ମୁରୁଛି ତୁମ୍ଭଙ୍କୁ ! ଦେବ, କ ବର୍ଣ୍ଣିବ ହାୟ
ଅବନ୍ତୀ ନଗରୀ ଦୁଃଖ, ବହୁ କାଳୁ ଧନୀ
ଭଜୁଛି ବଧବା ଦଶା, ନଷ୍ପ୍ରଭ ସେ ଏବେ
ଦାରୁଣ ଦୁର୍ଦ୍ଦିନେ ଆହା ନତମଲ୍ଲୀ ପ୍ରାୟ *
ଅଥବା ରଜନୀ ଯଥା ନ ଦେଖି ଉଦତ
ରଜନୀ-ରଞ୍ଜନ-ଚନ୍ଦ୍ରେ, କ ଅବା ଯେସନ
ଶୁଭକର୍ମ ବ୍ୟତରେକେ ମହତୀ ପ୍ରତଷ୍ଠା ।
ଦୁର୍ଭିକ୍ଷ, ମଡ଼କ, ହତ୍ୟା, ଚୌର ଉପଦ୍ରବ,
ଅନାବୃଷ୍ଟି, ଅତବୃଷ୍ଟି, ଧର୍ମର ବପ୍ଳବ,
କେତେ ନୟୁତର ମହାବାତ୍ୟା ଭୟଙ୍କର
ଗଲଣି ବହି ତା' ଶରେ, ବାକ୍ୟାତୀତ ତାହା ।
ନାହିଁ ପୂର୍ବ ରାଜଧାନୀ, ହୋଇଛି ଏବେ ସେ
ଭସ୍ମ ରାଜା-ରାଜଧାନୀ-ଅମଙ୍ଗଳାବାସ,
ଭଗ୍ନ ଅଟ୍ଟାଳିକାଶ୍ରେଣୀ, କେହି ଅବା ରହି

* ପାଟଳବର୍ଣ୍ଣବିଶିଷ୍ଟ ପୁଷ୍ପବିଶେଷ । ସୂର୍ଯ୍ୟକିରଣ ନ ଦେଖିଲେ ତାହା ପ୍ରସ୍ଫୁଟିତ ହୁଏ ନାହିଁ

ଅର୍ଦ୍ଧଭଗ୍ନ ଗୃହେ, ଜରା-ଜର୍ଜ୍ଜରିତ ପ୍ରାଣେ,
ବିସ୍ତାରି ଇଷ୍ଟକ-ଦନ୍ତ ଧରିଛି ବିକୃତ
ରୂପ, ନଶ୍ୱରତା-ସ୍ମୃତି-ଉନ୍ମେଷକ, ହାୟ !
ଥିଲା ସେହୁ ଅଳକାର ଅଳଙ୍କାର ସମ,
ବଳିଛି ସେ ପୁରୀ ଏବେ ପ୍ରେତପୁରୀଠାରୁ,
ଧରିଛି ମହତ ଆହା ନୀଚର ଉପମା !
ଥିଲା ଯହିଁ ପୁଷ୍ପାସ୍ତୃତ ସଦା ସଜ୍ଜନର
ମନୋରଥ-ରଥ-ଗତିପଥ, ଏବେ ତାହା
କଣ୍ଟକ-ଆସ୍ତୃତ । ଖିତ ସର୍ବ ପ୍ରଜାକୁଳ,
ବହାଉଅଛନ୍ତି ନେତ୍ରୁ ନୈରାଶ୍ୟ-ଲୋତକ,
ଆହା, ସେ ଲୋତକ ନୁହେ,—ରୁଧିର ଆସାର ।
ସୁଧୀମଣି, ତୁମ୍ଭର ଏ ନିଷ୍ଠୁର ଭ୍ରମଣ
ନୁହେ ବିଧି ଅଭିପ୍ରାୟ, ଜନ୍ମ ତବ ଭବେ
ମହାକାର୍ଯ୍ୟ ସାଧନାର୍ଥେ, ବନ୍ଧିବ ଉଜାଣି
ଆଜି ଜୀବନର ସ୍ରୋତ ତବ ନିମ୍ନତର
ଘୋର ଆବର୍ତ୍ତରେ, ତେଜି ଔଦାସ୍ୟ ମାନସୁ
ପ୍ରବେଶ ସଂସାରେ, କର କର୍ମ ଉପାସନା,
ବୀର, ନୁହେ ତାହା ଦୁଃଖ ତୁମ୍ଭ ପକ୍ଷେ କେବେ,
ଯାହା ଦୁଃଖେ କୋଟି କୋଟି ପ୍ରାଣୀଙ୍କର ସୁଖ,
ନୁହଇ ତ ତାହା ଦୁଃଖ ଦୁଃଖରେ ଗଣିତ, .
ଚିର-ସୁଖ-ସ୍ୱର୍ଗର ସେ ସୁବର୍ଣ୍ଣ ବିମାନ ।

ସେହି ସୁଖରୂପୀ ଦୁଃଖ—ମହାତ୍ମା-ବାଞ୍ଛିତ,
ବୃଷ୍ଟି, ବଜ୍ର, ଶୀତାତପ ସହି ସହ୍ୟ ଶୈଳ
ଉଦରେ ଆଶ୍ରିତ ଜୀବେ କରେ ନଗପଦେ
ରକ୍ଷଣ ପାଳନ, ତାହା ମହତ୍ତ୍ୱ ତାହାର ।
ଅତଃ ହେ ମହାନୁଭବ, ଉଠି ତୁମ୍ଭେ ତ୍ୱରା
ଅବନ୍ତୀନଗରେ ଯାଇ ବସ ରାଜାସନେ ।
ଏହା ଋଷି ଅନ୍ତର୍ହିତ ହୁଅନ୍ତେ ସେ ଦେଖା,
ଭାଙ୍ଗି ଗଲା ଖରେ ସ୍ୱପ୍ନ ବନମାର୍କଙ୍କର,
ଉଠି ବସି ଖରତର ଚାହିଁଲେ ଚୌଦିଗେ,
ଦେଖିଲେ ନାହାନ୍ତି ଦେଖା, ଗଲେଣି ଉଭେଇ
ନୈଶ ଅନ୍ଧକାରେ, ତଥା ତାଙ୍କ ସୁବଚନ
ଯାଇଅଛି ମିଶି ନୈଶ ନୀରବତା ସହ ।
ସ୍ମର ଏହି ଅତ୍ୟଦ୍ଭୁତ ସ୍ୱପନ ଘଟଣା,
ହେଲା ତାଙ୍କ ଚିତ୍ତାଗାରେ ବସ୍ନୁ କୁଣିଆ,
ଅଜ୍ଞାତ ଉତ୍କଣ୍ଠା-ସ୍ରୋତ ବହି ଖରତରେ
ହେଲା ଉଦ୍‌ବେଳତରଙ୍ଗମେ, ସ୍ମୃତି-କୁହୁକିନୀ
ଫେଡ଼ି ତହୁଁ ଚିତ୍ରପେଡ଼ି ଦେଖାଇଲା ଆଣି
ଅରୂପ ଅଜ୍ଞାତ ଚିତ୍ର, ଗୋଟି ଗୋଟି କରି ।
ଭାଳିଲେ ସ୍ୱଗତେ ବୀର—ଏହା କି ସ୍ୱପନ,
ପ୍ରତ୍ୟକ୍ଷ ପରାଏ ପ୍ରତେ, ସତେ କି ମାଳବ
ବିପନ୍ନ—ସତେ କି ତାର ଶିରଫୁଲଗଣ

ଅବନ୍ତୀ ଉଚ୍ଛନ୍ନ ; ଏଥେ ଅସମ୍ଭବ କବା ?
ସ୍ୱେଚ୍ଛାଗୃସ୍ତ ହେଲେ ରାଜା, ଧ୍ରୁବ ଗ୍ରରଖାର
ରାଜ୍ୟ, ଏହା ସ୍ୱତଃସିଦ୍ଧ, ଯେ ଯନ୍ତ୍ରଗୃଳକ
ଉଚ୍ଛୃଙ୍ଖଳ, ସେ ଯନ୍ତ୍ର ବା ନ ଭାଙ୍ଗିବ କପାଁ ?
ଯିବାର ଉଚିତ ମୋର ମାଳବେ ଏକାଳେ ।
ଏହାପରେ ଖାଲୁ ଖାଲୁ ଶେଷ ହଶୀଥିମା,
ଅରୁଣ-ତରୁଣୀ-ଉଷା—ଅରୁଣବରଣା,
କାବ୍ୟତାରା-କୁନ୍ତଳମା, ଉଦ୍ଘାଟି ସତ୍ୱର
ପ୍ରାଚୀଦଗ—ଦେବାଳୟ୍ୱ-ହୈମ-ସିଂହଦ୍ୱାର,
ଦେଖାଇଲା ଅନନ୍ତର ଅନନ୍ତ ସୁଷମା ।
ସରସୁପ୍ତା ସରୋଜମା କର୍ଣ୍ଣମୂଳେ ଅଳ—
ମଧୁଲୀଗା, ଜଣାଇଲା ମଞ୍ଜୁଳ ଗୁଞ୍ଜନେ
ରବି ଆଗମନ ବାର୍ତ୍ତା ରବି-ଦୂତ ରୂପେ ;
ତହୁଁ ଧମା ରବିବଧୂ, ଉନ୍ମୀଳି ନୟନ
ସପୁଲକେ, ସମୀରେଣ ବଦୁଳନ ଛଳେ
ଶିର ନଇଁ, ନିବେଦିଲା କୃତଜ୍ଞତା ତାକୁ ।
ଅବଗାହ ହମାମୃତେ କାନନ-କୁମାରୀ
ଫୁଲକୁଳ, ନାଚ ନାଚ ହସିଲେ ସଧୀରେ,
ତେଜ ତନୁ, ସାନୁମାନ, ଭବନନକର,
ଅନ୍ଧାର ଅସ୍ପଷ୍ଟ ପ୍ରେତମୂର୍ତ୍ତି, ଭୟାବହ,
ଧରଲେ ମଧୁର ମୂର୍ତ୍ତି, ନିର୍ମଳ ସୁନ୍ଦର ।

ସାଜିଲେ ବିହଗବର୍ଗ—ପ୍ରଭାତପ୍ରହରୀ,
ବୋଲି ଦେହେ ବାଳରବି—କନକ-କିରଣ ।
ଢଳ ଢଳ ନିଶା ଅଶ୍ରୁ-ହିମବିନ୍ଦୁ ପରେ
ପ୍ରତିଫଳି ଢଳ ଢଳ ଶିଶୁ ସୌର କର,
ବଢ଼ାଇଲା ଦିବ୍ୟବିଭା, ବଢ଼ାଏ ଯେସନ
ବଂଶୀୟ ପ୍ରତିଭା—ଯୋଗ୍ୟ ବଂଶଧର ହୃଦେ ।
ପାଲଟି ପାଟଳ ପାଟ ଧନୀ ପୌରନ୍ଦରୀ
ଆବରିଲେ ବେର ଏବେ ସୁନୀଳ ଦୁକୂଳେ ।
ରାଜିଲା ରୁଚିରେ ଶିରେ ରକ୍ତ-ରବି-ଛବି,
ଅମନ୍ଦ ସୁନ୍ଦର ଫୁଲ୍ଲ ମନ୍ଦାର ଯେସନ ।
ହାଣିଲେ କିରଣ-କୁନ୍ତ ଦେବ ବିଭାବସୁ
କୁମୁଦିନୀ ବକ୍ଷେ, ଚନ୍ଦ୍ର-ହୃଦୟ-ଚନ୍ଦ୍ରିକା,
ତହୁଁ ସେ ହରାଇ ଚେତା ଗୁରୁ କ୍ଲେଶାବେଗେ,
ପଡ଼ିଲା ସରସୀ-ଶେଯେ ଢଳି, ନେତ୍ର ମୁଦ୍ରି ।

ସମାପି ବିକ୍ରମାଦିତ୍ୟ ପ୍ରାତଃକୃତ୍ୟ ଭୂପ,
ଯାତ୍ରା କଲେ ଉଜ୍ଜୟିନୀ ମୁଖେ, ଲଙ୍ଘି ପଥେ
ବହୁ ରାଜ୍ୟ, ସ୍ରୋତସ୍ୱତୀ, କାନନ, ପ୍ରାନ୍ତର
ଉପସ୍ଥିତ ଯଥାକାଳେ ଅଭୀଷ୍ଟ ପ୍ରଦେଶେ ।
ତହୁଁ ଛଦ୍ମବେଶେ କରି ନଗରୀ ପ୍ରବେଶ,
ଦେଖି ତାର ଶୋଚନୀୟ ଦାରୁଣ ଦୁର୍ଦ୍ଦଶା,

ଲଭିଲେ ବିଷାଦ, ହେଲା ନେତ୍ର ଛଳ ଛଳ,
କାନ୍ଦିଲା ଅନ୍ତର କ୍ଷୋଭେ, ଅସ୍ଫୁଟେ, କରୁଣେ,
କାନ୍ଦେ ଯଥା ହାୟ, ଦୁଃଖେ ମର୍ମଭେଦୀ ସ୍ୱରେ—
ବିଦେଶାଗତ ସୁପୁତ୍ର ଦେଖେ ଯେବେ ଗୃହେ
ଆସି, ପୂଜ୍ୟା ଜନନୀର ପ୍ରାଣାନ୍ତକ ପୀଡ଼ା ;
କିମ୍ବା ଯଥା ନିଷ୍ଠାପର ଦେବତା ପୂଜାରୀ,
ହେରି ପ୍ରାତେ ପ୍ରାଣପ୍ରିୟ ଇଷ୍ଟଦେବତାର
ଚୌରକୃତ ଅପମାନ, ଅସହ୍ୟ ତାହାର ।
ଅଥବା ଯେସନ କାନ୍ଦେ ଉଦ୍ୟାନପାଳକ
ଦେଖି ଯତ୍ନବିବର୍ଦ୍ଧିତ ଉଦ୍ୟାନ ତରୁର
ଛିନ୍ନ ଭିନ୍ନ ଦୀନଦଶା, ଦୁଷ୍ଟ କପିକୃତ ।
ବିଷମ ଆତୁରେ ବୀର ଭଣିଲେ ଏସନ—
ଉଜ୍ଜୟିନ, ହା ଅଭାଗି, କି ଦଶା ଲୋ ତୋର !
ଥିଲୁ ତୁହି ଗରବିଣୀ, ସୁଷମା-ବାରିଧି,
କେଉଁ କ୍ରୂର ଅଗସ୍ତ୍ୟ ଲୋ ଶୋଷିଲା ତୋହର
ଅଲକ୍ଷେ ସେ ଶୋଭା-ବାରି ? ହେଲୁ ତୁ ଶ୍ରୀହୀନା
ବାଳବିଧବା ସଦୃଶ, ଫାଟିଯାଏ ଛାତି,
ଫିଟିଯାଏ ଅଶ୍ରୁ-ଉତ୍ସ ସହସ୍ର ଧାରରେ
ଅସମ୍ଭାଳେ, ହେରି ତୋର କାଙ୍ଗାଳୁଣୀ ବେଶ ।
କ୍ଷିପ୍ରା ସିପ୍ରେ ! ଦିବ୍ୟଗନ୍ଧମୟୀ ଗନ୍ଧବତି ! *

---

* କ୍ଷିପ୍ରା ଓ ଗନ୍ଧବତୀ ଉଜ୍ଜୟିନୀର ନଦୀଦ୍ୱୟ ।

ତୁମ୍ଭେ ପରା ଉଜ୍ଜୟିନୀ ଭାଗ୍ୟଦା, ପାଳକା —
ତୁମ୍ଭ ଧାରା ପରା ତାର ମାତୃସ୍ତନ୍ୟ ଧାର,
ତୁମ୍ଭ ବିନା ବର୍ତ୍ତମାନେ ଜୀବନ୍ମୃତ ସେହୁ,
ଦେଖ, ଏହି ଅକ୍ଷାଳିତ କଳଙ୍କର ଗ୍ଲାନି,
ବହିଲ କେମନ୍ତେ ଭଲା ନିର୍ମଳ ହୃଦୟେ ?
କି ହେତୁ କରୁଣା ଉଣା ପ୍ରଭୁ ମହାକାଳ ✽
ମହାରୁଦ୍ର, ପଦାଶ୍ରିତା ଉଜ୍ଜୟିନୀ ପ୍ରତି ?
ଅନାଥା ସେ ଏବେ, ହାୟ ଦୁର୍ବଳା ପୀଡ଼ିତା,
ଦେବ ଦେଖିଲ ତ ଏହି ମହାକାଳ କ୍ରୀଡ଼ା
ବସି ବିଶ୍ୱ-ସିଂହାସନେ, ଅବହେଳେ ପ୍ରଭୋ,
ଶୂଳି ! ଯେ ମହାତ୍ରିଶୂଳ ପ୍ରେରିଲ ଛଟକେ
ଦୁର୍ଦ୍ଧର୍ଷ ତ୍ରିପୁରରକ୍ଷେ ସଂଯମନୀ ପୁରେ,
କ୍ଷମ ଯେ ବିଶ୍ୱ ଧର୍ଷଣେ ଭ୍ରୂଭଙ୍ଗ ମାତ୍ରକେ,
ସେ ରୁଦ୍ର ତ୍ରିଶୂଳ ତବ ପରାଙ୍ମୁଖ କି ହେ
ତବ ଅଧିଷ୍ଠିତ ରାଜ୍ୟ ବିପଦ ନାଶନେ ?
କେ ବୁଝିବ ଲୀଳା ତବ—ଧାରଣା ଅତୀତ ?

ଏରୂପେ ବିକ୍ରମାଦିତ୍ୟ ଆକ୍ଷେପି ବହୁଶଃ
ଭ୍ରମି ଭ୍ରମି ଇତସ୍ତତଃ, ହେଲେ ଅତର୍କିତେ
ଉପସ୍ଥିତ ଯାଇ ଏକ କୁମ୍ଭକାର ଗୃହେ,
ଦେଖିଲେ ଲୁଚିଛି ତହିଁ ରାଜସଭା, ମିଳି

---

✽ ଉଜ୍ଜୟିନୀର ଅଧିଷ୍ଠାତା ଶିବ ।

ରାଜଙ୍କାସ୍ୟ ପାତ୍ର, ମନ୍ତ୍ରୀ, ପାରିଷଦ ଆଦି
ମଣ୍ଡି କୁମାରଙ୍କୁ ଯୁଥେ ଭୂପେନ୍ଦ୍ରୋପଯୋଗୀ
ବସନ ଭୂଷଣେ, ପୁଣି ପିନ୍ଧାଇ ମସ୍ତକେ
ମଣିମୟ ରାଜଚୂଡ଼ା, ଯେବେ ଗଲେ ହରା ।
ବାଳପିଲେ ତହୁଁ ବୃଦ୍ଧ କୁମାର ଦମ୍ପତି
ବିଷମ ବ୍ୟାକୁଳେ ଉଚେ, ମର୍ମସ୍ପର୍ଶୀ ସ୍ୱରେ,
ଯଥା ଶୁକ ଶାରୀ, ଯେବେ କୁଳାୟୁ ତାଙ୍କର
ଶାବକେ କପଟ ଧରି ଆବଦ୍ଧି ପିଞ୍ଜରେ
ଯେବେ ଯାଏ ଦମ୍ଭୀ ଆହା ମହାଦମ୍ଭରେ,
ସେ କାଳେ ଶାବକ ଯହୁଁ ଯାନ ଦେଖେ ଯଥା
ଜନକ ଜନନୀ ମୁଖ, ହୋଇ ଛଟପିଟି
ଡାକେ ଘନ ଘନ ତାଙ୍କୁ ନେବାକୁ ଉଦ୍ଧାରି,
ତଥା ମହାବ୍ୟତିବ୍ୟସ୍ତ କୁମ୍ଭକାର ସୁତ ।
ପ୍ରବୋଧି ବିକ୍ରମାଦିତ୍ୟ ଦମ୍ପତି ଯୁଗଳେ
ପୁଚ୍ଛନ୍ତେ ଶୋକର ହେତୁ, କହିଲେ ବେନିଏ
କେତେକ୍ଷଣ ପରେ, ତେଜି ଶୋକତପ୍ତ ଶ୍ୱାସ—
ବାଷ୍ପରୁଦ୍ଧ ଅର୍ଦ୍ଧଭଗ୍ନ ସ୍ୱରେ, ଶୁଣ ପ୍ରାଣ—
ହାୟ, କି କହିବୁଁ ଆମ୍ଭ ଦୁର୍ଭାଗ୍ୟ କଥନ,
ହାପୋ, ଏକମାତ୍ର ପୁତ୍ର, ଏ ଆମ୍ଭ ବେନିର,
ରାଜ କର୍ମଚାରିବୃନ୍ଦ ଯାଉଛନ୍ତି ଘେନି
ତାକୁ, ବସାଇବାପାଇଁ ରାଜସିଂହାସନେ

ଏହା ଆମ୍ଭ ଉପସ୍ଥିତ ଶୋକର କାରଣ ।
ନ ପାରି ସମ୍ଭରି ହାସ୍ୟ ଗିରି ଏ ବଚନେ
ଭାଷିଲେ, ତୁମ୍ଭେ କି ଭଲା ସ୍ୱଭାବ ବାତୁଳ,
କିମ୍ବା ବୃଦ୍ଧ ବୁଦ୍ଧି ବେନି ହେଲ ଉନ୍ମତ,
ବୟୋଧର୍ମେ । ପୁତ୍ର ତବ ହେବ ରାଜ୍ୟେଶ୍ୱର,
ଏଥିରେ ତୁମ୍ଭର ଦୁଃଖ, କି ଅଦ୍ଭୁତ କଥା ।
ଅନୁସରିବାକୁ ନରେ ଯେ ସୌଭାଗ୍ୟ ପଛେ
ସଦା ଲାଳାୟିତ, ନିଜ ପୋଷା ଶ୍ୱାନ ପ୍ରାୟ,
ମଣ କିପାଁ ତୁମ୍ଭେ ସେହି ସମ୍ପଦେ ବିପଦ ?
ସ୍ୱଭାବେ ଦରିଦ୍ର ତୁମ୍ଭେ, ନୀଚକୁଳେ ଜାତ,
ତୁମ୍ଭ ପକ୍ଷେ ଏ ସୌଭାଗ୍ୟ ସ୍ୱପ୍ନାତୀତ ବର,
ମଣୁଛ ତାହାକୁ ତୁମ୍ଭେ ତୀବ୍ର ଅଭିଶାପ !
ମଣେ ଗ୍ରହଦୁଷ୍ଟ ସିନା ଫୁଲମାଳେ ବ୍ୟାଳ ।
ସମ୍ପତ୍ତି, ପ୍ରାଧାନ୍ୟ, ପଦ ଉପେକ୍ଷ୍ୟ କାହାର—
ବିଶେଷତଃ ତୁମ୍ଭ ପରି କେଉଁ ନିର୍ଦ୍ଧନର ?
ପ୍ରକୃତରେ ଯେ ମହାନ, ସେ ଆତ୍ମବିସ୍ମୃତ,
ନ ମଣେ ସେ ଆପଣାକୁ ବଡ଼ ; ଇଚ୍ଛେ ଏକା
ହେବାକୁ ମହାନ କ୍ଷୁଦ୍ର, ମାତ୍ର ତୁମ୍ଭଠାରେ
ବ୍ୟତ୍ୟୟ କିପାଇଁ ଚିର ପ୍ରଚଳିତ ଧାର ?
ବ୍ୟର୍ଥ ସତ୍ୟ ବିଧାତାର ଅପାତ୍ରରେ ଦାନ ।
ଉତ୍ତରିଲା କୁମ୍ଭକାର— ହେ ଜିଜ୍ଞାସୁ, ବୁଝେ

ସୌଭାଗ୍ୟ ଏ—ଦୁର୍ଭାଗ୍ୟର ସୂଚାବ ବଦ୍ରୂପ,
କହୁଛି କାରଣ ତାର ଶୁଣ ଅବହିତେ ।
ପାଳୁଥିଲେ ଏ ପ୍ରଦେଶ ରଜା ଭର୍ତ୍ତୃହର,
ପତ୍ନୀର ଅସଦାଗ୍ରହେ ହୋଇ ସେ ବ୍ୟଥିତ
ଗଲେ ରାଜ୍ୟ ତେଜ ବନେ ତପସ୍ୟାଭିପ୍ରାୟେ,
ହେଲା ଅରାଜକ ହାୟ୍ ଅବନ୍ତୀ ନଗରୀ,
ଅବନ୍ତି-ସୀମନ୍ତିନୀ—ପ୍ରଶସ୍ତି ମାଳିନୀ,
ହେଲେ ତରୀ କର୍ଣ୍ଣଧାରଶୂନ୍ୟ ତରଙ୍ଗିତ—
ସିନ୍ଧୁ ଗର୍ଭେ, ଘଟେ ଯଦ୍ଦେ ଯେ ଦୁର୍ଦ୍ଦଶା ତାର,
ଭୁଞ୍ଜିଲା ଅଭାଗୀ ତାହା । ଦେଖିଣ ଅନାଥା
ତାକୁ, ଅଗ୍ନିବେତାଳାଖ୍ୟ ଅପଦେବ ଏକ
ଭକ୍ଷିଲା ନିର୍ଭୟେ ପ୍ରଜା, ଯଥା ମହାବଳ
ରକ୍ଷୀଆଳଶୂନ୍ୟ ଗୋଷ୍ଠେ ପଶି ଅବହେଳେ
ବନାକ୍ଷେ ଗୋଯୂଥ । ଦେଖି ଏ ନୃଶଂସଲୀଳା—
ବହୁ ମହାପ୍ରାଣିକ୍ଷୟ୍ଯ ସଚିବନିକର,
ବେତାଳ ସମୀପେ ଯାଇ କଲେ ଏ ପ୍ରସ୍ତାବ—
ହେ ବେତାଳରାଜ, ହୁଅ କ୍ଷାନ୍ତ ତୁମ୍ଭେ ଏବେ
ମାନବ ଜୀବନ ନାଶୁଁ, ହେଲା ଆଜଠାରୁ
ଏହି ନିର୍ଦ୍ଧାରଣ—ଆମ୍ଭେ ବସାଇବୁଁ ନିତ
ଏ ରାଜ୍ୟର ଜଣେ ଜଣେ ପ୍ରଜାଙ୍କୁ ପ୍ରଭାତେ
ରାଜସିଂହାସନେ, ହେବ ସେ ଦିବସେ ରାଜା,

ମାତ୍ର ରାତ୍ରେ ତୁମ୍ଭେ ତାକୁ କରିବ ଭକ୍ଷଣ ।
ସେହି ନିର୍ଦ୍ଧାରଣ ମତେ ଆଜ ମୋର ପାଳି,
ତହୁଁ ପାତ୍ର ମନ୍ତ୍ରିବର୍ଗ ଘେନିଗଲେ ଧରି
ଏକମାତ୍ର ପୁତ୍ରେ-ହାୟ ! ରଙ୍କ ରତ୍ନ ମୋର ;
ଉପସ୍ଥିତ ଜୀବନର ସାୟଂକାଳେ ମୁହିଁ,
ବହିବାକୁ ଅକ୍ଷମ ସ୍ୱଶରୀରର ଭାର,
ଏକାଳେ ବିଧାତଃ, ଭଲା କେମନ୍ତେ ସହିବି
ଦୁର୍ବିସହ ପୁତ୍ରଶୋକ ଭାର,—ବଳେ ଯାହା
ସପ୍ତଦ୍ୱୀପ, ସପ୍ତସିନ୍ଧୁ, ଅଷ୍ଟକୁଳାଚଳ ।
ସିନ୍ଧୁ ନିଧନରେ ଯଥା ଅନ୍ଧକ ଅନ୍ଧକୀ *
ତେଜିଲେ ଜୀବନ, ତଥା ବୃଦ୍ଧ ବୃଦ୍ଧା ବେନି
ଘେନିବୁଁ ବିଦାୟ ଆମ୍ଭେ ଭବୁଁ ପୁତ୍ରାଭାବେ,
ଲଭିବ ଶମନ ବିପ୍ର, ପୁତ୍ରେ ଦାନରୂପେ,
ଆମ୍ଭେ ବେନି ସେ ଦାନର ବିହିତ ଦକ୍ଷିଣା ।

ଶୁଣି ଏହା ବିକ୍ରମାର୍କ ଦୟାର୍ଦ୍ର ହୃଦୟେ
ଭାଷିଲେ ହେ ବୃଦ୍ଧ, ନୁହ ଚିନ୍ତାକୁଳ ଆଜ
ଅର୍ପି ମୋତେ ତୁମ୍ଭ ପୁତ୍ର-ପ୍ରତିନିଧିରୂପେ,
ଲଭ ଏ ସଙ୍କଟୁ ତ୍ରାହି ଉଭୟେ ଶ୍ରେୟ
ତହିଁ, ହେବ ପ୍ରାଣରକ୍ଷା ପୁତ୍ରର ତୁମ୍ଭର,

* ଦଶରଥ କର୍ତ୍ତୃକ ଅନ୍ଧକମୁନିପୁତ୍ର ସିନ୍ଧୁମୁନି ହତ୍ୟାବିବରଣ ରାମାୟଣରେ ଦ୍ରଷ୍ଟବ୍ୟ ।

ଦୁର୍ଜେ ଏ ପରୋପକାର ଫସାଧନ ହେତୁ
ହେବ ମୋର ପୁଣ୍ୟାର୍ଜନ, ବିଶେଷତଃ ଯଦି
ପାରେ ସେ ବେତାଳେ ବଧି, ହେବ ତେବେ ସ୍ୱର୍ଗା ।
ଅହୋ କି ଘୃଷଣି କଥା, କହିଲ କୁମ୍ଭାର,
ଭାଗ୍ୟା ନରକର ବାଟ ରଖିବାକୁ କାଟି
ଅପୁଚ୍ଛ କି ଉପଦେଶ ମୋତେ ? ହା ଦୁର୍ଦ୍ଦୈବ,
ବଞ୍ଚାଇବ ନିଜ ପୁତ୍ର ପର ପୁତ୍ର ଦାନେ,
ଏଥୁ ବଳି ମହାପାପ କି ଅଛି ମହୀରେ ?
ତହିଁରେ ଅତିଥି ତୁମ୍ଭେ, ଦେବତା ସମାନ ।
ମହାଭାଗ, ନ ଶୁଣାଅ ଏ ପାପ ପ୍ରସ୍ତାବ ।
ହେଲି ଜାଣି ଏଥରକ ପୁତ୍ର ରକ୍ଷା ମୋର,
ମାତ୍ର ଯେତେବେଳେ ପୁଣି ପଡ଼ିବ ମୋ ପାଳ,
ତେତେବେଳେ କି କର୍ତ୍ତବ୍ୟ, ହେବ ତ ନିଶ୍ଚୟ
ଅର୍ପିବାକୁ ପୁତ୍ରେ । ଅତ୍ମପ୍ରାଣେ ପରପ୍ରାଣେ
ନାହିଁ ଭେଦ କିଛି, ଧାତୁ ମୃତ୍ତିକା ଶିଳାଦି
ଯେହ୍ନେ ଘଟେ ଥାଇ ଜଳ, ଏକ ଦ୍ରବ୍ୟ ସେହ୍ନ,
ଅତଏବ ପରହତ୍ୟା ଆତ୍ମହତ୍ୟା ସମ,
ଜୀବନହିଁ ଅତ୍ମା, ଅତ୍ମା ବ୍ରହ୍ମସତ୍ତା ଭିନ୍ନ
ନୁହେ କିଛି ଆନ, କରେ ବିନାଶ ଯେ ତାକୁ
ବ୍ରହ୍ମହତ୍ୟା ମହାଦୋଷେ ଦୋଷୀ ସେ ପାମର ।
ଭିନ୍ନ ଦେଖ, କୁମର ମୋ ନ ହେବ ଅମର,

ମରିବ ଅବଶ୍ୟ ଜନେ, ମହାନିୟତିର
ଅକାଟ୍ୟ ନିୟମେ, ଜନ୍ମ-ମରଣର ହେତୁ,
ସୃଷ୍ଟି ପଛେ ପଛେ ଲାଗି ରହିଛି ସଂହାର,
ସଂଲଗ୍ନ ଅତୀତ ଯଥା ବର୍ତ୍ତମାନ ପଛେ,
ସୃଷ୍ଟିଲୀଳା ପ୍ରାୟ ସଦା ଲାଗିଛି ସଂସାରେ
ସଂହାରର ମହାଲୀଳା, ହେଲେ ରୁଦ୍ଧ ତାହା,
ହେବ ସୃଷ୍ଟି ଦ୍ୱାର ରୁଦ୍ଧ, ନ ଶୋଷିଲେ ରବି
ଧରଣୀରୁ ରସ, ହେବ ବୃଷ୍ଟି ଅବା କାହୁଁ ?
ସୃଷ୍ଟିପରି ସଂହାରହିଁ ବିଧାତୃ-ବାଞ୍ଛିତ ।
ଯାହା ହେଉ, ଆମ୍ଭ ପ୍ରାଣ ସଂରକ୍ଷଣପାଇଁ
ନ ପାରିବ ତୁମ୍ଭଙ୍କୁ ମୁଁ ଅର୍ପି ମୃତ୍ୟୁ ମୁଖେ
ଜ୍ଞାନାନ୍ଧ ବିଶ୍ୱାସଅନ୍ଧ ପ୍ରାୟ, ପ୍ରଦାନେ ଯେ
ମୃତ୍ୟୁରୁ ତରିବା ଲାଗି ପଶୁ ପକ୍ଷୀ ବଳି
ଦେବପୀଠେ, ଫଳେ ଲିପ୍ତ ହୋଇ ହତ୍ୟାପାପେ
ନଷ୍ଟ କରେ ଦୁଷ୍ଟମତି ଇହ ପର କାଳ ।

ନ ହୁଅ ସନ୍ଦିଗ୍ଧ ବୃଦ୍ଧ, ଜାଣିବ ପଶ୍ଚାତେ,
ଲଭିଲେ ବିକ୍ରମାଦିତ୍ୟ, ନ ହେଲେ ମାନ୍ତ୍ରିକ
ମନ୍ତ୍ରରେ ନିପୁଣ, କାହିଁ କି ସାହସ ହୃଦେ

ଧରିବାକୁ ବିଷାକର ସର୍ପେ ? କି ଭସ୍ମ ବା
ସେ ବେତାଳେ ? ସମ୍ଭବେ କି କେତକୀ-କଳିତେ
ତରୁଚ୍ଛେଦ, ବରଂ ବାଜି ତାହା ତରୁ ଦେହେ
ଝଡ଼ିଯିବ ଦାଢ଼ ତାର—କୋମଳ କଣ୍ଟକ ।
ଯାଉଛି ମୁଁ ସ୍ୱେଚ୍ଛାକ୍ରମେ ବେତାଳ ସମୀପେ,
କିପାଁ ହେବ ବର୍ଷୀୟାନ, ଏଥେ ପାପ ତବ ?
ଢଏ ଯଦି ଶ୍ୱାସ କେହି ସମୁଦ୍ର ସଲିଳେ,
ଲାଗେ ନ କି ପାରିବାରେ ତାର ହତ୍ୟା ଦୋଷ ?
ପରୋପକାର ସାଧନେ ଘଟେ ମୃତ୍ୟୁ ଯାର,
ନୁହେ ସେ କଦାଚ ମୃତ, ମୃତ ସେହି, ଜୀଏ
ଯେହୁ ନିଜପାଇଁ । ଭବେ ପର ଉପକାର
ଶ୍ରେଷ୍ଠ ଧର୍ମ, ଶ୍ରେଷ୍ଠ ସ୍ୱର୍ଗ, ଧରେ ତରୁବର
ପରୋପକାରାର୍ଥେ ଫଳ, ବହେ ତରଙ୍ଗିଣୀ
ପର ହିତେ ନୀରସ୍ରୋତ, ଦୁଗ୍ଧ ବହେ ଗାଭୀ ;
ସାଧି ନାହିଁ ପର ହିତ ଯେ ମାନବ କେବେ,
ନୁହେ ସେ ମାନବ—ପ୍ରେତ ମୂର୍ତ୍ତି ମାନବର ।
ହୁଅ ନାହିଁ ଭୀତ ତୁମ୍ଭେ, କିମ୍ବା ଧୈର୍ଯ୍ୟଚ୍ୟୁତ,
ନ ହେବ ତୁମ୍ଭଙ୍କୁ ଆଉ ପୁତ୍ରେ ଅର୍ପିବାକୁ
ବେତାଳ କରକେ, କର ବିଶ୍ୱାସ ଏ କଥା ।
ପହୁଞ୍ଚିଲେ ଅବନତି ଚରମସୀମାରେ
ପ୍ରକୃତି ପର୍ଯ୍ୟାୟେ ଆସେ ଆବର ଉନ୍ନତି,

ହିମପାତେ ପଦ୍ମବନ ଦଗ୍ଧ ହେଲା ପରେ,
ହୋଇ ଉଠେ ପୁଣି ଯିନା ନବ ପଲ୍ଲବିତ ;
ଚନ୍ଦ୍ରକ୍ଷୟ ଅନ୍ତେ ତାର ବୃଦ୍ଧି ହୁଏ କଳା ;
ପାହିଲାଣି ଏ ରାଜ୍ୟର ଅବନତି-ନିଶା
ତମୋମୟୀ, ଭୟଙ୍କରୀ, ହଶିବ ଅଚିରେ
ଉନ୍ନତି-ଉଷାର ଏବେ ପାଠେଲ ମହୁର୍ତ୍ତ,
ନ କର ସନ୍ଦେହ ଏଥି, ଦେଖିବ ସାକ୍ଷାତେ ।
ଶୁଣି ଏହା କୁମ୍ଭଜାଗୀ, ଆନନ୍ଦେ ବଖୋଳ
ଭାଳିଲା, ଏ ଅକଳ୍ପନା!ସୁଲଭ ସ୍ୱରଗେ
କେ ଆଣିଲା ମୋତେ, ଆହା କଲ ମୁହା ପାନ
କର୍ଣ୍ଣ ରୁନ୍ଧ୍ରେ ଏହୁ ଦଣ୍ଡେ, ତାହା କି ବଚନ,
ବଚନ କି ହୋଇ ପାରେ ଏତେ ମଧୁମୟ,
ସୁଶୀତଳ, ଶାନ୍ତିକର, ପ୍ରାଣାରାମପ୍ରଦ ?
ନା, ନା, ସେ ବିଶୁଦ୍ଧ ସୁଧା, ଅମର ସମ୍ପଦ ।
ଅଥବା ଦେଖୁଛି ମୁହିଁ ଜାଗ୍ରତ ସ୍ୱପନ,
ଆସନ୍ନ ପତନମୁଖୀ ଦୁର୍ଦ୍ଦଶା-ଶୈଳର
ତୁଙ୍ଗ ଚୂଳେ ବସି ; ଅହୋ, କି ଅଦ୍ଭୁତ ଭ୍ରମ,
ସ୍ୱପ୍ନ ନୁହେ, ସ୍ୱପ୍ନ ନୁହେ ଏହା, ବାଇଲେ ଯେ
ଆଶା-ବଂଶୀ, ଏହୁ ତ ସେ ଉଷା ପୁରତରେ ।
ଏହା ଭାବି ବର୍ଷି ଅଶ୍ରୁ କହିଲା ଏସନ—
(ନୁହେ ତାହା ଅଶ୍ରୁ—ଚିର ସଙ୍ଗାଳ ଦୁଃଖିର,

ଆନନ୍ଦ କୃତଜ୍ଞତାର ଅବାଧ ପ୍ରବାହ) ।
ପ୍ରଶ୍ନେ, କେଉଁ ଦେବ ତୁମ୍ଭେ, କେମନ୍ତେ ଚହ୍ନିବି
ଅଜ୍ଞାନ-ବିଷାକ୍ତ ନେତ୍ରେ, ନୁହଇ ତ କେବେ
ପର ହାତେ ପ୍ରାଣଦସ୍ତା * ମାନବ ବେଶର,
ଧରିବ ମଣିର ବିଭା କାହୁଁ ବା ମୃତ୍ତିକା ?
ଅଥବା ମୋ ସୌଭାଗ୍ୟର ସୌଭାଗ୍ୟ ଦେବତା
ତୁମ୍ଭେ, କମ୍ବା ବହୁ ଜନ୍ମ ତୀବ୍ର ସାଧନାର
ଆଶାତୀତ ଆକସ୍ମିକ ମହାପୁରସ୍କାର,
ଅବା ଦୟାଦେବୀ, ଧରି ପୁରୁଷ ଆକୃତି,
ବେଦନା-ବିକ୍ଷୁବ୍ଧ ହୃଦେ ଢାଳିବାକୁ ମୋର
କରୁଣା-ଅମୃତଧାରା, ଅବତୀର୍ଣ୍ଣ ଏଥି !
ବିପଦ ଅସ୍ପଷ୍ଟ ଥିଲେ ଆସି ଥରେ ଥରେ
ଦେଇ ଯାଉଥାଏ ଆଶା କେତେ ଆଶ୍ୱାସନା,
ମାତ୍ର ଯେବେ ସ୍ପଷ୍ଟୀଭୂତ ହୁଏ ଦୁର୍ବିପାକ,
ନ ଆସେ ସେକାଳେ ଆଉ, ଯଥା ସୌଦାମିନୀ
ଦେଖାଏ ବିଭ୍ରାନ୍ତ ପାନ୍ଥେ ବୃଷ୍ଟି ପୂର୍ବୁ ପଥ
ଘୋର ଘନଘଟାଚ୍ଛନ୍ନ ତାମସ ଜଣୀଥେ,
ମାତ୍ର ହେଲେ ବୃଷ୍ଟି, ଧନୀ ଲୁଚଇ ଅମ୍ବରେ,
ଏହା ସ୍ୱାଭାବିକ ; ଦେବ, ତେଣୁ ବାରୁ ଆଶା,
ଜୀବନ ସଙ୍ଗୀତ ଛନ୍ଦ ହୋଇ ଥିଲା ମୋର

* ପ୍ରାଣବଲ୍ଲଭ ।

ସ୍ୱରଶୂନ୍ୟ; ବୁଦ୍ଧି ବୃତ୍ତି ଶିଥିଳ ମଳିନ
ଶିଶୁକର ବିଦଳିତ କୁସୁମ ସଦୃଶ ।
ହୋଇ ଯାଇଥିଲି ପାଣି ଦେହରକ୍ତ ଶୋଷକ,
ଏ ଆସନ୍ନ ମୃତ୍ୟୁକାଳେ କି ମନ୍ତ୍ର ପ୍ରଭାବେ
କରି ପ୍ରକୃତିସ୍ଥ ମୋତେ, ଦେଲ ନବ ପ୍ରାଣ,
ବିଷ-ବିଚେଷ୍ଟିତ ଜନେ ଜାଙ୍ଗଳିକ ପ୍ରାୟ,
ତୁମ୍ଭର ଏ ଋଣ, ଦେବ, ନ ପାରିବି ଶୁଝି
ବହୁଜନ୍ମଯାଏଁ ହୋଇ ସେ ପଦ ସେବକ ।
ବଚନଭଙ୍ଗିରୁ ତବ ଉଠୁଛି ଆଭାସି
ଅତୁଳ ସାହସ, ଶୌର୍ଯ୍ୟ, ମାତ୍ର ତାହା ଦେବ,
ହେବନାହିଁ ଲୋଡ଼ା କେଭେ ବେତାଳଦମନେ,
କେବଳ ତୁମ୍ଭର ଧର୍ମ ବଧ ପକ୍ଷେ ତାର
ଅମୋଘ ବ୍ରହ୍ମାସ୍ତ୍ର, ନଷ୍ଟେ ତେଜିବ ସେ ପ୍ରାଣ
ତବ ସନ୍ଦର୍ଶନ ମାତ୍ରେ, ମୋର ଏ ବିଶ୍ୱାସ,
ଯେସନେ ନୃଶଂସ କଂସ କଂସାରି ଦର୍ଶନେ ।
ଅତଏବ ତବ ଆଜ୍ଞା ଶିରୋଧାର୍ଯ୍ୟ ମମ,
ରାଜସଭା ମଧ୍ୟେ ଦେବ, ବିଜେ କର ଏବେ,
ପ୍ରଦାନ ତୁମ୍ଭଙ୍କୁ ପୁତ୍ରେ ଆଣିବି ମୋହର ।

ଏଅନ୍ତେ ବିକ୍ରମାଦିତ୍ୟେ ଘେନି କୁମ୍ଭକାର,
ମିଳି ଯଥାସ୍ଥାନେ, କଲେ ଜଣାମଣା ଏହା—
ଅଚିହ୍ନିତ ଏ ପଥିକ, ଇଚ୍ଛନ୍ତି ରାଜନ୍,

ବେତାଳ ଦର୍ଶନପାଇଁ ପ୍ରକାଶନ୍ତି ପୁଣି
ସାଗ୍ରହ ଆକାଂକ୍ଷା, କହି ଘଟନା ସକଳ
ନଦେଖିଲି ବହୁତ ମୁଁ, ମନ୍ତ୍ର ଏ ତେଜସ୍ୱୀ
ନ ହେଲେ ନିବୃତ୍ତ, ବରଂ ନଭବ ଅନଳ,
ତଥାପି ସେ କରିବ କି ଶୀତଳତା ସ୍ୱୀକାର ?
ଅତଏବ ଏ ଆର୍ତ୍ତର ପୁତ୍ର ଦାନମନ୍ତ୍ରେ
ଗ୍ରହଣ ଏହାଙ୍କୁ କର ପୁତ୍ରଦାନ ମୋତେ ।
ଏ ବଚନେ ରାଜଜାୟା ଧର୍ମସୂତ୍ରଚସ୍ତ
ନୋହି ଅସମ୍ମତ, ଦେଲେ ପୁତ୍ରେ ଗ୍ରୂଢ଼ ତାର ;
ତହୁଁ ରାଜପରିକରେ ମିଳି ସେହି ସ୍ଥାନେ,
କଲେ ସ୍ୱର୍ଣ୍ଣ ନୃପତିଙ୍କ ଶ୍ରୀଅଙ୍ଗ ମାର୍ଜନା,
ସ୍ୱଭାବେ ବିକ୍ରମାଦିତ୍ୟ ରୂପସ ପୁରୁଷ,
ଏହିକାଳେ ରାଜଲକ୍ଷ୍ମୀ ଆସି ଅଲକ୍ଷରେ
ପରଶନ୍ତେ ତାଙ୍କ ଚାରୁ ଶରୀର-ଦେଉଳେ,
ଝଟକିଲା ଶତ ଗୁଣ ଝଳ, ଫୁଲ ଯଥା
ଚନ୍ଦ୍ରିକା ପରଶି ଚନ୍ଦ୍ରହିରଣ୍ୟ * ରଞ୍ଜିମା ।
ଖଞ୍ଜିଲେ ଯା ଅଙ୍ଗେ ରୁକ୍ମ † ରତ୍ନ ଅଳଙ୍କାର
ବେଶକାରେ, ବୃଥା ତାହା, ଆକୃତି ମଧୁର
ଯାର, ତାହା ଶୋଭା ଏକା ଭୂଷଣ ତାହାର
ନିସର୍ଗ-ରୁଚିର, କେଉଁ ଲୋଡ଼ା ତାର ଭଲି

---

* ରୌପ୍ୟ ।   † ସ୍ୱର୍ଣ୍ଣ ।

ଖରଭୂତ ମୃଦ୍‌ବିକାର * କୃତ୍ରିମ ଭୂଷଣେ ?
କାତ ଇନ୍ଦ୍ର ଅଂଶୁ, ମିଶି ନରେନ୍ଦ୍ର ପ୍ରଭାସ
ଦେବେନ୍ଦ୍ରପ୍ରଭାଭା ସହ ପ୍ରକାଶିଲା ଯେଉଁ
ମହାପ୍ରଭାଭର ବିଭା, ମଳିନ ତା' କତ
ବିଶ୍ୱ-ଆସ୍ୟ-ହାସ୍ୟଚ୍ଛବି ଚଣ୍ଡାଂଶୁ-ମୟୂଖେ ।
ଅନନ୍ତର ମନ୍ତ୍ରୀବର୍ଗ ରାଜ-ଉପଗୃରେ
ବସାଇ ବିକ୍ରମାଦିତ୍ୟେ ବିଜେ ସିଂହାସନେ
ନିର୍ବାହିଲେ ରାଜକାର୍ଯ୍ୟ ତାଙ୍କ ଆଜ୍ଞାମତେ ।
ଧରି ନବ ନୃପେ ଅଙ୍କେ ରାଜସିଂହାସନ
ହେଲା ସୁପାବନ, ଯଥା ମଣ୍ଡିତ ବିମାନ
ଦେବତା ପ୍ରତିମା ଯୋଗେ, ହୀରା ମାଳା ଅବା
ଭଦ୍ରାସନଲଗ୍ନ ରତ୍ନେ, ଉଠିଲେ ଉଜ୍ଜ୍ୱଳ
ଦ୍ୱିଗୁଣେ ନୃପତିଙ୍କର ଶ୍ରୀଅଙ୍ଗମୟୂଖେ ;
ପ୍ରକାଶେ ସୁବର୍ଣ୍ଣ ଦୀପ ପ୍ରତିଜ୍ୟୋତ ଯଥା
ବହ୍ନ୍ୟୋଦ୍ଧୃତ ପ୍ରଜ୍ୱଳିତ ଶଳକା ଶିଖାରେ ।
ସମାପି ସଚିବବୃନ୍ଦଂସେ ଦିନର ଯେତେ
ଉପସ୍ଥିତ ରାଜକାର୍ଯ୍ୟ, ଦିବା ଅବସାନେ
ଗମିଲେ ସ୍ୱବାସେ ମାଗି ଶ୍ରୀମୁଖୁ ମେଲାଣି ;
ନବୀନ ନରେଶଙ୍କର କର୍ତ୍ତବ୍ୟପାଟବେ
ମନ୍ତ୍ରିଏ ବିସ୍ମୟ ଭଜ, କଲେ ପରସ୍ପରେ

---

* ମାଟିର ରୂପାନ୍ତର ।

କଲ୍ପନା ଜଳ୍ପନା ବନ୍ଧୁ ; କେ କହିଲା, ଅହୋ,
କି ଅଦ୍ଭୁତ ବୈଚକ୍ଷଣ୍ୟ, କି ସୂକ୍ଷ୍ମଦର୍ଶିତା,
କିଏ ଏହି ଛଦ୍ମବେଶୀ ପୁରୁଷପ୍ରବର ?
ପ୍ରତେ ହୁଏ, ନୁହନ୍ତି ଏ ସାମାନ୍ୟ ମାନବ,
ସମ୍ଭବ କି ନର ପକ୍ଷେ ଏ ଭଳି ପ୍ରତଗ୍ଧ—
ମାତ, ପ୍ରତ୍ୟୁତ୍ପନ୍ନମତ ! କେହି ବା କହିଲା,
କର୍ତ୍ତବ୍ୟେ ଯେ ଶତଚକ୍ଷୁ, ଶତକଣ୍ଠ, ପୁଣି
ଶତହସ୍ତ, ଅତନ୍ତମେ ନରଜ୍ଞାନ ସୀମା
ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟ ଯାଙ୍କ, ନୁହନ୍ତି ତ ସେହୁ
ଦୁର୍ବଳ ଅପୂର୍ଣ୍ଣମତ ଇତର ମାନବ ।
ନିଶ୍ଚେ ଏ ବିକ୍ରମାଦିତ୍ୟ, କାରଣବଶେଷେ
କରଛନ୍ତି ଶୂରମଣି ଆତ୍ମସଂଗୋପନ,
ଦ୍ୱାପରେ ପାବନ ଯଥା ବଧି ବକାସୁରେ
ରକ୍ଷା କଲେ ତା' କବଳୁ ଏକଚକ୍ରା ଗ୍ରାମେ
ତଥା ଏ ତେଜସ୍ୱୀ ପ୍ରାଣେ ବଧାଣି ବେତାଳେ
ପ୍ରକାଶିବେ ଆତ୍ମଶକ୍ତି, ସୁକୀର୍ତ୍ତି ସଂସ୍ଥାପି ;
ଲଭିବ ସଙ୍କଟୁ ଯାହେ ସ୍ୱାତା ଉଜ୍ଜୟିନୀ ।
ଭାଷିଲା ଅପର ମନ୍ତ୍ରୀ, କେଉଁ ପ୍ରୟୋଜନ
ତର୍କଣାରେ, ଭଜ ଧୈର୍ଯ୍ୟ ଥର କାଳଯାଏଁ,
ପ୍ରାତଃକାଳେ ହେବ ଗୁପ୍ତ ରହସ୍ୟ ପ୍ରକଟ ।
ଏ ବଚନେ ସର୍ବେ ତହୁଁ ଭଜ ମୌନବ୍ରତ
ଅଛିଲେ ଅଚରେ ସ୍ୱ ସ୍ୱ ଗନ୍ତବ୍ୟ ସରଣୀ ।

ସମାପି ସାୟାହ୍ନିକ କୃତ୍ୟ ଏଣେ ଐନ୍ଦ୍ର ସୂନୁ,
ଶାଣିତ କୃପାଣ କରେ ମଣ୍ଡି ରାଜାସନେ
ରହିଥିଲେ ଅବହିତ ଶତ୍ରୁ ପ୍ରତୀକ୍ଷାରେ,
ଯଥାକାଳେ ମିଳି ଦୁଷ୍ଟ ଭୀଷଣ ବେତାଳ,
(ଅମାନୁଷୀ ପ୍ରତିକୃତି, ବିକୃତ ବଦନ)
ବିକ୍ରମେ ଧରିବା ଆଶେ ବିସ୍ତାରନ୍ତେ ବାହୁ
ଦେଲେ ସେ ସବଳେ ଠେଲି ବାମ କରେ, ତହୁଁ
ପଡ଼ିଲା ଦୁର୍ଜନ ଦୂରେ କଚ୍ଛୁଡ଼ି ଉତ୍ତାନେ,
ଦେଖି ତା' ବିକ୍ରମାଦିତ୍ୟ କରି ପରିହାସ
ଭାଷିଲେ ସକ୍ରୋଧେ, ଧିକ ଦୁରନ୍ତ ବର୍ବର;
ଏହି ଗୁରୁ ବଳ ଧରି ଏତେ ଆସ୍ଫାଳନ !
"ସ୍ୱଳ୍ପ ବିତ୍ତ ଦରିଦ୍ରର ଗର୍ବର କାରଣ"
ଯଥାର୍ଥ ଏ ଉକ୍ତି, ଦୁଇ ଗୃହ ମୋତ ଯୋଗୁଁ
ଉନ୍ମତ୍ତ ମାତଙ୍ଗ ମୂଢ଼, ସେହି ଗତି ତୋର ।
ଶେଷ ତୋର, ଖଳ, ଆଜ ମାନବ-ପାରଧି,
ସେହି ପାରଧିର ଲକ୍ଷ୍ୟ ହେବୁ ତୁହି ଆପେ,
ହେବ ମହାପ୍ରାୟଶ୍ଚିତ୍ତ ତୋ ମହାପାପର,
ଯେ ଜଘନ୍ୟ ଯାଗ, ଦୁଷ୍ଟ, ଥିଲୁ ତୁ ଆଚରି,
ପିଣ୍ଡ ତୋର ସେ ଯାଗର ହେବ ପୂର୍ଣ୍ଣାହୁତି,
ମୁଁ ହେବ ପୁରୋଧା ତହିଁ, ଦକ୍ଷିଣା ସ୍ୱରୂପେ
ଘେନିବ ରେ ଆଜ ତୋର କଳଙ୍କିତ ପ୍ରାଣ ।

ଘୋର ଏହି ଦୁଷ୍କରଣୀ ଷଡ଼ଯନ୍ତ୍ର ନାଟକେ
କରିବ ସମ୍ପାତ କାଳ ଚିର ଯବନିକା,
ଶୋକର ଅନ୍ତିମ ଶ୍ୱାସ ଗ୍ରହି ଏ ଧରଣୀ
ପୂଜିବ ଆଶାର ପାଦ ନବୀନ ଉତ୍ସାହେ,
ଆଜି ଏହି ବୀରମାତା ଅବନ୍ତୀ ଭାଗ୍ୟରେ
ମହାପରିବର୍ତ୍ତନର ସୌଭାଗ୍ୟ ସୁଦିନ,
ଧର୍ମ ଯଦି ସତ୍ୟ, ସତ୍ୟ ଯଦି ସତ୍ୟ, ତେବେ
ନିଶ୍ଚୟ ସଫଳ ହେବ ମୋର ଏ ବଚନ ।
ଶୁଣି ଏହି ଅରୁନ୍ତୁଦ ସୁତୀବ୍ର ଭର୍ତ୍ସନା
ରୁଷିଲା ବେତାଳ, ତହୁଁ ସେ ତ୍ୱରିତେ ଉଠି
ସବଳେ ବିକ୍ରମାଦିତ୍ୟେ ଧରିଲା ଆକଟି,
ଲାଗିଲା ନିରସ୍ତ୍ର ଯୁଦ୍ଧ, ତୁମୁଳ ଅତୀବ,
ବେନି ବୀରେ ଛନ୍ଦାଛନ୍ଦି ହୋଇ ଭୁଜେ ଭୁଜେ,
ପଦେ ପଦେ, ପିଠାପିଠି ହେଲେ ଶିରେ ଶିରେ,
ଏହିରୂପେ ମଲ୍ଲରଣେ ମାତିଲେ ଉଭୟେ
ଅର୍ଦ୍ଧଯାମଯାଏଁ, ଶେଷେ ହେବାରୁ ଦୁର୍ବଳ
ବେତାଳ, ବିକ୍ରମ ତାକୁ ଫିଙ୍ଗିଦେଲେ ଦୂରେ ।
ଲଭି ପରାଭବ କ୍ରୂର, ହୋଇ ଯୁକ୍ତପାଣି
ଭାଷିଲା ବିନୟେ, ବୀର, ଜାଣିଲି ମୁଁ ଏବେ
ନିଶ୍ଚୟ ବିକ୍ରମାଦିତ୍ୟ ଅଟନ୍ତି ଆପଣ,
ନହୁବା ଜିଣିବ ମୋତେ ଯୁଗାନ୍ତେ ସମରେ,

ଏଭଳି ସାମର୍ଥ୍ୟ ନାହିଁ ମାନବ ସୃଷ୍ଟିରେ ।
ତୁମ୍ଭେ ଇନ୍ଦ୍ରପୌତ୍ର, ତେଣୁ ଜିଣିଲ ସହଜେ,
ବୀରବର, ମାଗୁଛି ମୁଁ ପ୍ରାଣଭିକ୍ଷା ପଦେ,
ପ୍ରକାଶି କରୁଣା କର ଅପରାଧ କ୍ଷମା,
ବୀର ତୁମ୍ଭେ, ବୀରଧର୍ମ ନୁହ ହେ ଅଜ୍ଞାତ,
କ୍ଷମା ସିନା ବୀରଙ୍କର ଗୌରବଭୂଷଣ ।
ଶରଣରକ୍ଷଣ ଏକା ମହତଲକ୍ଷଣ,
ଅଛି ନାହିଁ କେତେ କଷ୍ଟ ସାଗରେ ମନ୍ଦର,
ମାତ୍ର ସେହି ପର୍ବତର ସୁଜାତ ମୈନାକ
ପକ୍ଷଚ୍ଛେ ଶରଣ ଆସି ସୁନାଶିର ଭୟେ,
ସାଦରେ ଆଶ୍ରୟ ତାକୁ ଦେଲା ଅମ୍ବୁପତି ।
ଗୁଣଧର, ତୁମ୍ଭେ ଏକା ପୁଣ୍ୟ ଅବନ୍ତୀର
ଉପଯୁକ୍ତ ରାଜା, କ୍ଷମ ଧୃଷ୍ଟତା ନଷ୍ଟର,
ସାଧିବି ଭବିଷ୍ୟେ ବହୁ ଉପକାର ତବ ।
ଉତ୍ତରିଲେ ବିକ୍ରମାର୍କ, ଭୟ ନାହିଁ ବୀର,
ନରେଖି ତୁମ୍ଭଙ୍କୁ ରଣେ ଏକାନ୍ତ ଅକ୍ଷମ
ଲଭିଛି ମୋ କ୍ରୋଧାବେଗ ପୂର୍ବୁ ଉପଶମ,
ମାନେ ସ୍ୱତଃ ପରଜୟ କୁଶଳତା ହୀନ
ଉଷର ନକଟେ ଅଗ୍ନି, କି କାର୍ଯ୍ୟ ସ୍ତୁତିରେ ?
ବଧୀଏ ଯେ ଅସ୍ତ୍ରଶ୍ରେଷ୍ଠ ବିଜିତ ଶତ୍ରୁରେ,
ସେ ପିଶାଚ, ନରାଧମ, ନାହିଁ ଭେଦ କିଛି

କେତା ବଜ୍ରତର ପ୍ରାଣେ—ଭେଦ ପରସ୍ପରେ,
ପରିଚ୍ଛେଦେ ସମ୍ଭାବନା କେତା ପକ୍ଷେ ମାନ,
ଅତଏବ ଯଥାଇଚ୍ଛା ଗମ ଗିରମଣି ।
ଯେ ଆଜ୍ଞା ଇଙ୍ଗାର ହର୍ଷେ ତହୁଁ ସେ ବେତାଳ
କୁହାର ବଚନେ କଲା ବନ୍ଦୀସୁଗ୍ରହଣ,
ନମିଥ ସମ୍ବନ୍ଧୁଜାଣି ପହୁଡ଼ିଲେ ସବେ ।



## ଷଷ୍ଠ ସର୍ଗ ।



ଅନନ୍ତର ଯଥାକାଳେ ପାହିଲା ଯାମିନୀ,
ପାହିଲା ତା' ସଙ୍ଗେ ସଙ୍ଗେ ଦୁର୍ଭାଗ୍ୟ-ରଜନୀ
ଅବନ୍ତୀର, ବଧୂବର୍ଗେ, ଅଦ୍ୟର ପ୍ରଭାତ
ତାହା ପକ୍ଷେ ପୁନର୍ଜନ୍ମ-ମଙ୍ଗଳ ପ୍ରଭାତ ।
ବିହଗେ ଆଳାପ କଲେ ବିଭାଷରାଗିଣୀ
ମଧୁସ୍ରାବୀ ସ୍ୱରେ, ତହିଁ ମିଶାଇଲେ ସ୍ୱର
ସ୍ୱାଧ୍ୟାୟନିରତ ଯୋଗୀ ପ୍ରଣବ ଓଁକାର ।
ଆହା କି ପବିତ୍ରକାଳ, ତରୁଲତା ଆଦି
ସର୍ବେ ଧ୍ୟାନମଗ୍ନ, ଧନ୍ୟ କାନନକମଳା
ସୁକୁମାରୀ ଫୁଲକୁଳ ଭକ୍ତ ମହାଯୋଗେ,
ବର୍ଷନ୍ତି ଶିଶିର ଛଳେ ପ୍ରେମାଶ୍ରୁ କଣିକା ।
ଭକ୍ତର ପ୍ରେମାଶ୍ରୁ ଆହା କି ଅମୂଲ୍ୟ ଧନ,
କି ଦେବଦୁର୍ଲ୍ଲଭ ନିଧି, କି ପବିତ୍ର ତାହା,
ପୂଜା-ଫୁଲ, ତୁଳସୀ ବା ନିର୍ମାଲ୍ୟଚନ୍ଦନ,
ଅଙ୍ଗେ ବୋଳି ତାକୁ ଅଳି ହେଉଅଛୁ ଧନ୍ୟ ;
ଯଥା ସୁବୈଷ୍ଣବ, ବୋଳି ହୋଇ ଦେହେ, ଶିରେ

କୀର୍ତ୍ତନ-ମଣ୍ଡଳୀ-ପଦଧୂଳି ଭକ୍ତଗଣେ
ମଣନ୍ତି ଆତ୍ମାକୁ ମୁକ୍ତ, କୃତାର୍ଥ, ପାବନ ।
ମଧୁର ପ୍ରଭାତେ ପଡ଼ି ମଧୁର ମୟୂଖ
ଉଷାର, ଘଟିଲା ଯେସନ୍ତେ ହୋଇଗଲା ଆହା
ମଧୁ ପରେ ମଧୁ ବୃଷ୍ଟି, କମ୍ପା ଫୁଟିଗଲା
ଫୁଲ ପରେ ଫୁଲ, ଦଶ ଦିଶିଲା ପ୍ରସନ୍ନ ।
କୁଣ୍ଡିତ ପ୍ରାନ୍ତରେ ଶୋଭେ ଚନ୍ଦାକାରେ ଦ୍ରୁମ
ଠାବେ ଠାବେ, ଆହା କିବା ବେଦିକା ପ୍ରକୃତ,
ଅଙ୍କିତ ବିଶାଳ ବକ୍ଷେ ପ୍ରଣବର ମୁଦ୍ରା
ଚନ୍ଦନେ, ଆଗ୍ରହେ, ଭକ୍ତ ଅନୁରାଗ ସହ !
ଏକାଳେ ବିକ୍ରମାଦିତ୍ୟ ହୋଇ ଶଯ୍ୟୋତ୍ଥିତ,
ସାରି ପ୍ରାତଃକୃତ୍ୟ ହେଲେ ସିଂହାସନେ ବିଜେ,
ଆସି ସଭାସଦେ ତାଙ୍କୁ ନମିଲେ ପଶ୍ଚରେ,
ନମେ ଯଥା ପକ୍ୱଶାଳୀ ହେମନ୍ତେ କେଦାରେ ।
ଭାଷିଲେ ସକଳେ, ପ୍ରଭୋ, ନଶ୍ୱର ଆପଣ
ମହାତ୍ମା ବିକ୍ରମାଦିତ୍ୟ, ନରୁ ଶଙ୍କା କା'ର
ଶାସିବ ବେତାଳ ଦୁଷ୍ଟେ, ଅଗସ୍ତ୍ୟ ବ୍ୟତୀତ
ଶୋଷଣେ କ୍ଷମ ବା କିଏ ଅଗାଧ ସାଗର ?
ଚକ୍ଷୁଷ୍ମାନ ଅନ୍ଧ ଆମ୍ଭେ, ବିଷୟର କୀଟ,
ନ ପାରିଲୁଁ ଚିହ୍ନି ଯାହା ଗୁରୁଙ୍କ ସଦ୍ଗୁଣ
ଦୂଷିକଲୁ ସାଧୁଜନେ, ଆଜ୍ଞା ହେଉ କ୍ଷମା,

ପ୍ରଭୁଙ୍କ ସଂସର୍ଗେ ଏବେ ଲଭିବୁଁ ଯୋଗ୍ୟତା,
ଦେଖି ମଳୟଗିରି ପବନ ସନ୍ନିଧି
ଲଭେ ହୀନ ତରୁ ସୁଦ୍ଧା ଚନ୍ଦନର ଭାବ ।
ପ୍ରଭୁଙ୍କର ରାଜ୍ୟ ଏବେ ପାଳନ୍ତୁ ଶ୍ରୀପ୍ରଭୁ,
ଆମ୍ଭେମାନେ ଆଜ୍ଞାବହ ମାତ୍ର, ଯଥାଦେଶ
ସାଧିବୁଁ କର୍ତ୍ତବ୍ୟ ସର୍ବେ, ଧରଣୀ ଧାରଣ
ଶେଷ ଭୁଜଙ୍ଗର କାର୍ଯ୍ୟ—ନୁହେ ଡୁଣ୍ଡୁଭର ।
ହେର ନୃପ, ଉଜ୍ଜୟିନୀ ପୁରଖାର ଏବେ,
ମାତ୍ର ଏ ଦୁର୍ଦ୍ଦଶା ତାର ମେଣ୍ଟିବ ଅଚିରେ,
ସୁ-ସ୍ଥପତି * ବସନ୍ତର ଅନୁପସ୍ଥିତିରେ
ଘଟିଥାଏ ଯେତେ କ୍ଷତି ତା ବିଳାସଗୃହ
ଏହି ପ୍ରକୃତିର, ଆସି ଦେଖିବାମାତ୍ରେ ସେ
କରି ତା ସଂସ୍କାର, ମଣ୍ଡେ ମଣିମାଣିକ୍ୟରେ ।
ଢାଳିଲ କି ଶାନ୍ତି-ବାରି ଅବନ୍ତୀ ପରାଣେ !
କି ଦ୍ରବ୍ୟେ ପୂଜିବୁଁ ଆଜି ପ୍ରଭୁଙ୍କ ଚରଣ ?
ନାହିଁ କିଛି, ଏଣୁ ଖାଲି ଆନନ୍ଦ-ଲୋତକେ,
ଧୋଇଦେଇ ଶ୍ରୀଚରଣ ମେଣ୍ଟାଉଛୁଁ ଆଶ ।
ଏ ପ୍ରୀତି-ଅଭିନନ୍ଦନ ପ୍ରତ୍ୟୁତ୍ତର ଛଳେ
ଭାଷିଲେ ବିକ୍ରମାଦିତ୍ୟ ସଂକ୍ଷେପେ ଏତିକି—

---

* ପ୍ରଧାନ ଶିଳ୍ପି ।

ମନ୍ତ୍ରିବର୍ଗ, ତବ ଏହି ଆଶାର ସାଫଲ୍ୟ
ତୁମ୍ଭର ମସ୍ତିଷ୍କଜାତ ମନ୍ତ୍ରଣାସାପେକ୍ଷ,
ଅନଳ ସହାୟ ହେତୁ ଅନଳ ପ୍ରବଳ ।
ଜନମ ଆଗମ ବାର୍ତ୍ତା ହେଲା ପ୍ରଚାରିତ
ତଡ଼ିତଗତରେ, ଶୁଣି ନାଗରିକଜନେ
ଏ ମଙ୍ଗଳ ସମାଚାର ଅର୍ପି ଧନ୍ୟବାଦ
ଅନାଦି କରୁଣାମୟେ, ସୌଭାଗ୍ୟେ ନିଜର
ଜୀବନଦୁର୍ଲଭ ସୁଖେ ହେଲେ ସେ ବିହ୍ୱଳ.
ଚିର ଆଶଙ୍କାର ସ୍ମୃତି ବିସୋର ପଲକେ ।
ଉଦ୍‌ଯାପିଥିଲା ନଗରୀ ଯେଉଁ ଆଶା-ବ୍ରତ
ପୁନଶ୍ଚ ଧରିଲା ତାହା ବହୁକାଳ ପରେ,
ବାଳ ବୃଦ୍ଧ ସର୍ବେ ଅଜି ଆଶାର ପୂଜାରୀ
ତାହାର ପ୍ରଦତ୍ତ ମନ୍ତ୍ରେ ଜପିଲେ ତାହାକୁ ।
ଲାଗିଲା ସାଂଟୋପେ ରାଜ୍ୟେ ଆନନ୍ଦ ଉତ୍ସବ,
ଉଡ଼ାଇ ମଙ୍ଗଳଧ୍ୱଜା ନଗର ନିବାସୀ
"ଜୟ ମହାରାଜ ଜୟ ଜନମଆଢ୍ୟ"
ଉଚ୍ଚାରି ଉଚ୍ଚରେ, କଲେ ଶୋଭାଯାତ୍ରା ମୋଦେ ।
କାହିଁ ନୃତ୍ୟଗୀତ, କାହିଁ ଦରିଦ୍ରଭୋଜନ,
କାହିଁ ଦେବାର୍ଚ୍ଚନା, ଗ୍ରହପୂଜା, ଏହିରୂପେ
ନାନା ଅନୁଷ୍ଠାନ ବକ୍ଷେ ଧରିଲା ନଗରୀ ।
ସ୍ମରୁ ହାସ୍ୟଧାରା ଚିର ବିରସ ବଦନ

ପଡ଼ିଲା ଉଚ୍ଛୁଳି, ହୃତ ସୁଖଶାନ୍ତି ତାର
ଆସିଲା ବାହୁଡ଼ି, ହେଲା ଚିନ୍ତା ଦୂରୀଭୂତ ।

ମାହେନ୍ଦ୍ରେ ଆରମ୍ଭ ହେଲା ବିକ୍ରମାଦିତ୍ୟଙ୍କ
ପବିତ୍ର ରାଜତ୍ୱ, ତହିଁ ସଙ୍ଗେ ସୃଷ୍ଟ ହେଲା
ଭାରତ-ଇତିହାସେ ଏକ ନବୀନ ଅଧ୍ୟାୟ
ଉପାଦେୟ । କର୍ମବୀର ଅବତୀର୍ଣ୍ଣ ଆଜି
ମହୀ-କର୍ମକ୍ଷେତ୍ରେ, ମହାନସ୍ମୃତିର ସ୍ରୋତ
ବହିବ ଉଜାଣି, ଏବେ ହସିବ ଉଜ୍ଜ୍ୱଳେ
ଧରଣୀରେ ରତ୍ନରାଜି, ଉଠିବ କବିତା—
ସ୍ୱର ଅବନ୍ତୀର ପ୍ରତି ଲୋମକୂପୁଁ, ଜାଣି
ଏହା ବିଶ୍ୱରାଣୀ ରମା, ଦେବୀ ବୀଣାପାଣି,
ଆଶ୍ରା କଲେ ସ୍ୱତଃ ଆସି ସେ ରମ୍ୟା ନଗରୀ,
ବସନ୍ତ ଆଗମ ଜାଣି ବିଳମ୍ବେ କି କେବେ
ସୁକଣ୍ଠୀ କୋକିଳା, କିମ୍ବା ରସାଳକଳିକା ?
ଆଦର ଆଶ୍ରିଲା ଧର୍ମ, ବହୁଦିନୁ ସେହି
ଲୁଚିଥିଲା ସ୍ଥାନାନ୍ତରେ ଅସହାୟ ହେଉ,
ଲଭି ଏବେ ବିକ୍ରମାଙ୍କେ ପୃଷ୍ଠରକ୍ଷୀରୂପେ
ଆସିଲା ନିର୍ଭୟେ, ଘେନି ଆତ୍ମଜ ଆତ୍ମଜା—

ସତ୍ୟ, ନ୍ୟାୟ, ପ୍ରୀତି, ଭକ୍ତି, ପବିତ୍ରତା ଆଦି ।
ବିକ୍ରମାଙ୍କ ରାଜପଦେ ହୋଇ ଅଧିଷ୍ଠିତ

ଚନ୍ତା କଲେ ଅବନ୍ତୀର ଉନ୍ନତ ଉପାୟ,
ଆଗେ ଚନ୍ତା, ତହିଁ ପଛେ ଚେଷ୍ଟା, ସର୍ବଶେଷେ
କରୁଥିଲେ ସେ ଚେଷ୍ଟାକୁ କାର୍ଯ୍ୟେ ପରିଣତ
ଉଦ୍ୟାନପାଳକ ଯଥା, କରେ ସେ ପ୍ରଥମେ
ବୀଜରୁ ଅଙ୍କୁରୋତ୍ପତ୍ତି, ଅଙ୍କୁରୁ ପାଦପ,
ପାଦପରୁ ଫୁଲ ଫଳ ପର୍ଯ୍ୟାୟକ୍ରମରେ ।
ରାଜ୍ୟର ସେବକ ରାଜା, ନୁହେ ସ୍ବାମୀ କେବେ,
ରାଜପଦ ନୁହେ ଭୋଗ ବିଳାସ ଉପାଧି,
ଗରିମଯ୍ନୀ ପ୍ରଜାଶକ୍ତି ତାହା, ଧରି ମନେ
ଏହି ଭାବ ରାଏ, କାର୍ଯ୍ୟେ ନିରତ ସତତ
ନ ଭଜ ବିଶ୍ରାମ କ୍ଷଣେ । କାହିଁ ବା ବିଶ୍ରାମ
ମହାଜନ ପ୍ରାଣେ, ନ୍ୟସ୍ତ ଯାହା ଶିରେ ସଦା
କୋଟି ପ୍ରଜା ଧନ ପ୍ରାଣ ସଂରକ୍ଷଣ ଭାର,
ଅଛି କି ବିଶ୍ରାମ ତାର ? ହୁଏ ଯଦି କ୍ଷଣେ
ସ୍ଥିର ବାୟୁ, ହେବ ସୃଷ୍ଟି ଜୀବଶୂନ୍ୟ ତେବେ ।
କର୍ମସାଧନହିଁ ପୁଣ୍ୟ, ନିଷ୍କ୍ରିୟତା ପାପ,
ନୋହି ଆଳସ୍ୟର ଦାସ ଗଣାଏ ଯେ ତାକୁ
ଦାସପଣେ, ସେହି ଏକା କର୍ମୀ, ଆନର ଯା
କର୍ମକ୍ଳାନ୍ତ, ମଣେ ସେ ତା ଶାନ୍ତି, ତୃପ୍ତି, ସୁଖ ।
କ୍ରୀଡ଼ାକ୍ଳାନ୍ତ କେବେ କାହିଁ ହୁଏ କି ବାଳକ ?
ପ୍ରତ୍ୟୁତ ସେ ଲିପ୍ତ ହୁଏ ଯେତେକ କ୍ରୀଡ଼ାରେ

ଚେତକ ପ୍ରବୃତ୍ତି ଲଭେ ପ୍ରବୃତ୍ତି ତାହାର,
ଏହିଭାବେ ସାଧେ କର୍ମ ଯେ ନମସ୍ୟ ଜନ
କର୍ମଦେବ ମହାପୂଜାବେଦୀ—ଏ ମହୀରେ
ଛନ୍ଦନ୍ତୁଏ ତାହା ପଦେ ସିଦ୍ଧି ଅଯାଚତେ ।
ନିଗିଲା ରାଜ୍ୟସ୍ଥ ଜୀର୍ଣ୍ଣ ଦୁର୍ଗ, ଦେବାଳୟ,
ତଡ଼ାଗ ସଂସ୍କାର—କାହିଁ ନୂତନ ନିର୍ମାଣ
ବର୍ତ୍ମ ରଥ୍ୟା, କୁଲ୍ୟାଯୋଗେ କୃଷି ବାଣିଜ୍ୟର,
ଘଟିଲା ଉନ୍ନତ କ୍ରମେ, କାହିଁ ଶିଳ୍ପଶାଳା,
କାହିଁ କୃଷିଶାଳା, କାହିଁ ଅନାଥଆଶ୍ରମ,
ଗୋଶାଳା, ଔଷଧାଳୟ, ଶାନ୍ତିରକ୍ଷାଗାର,
ସଭାଗୃହ, ବନ୍ଦଶାଳା, ଧର୍ମାଧିକରଣ,
ପ୍ରଦର୍ଶନୀ ଗୃହ, ହାଟ ବିପଣିବୀଥିକା,
ଅନ୍ନଛତ୍ର, ପାନ୍ଥାଗାର—ପ୍ରଜାଶିକ୍ଷାପାଇଁ
ବିଦ୍ୟାଳୟ, ଗ୍ରନ୍ଥାଗାର, ରଙ୍ଗମଞ୍ଚ ଆଦି
ଯାବତୀୟ ନାଗରିକ ପୂର୍ତ୍ତ ଉପାଦାନେ
ଶୋଭିଲା ନଗରୀ; ହେଲେ ନିୟୋଜିତ ବହୁ
ସ୍ୱଦେଶରକ୍ଷାର୍ଥେ ସେନା ସମରକୁଶଳ ।
ନ ହେଲେ ସୁପ୍ରତିଷ୍ଠିତ ଧର୍ମ ଭିତ୍ତିପରେ
ହୁଏ କାହିଁ ସ୍ଥାୟୀ କଦା କେବଣ ଉନ୍ନତି,
ବାଲିବନ୍ଧ ଅଟ୍ଟାଳିକା ସମ୍ଭାଳିବ କାହିଁ ?
ସଂଯମିତ—ନିୟନ୍ତ୍ରିତ କରେ ଧର୍ମଜ୍ଞାନ

ଯିନା ମାନବଚରିତେ—ସ୍ୱଭାବୋଚ୍ଛୃଙ୍ଖଳ ।
ଜାଣି ଏହା, ଧର୍ମଭାବବୃଦ୍ଧି ଅଭିପ୍ରାୟେ
ପ୍ରକୃତିପୁଞ୍ଜର କଲେ ନିୟୋଜିତ ସବେ
ଧର୍ମଗୁରୁଚୟେ. ଭ୍ରମି ସର୍ବତ୍ର ସେମାନେ
ପ୍ରଚାରିଲେ ନିତ୍ୟ ସତ୍ୟଧର୍ମର ମହିମା ।
ଏହିରୂପେ ସୁସାଧନା ସଂଗୃହୀତ ହେମେ
ତୋଳିଦେଲେ ନବ ଭାଗ୍ୟ-ହର୍ମ୍ୟ ଅବନ୍ତୀର,
ହେଲା ହୃଷ୍ଟପୁଷ୍ଟ ସେହୁ, କୁଅମଳ ତ୍ୟାଗେ
ଅମଳୀ ଶସ୍ୟର ଯଥା, ବିଭତଳ ତରୁ
ନବଶୋଭା, ସୃଷ୍ଟି ଯଥା ମହାବାତ୍ୟା ପରେ ।
ପାଳିଲେ ନୃପତି ପ୍ରଜା ପୁତ୍ରନିର୍ବିଶେଷେ,
ନାହିଁ ଶତ୍ରୁ ମିତ୍ର ଭେଦ,ମିତ୍ରଠାରୁ ବଳି
ଶତ୍ରୁ ପ୍ରତି ପ୍ରକାଶନ୍ତି ସଂପ୍ରୀତି ବିସ୍ତର,
ଯେଣୁ ମହାତ୍ମା, ତେଣୁ ଜାଣନ୍ତି ନିକଷ,
ବଢ଼ାଏ ଅନ୍ଧାର ଯିନା ପ୍ରଦୀପର ପ୍ରଭା,
କେବଳ ସର୍ପର ମଣି ନୁହେ କାର୍ଯ୍ୟକର,
ବିଷ ପୁଚ୍ଛା ସମାବୃତ ସ୍ଥଳବିଶେଷରେ,
ବିନାଶେ ସେ ପ୍ରାଣ, ଏହା ହେଲେହେଁ ନିଦାନ,
ଔଷଧରୂପରେ କରେ ପ୍ରାଣରକ୍ଷା ପୁଣି ।
ବିଶୋଭିଲା ଉତ୍କର୍ଷିମା ରମଣୀୟ ବେଶେ,
ଫୁଲର ପିତୁଳାଟିଏ ଭଳି କିବା ଆହା

ଚିତ୍ର ଫୁଲ ଅଳଙ୍କାର, ଫୁଲର ମୁକୁଟ,
ଜସ୍ମାର ଫୁଲର ହାସ ନର୍ତ୍ତନ ଭଙ୍ଗୀରେ ।
ବାହ୍ୟ ଶୋଭାଠାରୁ ବଳେ ଅନ୍ତରର ଶୋଭା,
ଅନନ୍ତ ଗାମ୍ଭୀର୍ଯ୍ୟ ବୋଳା, ମାଧୁର୍ଯ୍ୟ ହିକତ,
ସ୍ୱାଧୀନତା-ମୁକ୍ତବାୟୁ ଖେଳଇ ଚହଟି,
ଜତର ଉନ୍ନତ-ପୁଷ୍ପ-କୋମଳ-ଆମୋଦ ।
ଯଥା ରାଜା ପ୍ରଜାପ୍ରିୟ, ତଥା ପ୍ରଜାକୁଳ
ରାଜଭକ୍ତ, ଯୋଗ୍ୟ ରାଜା ଯୋଗ୍ୟ ପ୍ରଜା, ଦୁହେଁ
ଯୋଗ୍ୟତାର ପ୍ରାପ୍ୟ ମୂଲ୍ୟ ପରସ୍ପରଠାରୁ
ପରଗ୍ରହ ମଣୁଥିଲେ କୃତାର୍ଥ ନିଜକୁ ।
ଜ ପ୍ରଭେଦ ରାଜା ପ୍ରଜା ଉଭୟ ମଧ୍ୟରେ,
ଯେତକ ପାର୍ଥକ୍ୟ ଅଛି ସମଷ୍ଟି ବ୍ୟଷ୍ଟିରେ,
ତେତକ ପ୍ରଭେଦ ମାତ୍ର, ସେ ପ୍ରଭେଦଟିକ
କଲେକ ଜସ୍ମୋଗ ତନ୍ତୁଁ ବେନିଏ ସମାନ,
ରାଜର୍ଷି ଜନମଙ୍କର ଏ ଚର ଧାରଣା ।
ଜଗ୍ୟଧର ରାଜା ହୋଇ ବହନ୍ତି ଯେ ମନେ
ଏ ଭଳି ମହ୍ୱୋଚ ସାମ୍ୟ, ଦୈନ୍ୟ, ସରଳତା,
ସ୍ପର୍ଶି ରାଜପଦ ତାଙ୍କୁ ଧନ୍ୟ ହୁଏ ଭବେ,
ପ୍ରଣମେ ଜଗତ ତାଙ୍କ ପୁଣ୍ୟ ପାଦମୂଳେ ।
ଜପତ ସଦ୍ଗୁଣରାଶି ଥିଲା ପ୍ରତିଫଳି
ପ୍ରତିପ୍ରଜା ପ୍ରାଣେ, ଯଥା ଶିକ୍ଷକ ସ୍ୱଭାବ

ପ୍ରତପଂଳେ ଅବିକଳ ସୁସ୍ପଷ୍ଟ ହୃଦୟେ,
ପ୍ରଜାଙ୍କ ବିଶ୍ୱାସ—ରାଜା ଦେବତା ତାଙ୍କର,
ପ୍ରବାହିତ ଯେ ଶୋଣିତ ପ୍ରଜାକଳେବରେ,
ନୁହେ ସେ ଶୋଣିତ—ରାଜକରୁଣାପ୍ରବାହ,
ରାଜା ପରମାତ୍ମା, ପ୍ରଜା ଜୀବାତ୍ମାସ୍ୱରୂପ,
ତାହାଙ୍କ ଶାସନଦଣ୍ଡ ଶିରୋଧାର୍ଯ୍ୟ ସଦା
ପ୍ରଜା ପକ୍ଷେ, ବହେ ଶିରେ ଜ୍ୟୋତ୍ସ୍ନାଦଣ୍ଡ ଯଥା
ସାଦରେ ପ୍ରକୃତ, ମଣି ପ୍ରାଣେ ହିତ ତାହା ।
ନିର୍ମଳ ବିଶ୍ୱାସ କେଉଁ, ଏଭଳି ସୁପ୍ରଜା
ଯାର, ସେହି ରାଜା ଏକା ଭବେ ଭାଗ୍ୟବାନ,
ସେହି ରାଜ୍ୟ ମର୍ତ୍ତ୍ୟେ ସ୍ୱର୍ଗ, ମହାତୀର୍ଥ ନିତ୍ୟ ।

ବିକ୍ରମଙ୍କ ସୁପାଳନେ ଦୈନ୍ୟ ହେଲା ଦୂର,
ନ ଭୁଞ୍ଜିଲେ ପ୍ରଜା କେହି ଅଭାବଜନିତ
କ୍ଳେଶ, ସର୍ବେ ସ୍ୱାବଲମ୍ବୀ, ଧର୍ମପରାୟଣ,
ତାହାଙ୍କ ରାଜ୍ୟେ ହିଂସା, ଦ୍ୱେଷ, ପାପ, ପ୍ରତାରଣା,
ବହିଲା ସର୍ବତ୍ର ଶାନ୍ତି-ସଖ୍ୟ-ସ୍ନେହ-ପ୍ରୀତି—
ପୂତସ୍ରୋତ, କଳି ଶବ୍ଦ ହେଲା ବ୍ୟବହୃତ
ଯୁଗଅର୍ଥେ; ମିଥ୍ୟା, କ୍ରୋଧ, ଆଳସ୍ୟ, ସ୍ୱାର୍ଥତା,
ଲୋଭ, ଚୌର୍ଯ୍ୟ, ଅହଙ୍କାର ଏ ଶବ୍ଦ ସକଳ
ପ୍ରଚଳିତ ଅଭିଧାନୁ ହେଲା ବହିଷ୍କୃତ ।

ଲଭିଲା ପ୍ରବଳେ ବୃଦ୍ଧି ସତ୍ୟର ସାଧନା,
ଶରୀରେ ଯନ୍ତ୍ରଣା ଅର୍ପି ନାନା ଓଷାବ୍ରତ
ନ ପାଳି ନଗରବାସୀ ଧରିଲେ ହୃଦୟେ
ଦୟା, କ୍ଷମା, ସାମ୍ୟ, ନିଷ୍ଠା, ସୌଜନ୍ୟ, ଶିଷ୍ଟତା,
ପରୋପକାରାଦି ବ୍ରତ, ବିବୁଧ-ବନ୍ଦିତ ।
କ୍ଷେତ୍ର ଯଥା ଗୁଣେ ନେଇ ବିହନସ୍ୱରୂପେ,
ଅର୍ପେ ଶତଗୁଣ ଶସ୍ୟ, ତଥା ନରମଣି
ଷଷ୍ଠାଂଶ ଗ୍ରହଣ କରି ଉତ୍ପନ୍ନ ଶସ୍ୟର
ରାଜକରରୂପେ, ତହିଁ ପ୍ରକୃତିପୁଞ୍ଜର
ସାଧୁଥିଲେ ବହୁ ସୁଖ ସୁବିଧା ଉପାୟ ।
ମଣନ୍ତି ସେ ରାଜକୋଷ ସଂଗଚ୍ଛିତ ଧନେ
ପ୍ରଜାଙ୍କ ଶୋଣିତ, ତେଣୁ କପର୍ଦ୍ଦକ ତହୁଁ
ନ କରନ୍ତି ବ୍ୟୟ କେବେ ନିଜପାଇଁ ନୃପ,
ବୋଲନ୍ତି, "ପ୍ରଜାଙ୍କ ଧନ ଶଙ୍କରନିର୍ମାଲ୍ୟ ।"
ଦୁର୍ବଳ-ପକ୍ଷପାତିନୀ ତାଙ୍କ ରାଜନୀତି,
ଆଣିଥିଲା ଭାଉଡ଼ାଇ ଯୁଧିଷ୍ଠିର ଯୁଗେ
ସୁଦୂର ଅତୀତ ଗର୍ଭୁଁ । ଅର୍ପନ୍ତି ଯା'କୁ ସେ
ଦଣ୍ଡ, ଦୋଷୀ ଜ୍ଞାନେ, ପୁଣି ପାଳନ୍ତି ତାହାକୁ
ପ୍ରଜାଜ୍ଞାନେ, ଅଛୁ ସତ୍ୟ ଶାସନ କ୍ଷମତା
ପିତାର ସନ୍ତାନ ପ୍ରତି, ମାତ୍ର ବଳେ ତହୁଁ
ପାଳନଦାୟିତ୍ୱ, ଏହା ଥିଲେ ସେ ବିଜ୍ଞାତ ।

ନୁହେ ଅଳଙ୍କାର ରାଜମୁକୁଟ ତାଙ୍କର,
ବରଞ୍ଚ ସେ ଅଳଙ୍କାର ରାଜମୁକୁଟର,
ପଦ୍ମପତ୍ର ଜଳ ମଧ୍ୟେ ଯେତିକ ଅନ୍ତର,
କମ୍ପା ଶାଖୀ ଶାଖା ମଧ୍ୟେ ଯେତେ ବ୍ୟବଧାନ,
ତେତିକ ଅନ୍ତର ରାଏ ମଣନ୍ତି ନିଜକୁ
ପ୍ରଜାଠାରୁ; ପ୍ରଜାପ୍ରାଣେ ମିଶାଇ ସ୍ୱପ୍ରାଣ,
ମହତ ଉଦ୍ଦେଶ୍ୟ ଧରି ଅର୍ପୁଥିଲେ ହାତ
ଯେଉଁ କାର୍ଯ୍ୟେ, ସାଧୁଥିଲେ ଅନାୟାସେ ତାହା,
ସଦିଚ୍ଛାର ପଛେ ପଛେ ଥାଏ ଲୁଚି ସିନା
ସିଦ୍ଧି ଦେବୀଙ୍କର ଶୁଭ ଅବ୍ୟର୍ଥ ଆଶିଷ ।
ପ୍ରଜାପୁଞ୍ଜ ବାଞ୍ଛାବତ ଯେପରି ନୃପତି,
ସେହିପରି ରାଜାଦେଶ ପ୍ରତିଧ୍ୱନି ପ୍ରଜା,
ଆହା, ଗଙ୍ଗା ଯମୁନାର କି ମଧୁ ମିଳନ,
ସେ ପୁଣ୍ୟ ପ୍ରୟାଗ ତୀର୍ଥେ ନିତ୍ୟ ଅବଗାହି
ମଣୁଥିଲେ ପରସ୍ପରେ କୃତାର୍ଥ ନିଜକୁ ।
ସେ ଅମୃତ ସମ୍ମିଳନ ଧାରାର ସ୍ରୋତରେ
ଜୀବନ୍ତ ଜାତୀୟତାର ଜୀବନ୍ତ ଜୀବାଣୁ,
କଲା ରାଜ୍ୟେ ସମୃଦ୍ଧିପ୍ତ-ଗୌରବ-ଗର୍ବିତ,
ଉତ୍କଳ-ଜୀବନୀ-ଶକ୍ତି-ମହିମା-ପ୍ରଭାବେ ।

ମହାପ୍ରାଣ ବଜମଙ୍କ ଯଶ-ଶଙ୍ଖ ଧ୍ୱନି
ବ୍ୟାପିଲା ଚୌଦିଗେ ମିଶି ସଦାଗତି ସହ,

ଜଳିଲା ଉତ୍‌ଶିଖେ ସ୍ନିଗ୍ଧ ସ୍ୱର୍ଣ୍ଣ ଘୃତ ଦୀପ
କୃତଜ୍ଞର, ସେ ଆଲୋକ ଗଲା ଦେଶେ ଦେଶେ ;
ପାଇ ସେ ସଙ୍କେତ ଦୂରୁ ଦୀନ ଦୁଃଖିଚୟ
ଉଲ୍ଲସିମା ଅଭିମୁଖେ ହେଲେ ପ୍ରଧାବିତ,
ତୀର୍ଥ ଉଦ୍ଦେଶ୍ୟରେ ଯଥା ତୀର୍ଥଯାତ୍ରୀଦଳ ।
କେତେ ଅର୍ଥଶୂନ୍ୟ କର ଲଭିଲା ପୂର୍ଣ୍ଣତା,
କେତେ ଦୁର୍ଭାଗ୍ୟର ହେଲା ସୌଭାଗ୍ୟ ଗଠିତ,
ହତାଶ ବଦନେ କେତେ ଖେଳିଲା ଆଶାର
ଜ୍ୟୋତ୍ସ୍ନା ନୃପତିଙ୍କ ଦାନେ, କେ କହିବ ତାହା ।
ଦରିଦ୍ର କ୍ରନ୍ଦନଧ୍ୱନି ପ୍ରବେଶିଲା କ୍ଷଣି
ତାଙ୍କ ସିଂହାସନ ତଳେ, ହେଉଥିଲା ତାର
ଯଥାଯୋଗ୍ୟ ପ୍ରତିକାର ଅନତିବିଳମ୍ବେ ।
ଗଲାଦିନୁ ବୈରୋଚନ, ରଘୁ, ଯୁଧିଷ୍ଠିର
ଦାନବୀରେ, ଉପଯୁକ୍ତ ପୂଜକ ଅଭାବେ
ହୋଇଥିଲେ ଦାନଦେବ ଅନାଥ ସଂସାରେ,
ମାତ୍ର ଏତେ କାଳ ପରେ ଲଭି ସେ ସହାୟ
ବଦାନ୍ୟ ବିକ୍ରମାଦିତ୍ୟେ, ଦେଖାଇଲେ ପୁଣ
ଦୂର ଅତୀତର ସ୍ୱୀୟ ଗୌରବ-ଗରିମା,
ସେ ଅନନ୍ତ ଗରିମାର ଅମୃତ ଆଭାସେ,
ନ ରହିଲା କାହିଁ ବିଶ୍ୱ ପ୍ରକୃତି ବଦନେ
ଦୈନ୍ୟର ଅସ୍ପଷ୍ଟ ପାଣ୍ଡୁ କ୍ଷୀଣତମ ଛାୟା ।

ନ ଥିଲା ଜଗତେ କିଛି ଅଦେୟ ତାଙ୍କର,
ପ୍ରତେ ହୁଏ, କେହି ଯଦି ମାଗିଥାନ୍ତା ପ୍ରାଣ,
ଅକାତରେ ତେବେ ତାକୁ ଅର୍ପିଥାନ୍ତେ ତାହା,
ଅତୁଳକବନ୍ଧ ତାଙ୍କ ରାଜକୋଷ ସଦା ।
ବିପୁଳ ଦାନସାଗର ସୃଜିଥିଲେ ସତ,
ମାତ୍ର ନ ଢାଳନ୍ତି କେବେ ପାଉଁଶରେ ଘୃତ,
ଅଥବା ଦୁଗ୍ଧରେ ମଧୁ । ସାତ୍ତ୍ୱିକ ସେ ଦାନ,
ନୁହେ ତା' ଅଗ୍ରିମମୂଲ୍ୟ ସ୍ତବ ପ୍ରଶସ୍ତିର ।
କେବଳ ଅର୍ଥମୂଳକ ନୁହେ ତାଙ୍କ ଦାନ,
ଆଉ ଏକ ମହାଦାନେ ପ୍ରକୃତିକୁ ଦିଏ
ଅର୍ପି ମହାଧର୍ମୀ ଆଖ୍ୟା କରିଥିଲେ ଧନ୍ୟ,
ପରମାର୍ଥମୂଳକ ସେ ଦାନ, ବ୍ରାହ୍ମଣାଦି
ଚୌବର୍ଣ୍ଣର ଧର୍ମରାଜ୍ୟେ ସମ ଅଧିକାର ।
ବ୍ରାହ୍ମଣ ପଢ଼ିବ ଶାସ୍ତ୍ର, ଉପାର୍ଜିବ ଜ୍ଞାନ,
ହେବ ଅପବିତ୍ର ଶାସ୍ତ୍ର ଶୂଦ୍ରର ପରଶେ,
ଅହୋ ! ଏ କି ଏକମୁଖୀ ନିର୍ଦ୍ଦିଷ୍ଟ ପ୍ରାଧାନ୍ୟ
ଦ୍ୱିଜାତିକୁଳର, ଏ କି କଠୋର ବଞ୍ଚନା,
ବିଦ୍ୟା ସାଧାରଣ ଧନ, କେବଳ ନିଜର
ମଣିବା ତାହାକୁ ଘୋର ବାତୁଳତା ସିନା,
ପବନେ ନିଜସ୍ୱ କରି କେ ପାରିବ ରଖି ?
ନୁହେ କି ମାନବ, ଭଲା ଯେ ବ୍ରାହ୍ମଣେତର ?

ପ୍ରତ୍ୟେକ ମାନବ ଦେହ ପରମାତ୍ମାଙ୍କର
ପବିତ୍ର ମନ୍ଦିର, ନାହିଁ ଉଚ୍ଚ ନୀଚ ଭେଦ,
ମଣେ ଯେ ବ୍ୟତ୍ୟସ୍ତ ଏହା, ସ୍ୱାର୍ଥକୀଟ ସେହୁ,
ଅଜ୍ଞାନ, ଦୁର୍ବଳଚିତ୍ତ, ସମାଜକଣ୍ଟକ ।
ଅପବିତ୍ରତା ଆରୋପ ଧର୍ମଶାସ୍ତ୍ର ପ୍ରତି
ନିତାନ୍ତ ଅବିମୃଷ୍ୟତା, ଆବର ନଷ୍ଟସ୍ୟ
ଶାସ୍ତ୍ରର ଅବମାନନା ; କରି ପାରେ ଯେହୁ
ଅପବିତ୍ରେ ସୁପବିତ୍ର, ସମ୍ଭବେ କିରୂପେ
ଅଶୁଦ୍ଧତା ତାର, ହୁଏ ଲୌହ ସିନା ସୁନା
ଅସ୍ପୃଶ୍ୟାନ୍ତ ସ୍ପର୍ଶେ, ମାତ୍ର ଅସ୍ପୃଶ୍ୟାନ୍ତମଣି,
ଲଭେ କି ଅସ୍ପୃଶ୍ୟଭାବ ଅସ୍ପୃଶ୍ୟ ପରଶେ ?
ଶ୍ରେଷ୍ଠ କାର୍ଯ୍ୟ ଅଧିକାରୀ କେବଳ ବ୍ରାହ୍ମଣ,
ବ୍ରାହ୍ମଣ କି ବିଧିସୃଷ୍ଟ ଏକା ଏ ସଂସାରେ,
ଆନ ଉପଦେବସୃଷ୍ଟ, ଅଭିଶପ୍ତ ଅବା ?
ଏହି କି ବ୍ରାହ୍ମଣ୍ୟ ଧର୍ମ, ନାହିଁ ସାମ୍ୟ ନୀତି
ଯହିଁ, ନୁହେ ଯେ ଧୂପିତ ପ୍ରୀତି-ମୈତ୍ରୀ-ଧୂପେ,
କେବଳ ଆତ୍ମାଭିମାନ, ନୀଚ ପ୍ରତାରଣା
ଯାର ମୂଳଭିତ୍ତି, ଧର୍ମ ଯେବେ ସେହୁ, ତେବେ
କୋଟିଗୁଣେ ଶ୍ରେୟ ବରଂ ଅଧର୍ମୋପାସନା ।
ଯେ ଜାତି ଦେଖାଇ ମହାତ୍ୟାଗର ଆଦର୍ଶ
ମଣ୍ଡି ଥିଲେ ଯଶୋଜ୍ଜ୍ୱଳ ଗୌରବ-କିରୀଟ

ଆର୍ଯ୍ୟସମାଜର ଶିରେ, ହାୟ, ସେହି ଜାତି,
ହୋଇ ଏବେ ସ୍ୱାର୍ଥପର, ପରଶ୍ରୀକାତର,
ବୋଳିଲେ କଳଙ୍କ-କାଳି ସମାଜ ବଦନେ ।
ବିଶ୍ୱହିତେ, ଦେବହିତେ ତେଜିଲେ ଶରୀର
ମହର୍ଷି ଦଧିଚୀ ମୁଦେ, ଏହାଠାରୁ ବଳି
ତ୍ୟାଗର ଦୃଷ୍ଟାନ୍ତ ଆନ କି ଅଛି ମହୀରେ ?
ତାଙ୍କ ବଂଶଧରେ, ଏବେ ଅର୍ପି ଜଳାଞ୍ଜଳି
ସେ ପୈତୃକ ଯଶେ, କଲେ ସ୍ୱାର୍ଥକୁ ସଙ୍ଗାଳି ।
ଉଦର ସେବାର୍ଥେ ପୁଣି ସୃଜି ଧର୍ମ ନାମେ
ଅଧର୍ମ ଆଗ୍ବର, ନାନା, ପ୍ରେତବଳି ଆଦି
ବୃଥା କୂଟକାଣ୍ଡେ, (ସର୍ବେ ଅକର୍ମସେବକ)
ଛନ୍ଦି ନାନା କର୍ମ-ଜାଲେ ସମାଜ ପଦ୍ମରେ,
ଶୋଷି ନାନାଭାବେ ରସ ହୃଦୟୁ ତାହାର
ରଖିଛନ୍ତି କରି ତାକୁ ଅଥବ ଅସାଡ଼,
ହୋଇ ସମଦଶାପନ୍ନ, ନଖଟୁପଣରେ
ଅଧୋଗତକୁ ପ୍ରାଧାନ୍ୟ ମଣି ଭ୍ରାନ୍ତେ ହାୟ !
ଏ କି ସାମାନ୍ୟ ଦୁର୍ଭାଗ୍ୟ, ସ୍ୱଳ୍ପ ଅନୁତାପ !
ନ ଛୁଟିଲେ ଦ୍ୱିଜାତିର ଏ ସ୍ୱାର୍ଥ-ଶିକୁଳି,
ଦେଶର ବା ସମାଜର କାହିଁ ଛି କଲ୍ୟାଣ ?
ଧର୍ମର ଏ ସଂକୀର୍ଣ୍ଣତା ଅଧଃପାତହେତୁ,
ଆର୍ଜବ-ବର୍ଜିତ ଯେଉଁ ଧର୍ମର ସରଣୀ.

ବିସ୍ତୃତ ଯାହାର ସୀମାବନ୍ଧ, ଅପୂର୍ଣ୍ଣ ସେ,
ଖର୍ବ ଏହା ନୃପ, ଦେଲେ ରାଜ୍ୟରେ ଘୋଷଣା—
"ବ୍ରାହ୍ମଣ ପ୍ରାଧାନ୍ୟ ହେଲା ଆଜହୁଁ ରହିତ,
ଶାସ୍ତ୍ରପାଠେ ନ ରହିବ ଆଉ ତାହାଙ୍କର
ଏକାଧିପତ୍ୟ, ସକଳେ ଜାତି ନିର୍ବିଶେଷେ
ହେବେ ଅଧିକାରୀ ତହିଁ, ସମଭାବେ ସଦା ।'
ଶୁଣି ଏ ମଙ୍ଗଳାଦେଶ ନାଗରିକଜନେ
ପୁଲକ-ପ୍ରଫୁଲ୍ଲ କଣ୍ଠେ ବିକ୍ରମଙ୍କ ନାମେ
ଉଚ୍ଚାରିଲେ ଧନ୍ୟ ଧନ୍ୟ ଜୟଜୟକାର ।
ଏହିରୂପେ ଛେଦି ଚଣ୍ଡ ସ୍ୱାର୍ଥାଗ୍ରହ-ତରୁ,
(ବହୁକାଳୁଁ-ବଦ୍ଧମୂଳ, ଶାଖା-ପ୍ରଶାଖିତ)
କୁସଂସ୍କାର ଆକ୍ରମଣୁ ରଖିଲେ ସମାଜେ,
ରଖେ ଯଥା ପ୍ରଭଞ୍ଜନ ଘଉଣ୍ଡ ଭ୍ରମରେ
ନିଖିଳ ଲାବଣ୍ୟରାଶି ସୁରଭି ସୁମନେ ।
ଦୂର କରି ଆବର୍ଜନା ସମାଜ-ଦେଉଳୁ,
ବିଶୁଦ୍ଧ ସଂସ୍କାର—ଚୂନ ଚଢାଇଲେ ତହିଁ,
ହେଲା ପୁନ ଦୀପ୍ତ ସତ୍ୟ ଧର୍ମର ମହିମା ।

ଥିଲା ପର ଉପକାର ବିକ୍ରମାର୍କଙ୍କର
ଆଶୈଶବ ଧୃତବ୍ରତ, ପାଇଲେ ସେ ତାହା
ହୁଅନ୍ତି ଆତ୍ମାବିସ୍ମୃତ, ଭୁଲିଯାନ୍ତି ପୁଣି

କ୍ଷୁତ୍ପିପାସା, ନିଦ୍ରା, ମଣି କୋଟିନିଧିଲାଭ,
ଜୀବନର ଏକମାତ୍ର ପ୍ରିୟ ସେ ତାଙ୍କର ।
ଏହି ବ୍ରତ ହେତୁ ତାଙ୍କୁ ସଙ୍କଟ କବଳେ
ପଡ଼ିବାକୁ ହେଉଥିଲା କେତେ କେତେ ଥର,
ମାତ୍ର ତାହା ନ ଛୁଡ଼ିଲେ ତେବେ ସୁଦ୍ଧା ରାଏ ।
ଜଳେ ବହ୍ନି କରି ପାରେ ବରଂ ତନୁତ୍ୟାଗ,
ତଥାପି ନ କରେ ସ୍ୱୀୟ ଉଷ୍ଣତା ବର୍ଜନ ।



# ସପ୍ତମ ସର୍ଗ ।



ଦିନେ ରାଜକାର୍ଯ୍ୟ ଶେଷେ ବିକ୍ରମ ଭୂପତି
ଫେଇ ରାଜପରିଚ୍ଛଦ ଦେହୁଁ, ବିଜେ ହେଲେ
ବିଶ୍ରାମମଣ୍ଡପେ, ଦିବା ଅବସାନେ ଯଥା
ନଭ-ଦରବାର ତେଜି ଦିନେଶ ଭାସ୍କର
ପ୍ରାଚୀ ଗନ୍ତାଘରେ ରଖି ପ୍ରଭା-ପରିଚ୍ଛଦ
କ୍ଳାନ୍ତ ବିଶ୍ରାମ ଯାଇ ଅସ୍ତଗିରିକୋଳେ ।
ଦେଖୁଛନ୍ତି ବସି ରାଏ ପ୍ରକୃତିରାଣୀର
ହାସ୍ୟମୟୀ ମଧୁରିମା ଉଦ୍ଧତ ମାନସେ,
ଝାଡ଼ି ସମୀରଣ ବୃକ୍ଷୁ ପକ୍ୱ ପର୍ଣ୍ଣ, ଫୁଲ
ଭେଟୁଛି ଶ୍ରୀମୂରେ ତାହା ମଣି ମୁକ୍ତା ବ୍ୟାଜେ ।
ବିସ୍ତାରି ଗୋଧୂଳି ଧନୀ, ପଙ୍କଜ-ପାଟଳା,
ଶୀତଳ କିରଣରୂପ ପ୍ରବାଳ-ରସନା
ଲିହିଲା ସରାଗେ ସୃଷ୍ଟି, ଲିହେ ଯଥା ଗାଭୀ
ନିମଜ୍ଜି ବାତ୍ସଲ୍ୟ ରସେ ବତ୍ସତରୀ-ଦେହ ।
ଧୂମ-ଧୂସରିତ-କରେ ଧୀରେ ସନ୍ଧ୍ୟାଦେବୀ
ପ୍ରଦାନିଲେ ଧରଣୀକୁ ମହା ଆଲିଙ୍ଗନ,

ସେ ଅନନ୍ତ ମିଳନର ନିର୍ବାଣ-ଗୀତିକା
ଗାଇଲେ ଅମୃତ କଣ୍ଠେ କୌଶିକ କୌଶିକୀ—
ସାନ୍ଧ୍ୟ ନୀରବତା- ବକ୍ଷ ମୁଖରି ସଘନେ ।
ଏ ସମୟେ ଉପସ୍ଥିତ କାପାଳିକ ଏକ,
ଘୋର କୃଷ୍ଣବର୍ଣ୍ଣ, ଯଥା ପାଷାଣ ବିଗ୍ରହ,
ଶୀର୍ଣ୍ଣକାୟ, ନୁହେ ଡେଙ୍ଗା ଅଥବା ବାଙ୍ଗର,
ତାମ୍ରତାର ସମ ଦିଶେ ଶ୍ମଶ୍ରୁ, ଲୋମାବଳୀ,
ଲମ୍ବିତ ପିଙ୍ଗଳ ଜଟା ଆଶୀର୍ଷ ପଦ୍ୟର,
ନ୍ୟଗ୍ରୋଧ ପ୍ରରୋହ * ପ୍ରାୟ, ନେତ୍ରଦ୍ୱୟ କି ସେ
ପ୍ରଦୀପ୍ତ ପାବକ ଗର୍ତ୍ତ, ବିନିଃସୃତ ତହୁଁ
କଠୋରତା ବିମିଶ୍ରିତ ବିଶ୍ଳେଷିକା ଜ୍ୟୋତି ।
ଆଶିଷି ନରେଶେ ଯତି ଭାଷିଲା ଏସନ—
ମହାରାଜ, ଧନ୍ୟ ତୁମ୍ଭେ ରାଜନ୍ୟସମାଜେ,
ତବ କର୍ମ ବ୍ରତ, ତବ ଅତୁଳ ସାଧନା
ରଖିଛୁ ଏ ଭାରତର ମହତ୍ତ୍ୱ ଅକ୍ଷତ ।
ଜନ୍ମସ୍ରୋତେ ଭାସି ଆସି ଅସଂଖ୍ୟ ମାନବ
କେବଳ ଅଜ୍ଞାତ ଦେଶୁ ଭବେ ଅବିରତ
ଯାଉଛନ୍ତି ପୁଣି ମୃତ୍ୟୁସ୍ରୋତେ ଭାସି କେଉଁ
ଅନିର୍ଦ୍ଦେଶ୍ୟ ଦେଶେ, ଅର୍ପି ସତ୍ତ୍ୱା ଆପଣାର
ଧ୍ୱଂସ-ଯନ୍ତ୍ରେ ପୂର୍ଣ୍ଣାହୁତିରୂପେ, ଏହିରୂପେ,

* ବରଗଛର ଓହଳ ପ୍ରାୟ ।

ଲାଗିଅଛି ସକଳର ଗମନାଗମନ,
ମାତ୍ର ଯେଉଁ କୃତୀ ଆସି ନ ଯାଏ ବାହୁଡ଼ି,
ଦେଖି ଯେହୁ ଭବିଷ୍ୟତ ଜୀବନର ଛାୟା
ଅତୀତ-ଦର୍ପଣେ ହେଉଥାଏ ଅଗ୍ରସର
ସଦା ସ୍ୱୀୟ ଜୀବନର ପୂର୍ଣ୍ଣତା ସାଧନେ,
ସେ ଧନ୍ୟ, ବରଣ୍ୟେବର, ଶତ ଧନ୍ୟ ତାର
ଜନୟିତ୍ରୀ,ଜନ୍ମଭୂମି, ଆବର ଜନକ ।
ଶାରୀରିକ ଉପାଦାନେ ନାହିଁ ଭେଦ କିଛି
ମାନବ ମାନବ ମଧ୍ୟେ, ଭେଦ ଖାଲି ଗୁଣେ,
ବିନିର୍ମିତ ଯେଉଁ କାଷ୍ଠେ ଦେବତା ପ୍ରତିମା,
ସେହି କାଷ୍ଠ ହୁଏ ପୁଣି ଶ୍ମଶାନ ଇନ୍ଧନ ।
ପରମ ଧାର୍ମିକ ତୁମ୍ଭେ, ପର ଉପକାରୀ,
ହିମାଦ୍ରି ବିରାଟ ବିଶ୍ୱ ପ୍ରକୃତି ମଧ୍ୟରେ,
ମାତ୍ର ତାହା ଯଶ-ଶୈଳ ତୁଳନାରେ ତବ
ଖର୍ବାକୃତି, ଯଥା ଗିଲ ବେଲ ତୁଳନାରେ,
ସନ୍ନ୍ୟାସୀ ମୁଁ, ବ୍ରତ ମୋର ତୀର୍ଥପର୍ଯ୍ୟଟନ,
ସମଗ୍ର ଭାରତ ଭ୍ରମି ଶୁଣିଛି ତୁମ୍ଭର
ସର୍ବତ୍ର ପ୍ରଶଂସା-ଭେରୀ-ମଧୁର ନିସ୍ୱନ,
ମାତ୍ର କାହିଁ ଶୁଣି ନାହିଁ ନିନ୍ଦା ଅପବାଦ,
ଆସିଛି ମୁଁ ଏଣୁ କିଛି ଉପକାର ଆଶେ,
ଆଜ୍ଞା ହେଲେ ନିବେଦିବି ଉଦ୍ଦେଶ୍ୟ ଛାମୁରେ ।

ଉତ୍ତରିଲେ ବନମାର୍କ, ଯତି, ପଣ ମୋର
ଏହା, ଯେ ଯାଚକ ଯେବେ ଯେଉଁ ଉପକାର
ମୋ ସମୀପେ, ହେଉ ପଛେ ସାଧ୍ୟାତୀତ ତାହା,
ପ୍ରାଣପଣେ ଯତ୍ନପର ହେବ ସେ କରମେ,
ବ୍ରତ ମୋର ଏହା, ଯଥା ତପସ୍ୟା ତୁମ୍ଭର,
ପୁଣ୍ୟର ସରଳ ପଥ ମୋ ପକ୍ଷେ ଏହାହିଁ ।
ତପ, ଜପ, ଯଜ୍ଞ ଆଦି ଧର୍ମ ଅନୁଷ୍ଠାନ
ମହାନକାଞ୍ଚନେ ଶିବ ସାଧନା ସାପେକ୍ଷ,
ମାତ୍ର ଯେ ସନ୍ତରେ ସଦା ଭବ-ସାଗରର
କୋଳାହଳ ତେଉ ପରେ, କାହିଁ ନିକାଞ୍ଚନ
ଶ୍ରେୟ ତାର ? ନୁହେ ଏହା ତପୋବନ, ଋଷି,
ଏ ଯେ ରାଜ୍ୟାଶ୍ରମ, ଶାନ୍ତି-ମୃଗ ନ ବିଚରେ
ଏଥି, ଧନ୍ୟ ତୁମ୍ଭେ, ଧନ୍ୟ ବାସସ୍ଥାନ ତବ,
ଆକାଙ୍କ୍ଷାର ଆକାଙ୍କ୍ଷିତ ସ୍ଥଳୀ, ସୁପାବନ ।
ଆଶାରେ ନୈରାଶ୍ୟ ନାହିଁ ତହିଁ, ନାହିଁ ପୁଣି
କର୍ମରେ ସ୍ୱାର୍ଥର ସ୍ପୃହା— ବିଷ-ବିସର୍ପିତ.
ବିଷୟ-ଜଞ୍ଜାଳ ବୃକ୍ଷେ ଶୋକ ତାପ ଫଳ
ନ ଫଳେ ସେଠାରେ କେବେ. ହେଲେହେଁ ସେ ସ୍ଥାନ
ଧରା ଅନ୍ତର୍ଭୁକ୍ତ, ମାତ୍ର ସ୍ୱତନ୍ତ୍ର ତାଠାରୁ ।
ପାରଧିରେ କ୍ଳାନ୍ତ ହୋଇ ଦିବା ଅବସାନେ
ପ୍ରବେଶିଲି ତପୋବନେ କାଲି, ଦେଖିଲି ତାଳ

କି ଅନାସ୍ୱାଦିତ ସୁଧା କଏ ପ୍ରାଣେ ଯଥା,
ଆହା, ପ୍ରକୃତିର କିବା ବିଶୃଙ୍ଖଳ ଶୋଭା—
କି ଦୁଃଖପାଶୋର ମୂର୍ତ୍ତି—ନୟନ-ମୋହନ,
ନାହିଁ ହିଂସା- ପିଶାଚୀର କ୍ରୂର ଅଭିନୟ,
ପଶୁ, ପକ୍ଷୀ ସର୍ବେ ତହିଁ ଯତିବ୍ରତଧାରୀ,
ଅଧିଷ୍ଠିତ ପ୍ରୀତିଦେବୀ ଶାନ୍ତ- ସିଂହାସନେ,
ମଣ୍ଡି ଶିରେ ସ୍ନେହ-ମୈତ୍ରୀ-ମକୁଟ ଅଂଶୁଳ ।
ଋଷି ଶିଶୁକୁଳ ବସି ଅଜିନ ଆସନେ
ରତ ବେଦାଭ୍ୟାସେ, ବାଳକଣ୍ଠସମୁତ୍ଥିତ
ସେ ମଧୁର ଛନ୍ଦ କର ଅନୁକୃତ ଶୁକ—
ଅନୁକୃତପଟୁ, ଗାଏ ତରୁଶାଖେ ବସି ।
ବସିଛି ନୀବାରସ୍ତୂପ ଆଶ୍ରମପ୍ରାଙ୍ଗଣେ
ସୃଷ୍ଟି ଦେବାଳୟ ପ୍ରାୟ, ଓଷ୍ଠାର ତହିଁରୁ
କେଶଏ କେଶଏ ତୃଣ କୋମଳ ଦଶନେ
ସ୍ତନ୍ୟପାୟୀ ମୃଗଶିଶୁ କରୁଛି ଅଭ୍ୟାସ
ଭାବୀ ଜୀବନର ବୃତ୍ତି, ଶିଖୁଛି ନୀରବେ
ସେ ମହା ଅଗୁରୁ ବିଦ୍ୟା ନିଜେ ନିଜଠାରୁ ।
କାହିଁ ଋଷିବାଳା ବସି ଆଶ୍ରମ ଦୁଆରେ,
(ବ୍ରତଶ୍ରୀବଳୟକର, ପ୍ରକୃତ୍ୟୁପାସିକା)
ଛନ୍ଦି ସୁକୋମଳ ବାହୁ ମୃଗବଧୂ ଗଳେ,
ଭୁଞ୍ଜାଏ ଆଦରେ ତାକୁ ନୀବାର ତଣ୍ଡୁଳ,

ସ୍ୱଭାବଚପଳା ମୃଗୀ, ଯୁହେଁ ଇତସ୍ତତଃ
ତରଳନୟନେ ଯେବେ ଟେକ ଭକ୍ଷ୍ୟ ପାନ୍ତୁ
ମୁଖ, ବ୍ୟର୍ଥ ଭୟେ, ତେବେ ସରଳା ବାଳକା,
ଯୁହେଁ ସ୍ନେହ-ରୋଷ-ମିଶା ମଧୁର ଯୁହାଣି,
ସେ ନବୀନ ତରସ୍ୱାରେ କୁରଙ୍ଗିଣୀ ଧନ୍ୟା
ଫେରାଇ ବଦନ ରଖେ ଭକ୍ଷ୍ୟ ପାଶେ ଆଣି ।
କାହିଁ କୁମାରୀଏ ମିଳି ସିଞ୍ଚନ୍ତି ସଲିଳ
ପୁଷ୍ପିତ ପାଦପ ମୂଳେ, ଶିରେ ଝଡ଼ପଡେ
ଟୋପା ଟୋପା ଜଳବିନ୍ଦୁ କୁସୁମ ଉପରୁ,
ଆହା କିବା ରୂପରାଶି ରମ୍ୟା ସୁମନାର
ଉର୍କସ୍ଥଳ ହାସରାଶି ଝରୁଛି ତରଳ !
ଝରୁଅଛି ତାହା ସହ ସ୍ନେହ-ହାସ୍ୟ-ସୁଧା
ପୁଷ୍ପାଙ୍ଗୀ ବାଳିକାକୁଳ ବନ୍ଧୁଲି-ଅଧରୁ ।
ଉଠୁଛି ଆଶ୍ରମୁ ହୋମଗନ୍ଧ, ମିଶି ତହିଁ
ନାସ୍ତିକ ବଦରୀସିଦ୍ଧ ମଧୁର ଆମୋଦ
ହୁଏ ଅତି ଉପାଦେୟ, ଘ୍ରାଣ-ରସାୟନ ।
ଆଜ ଟୋ ବନ୍ଦିନା, ଋଷି, କ ଆଦେଶ ତବ
ବଖାଣ ସତ୍ୱର, ତାହା ପାଳିବ ନିଶ୍ଚୟ ।
ଭାଷିଲ ସନ୍ନ୍ୟାସୀ—କାଲି କୃଷ୍ଣା ଚତୁର୍ଦ୍ଦଶୀ,
କରିବ ନଶୀଥେ ଯାଗ, ବଳିଦାନ ଆଦି
ଶ୍ମଶାନେ, ସରିବ ଶବସାଧନା ମୋହର,

ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟ ଲଭିବି ମୁଁ ତହିଁ,
ମହାରାଜ, ହେବ ତୁମ୍ଭେ ଉତ୍ତରସାଧକ,
ସେ କାର୍ଯ୍ୟ କଠିନ ବଡ଼, ଅସାଧ୍ୟ ଅନ୍ୟର,
ନିଖିଳଗୁଣଙ୍କ ତୁମ୍ଭେ, ପରମଧାର୍ମିକ,
ସର୍ବଥା ଶମନେ ସୁଦ୍ଧା ନାହିଁ ତବ ଭୟ,
ତୁମ୍ଭେହିଁ ରାଜନ ଏକା ସେ କାର୍ଯ୍ୟସାଧନେ ।
ଶୁଣି ତହୁଁ ମୃଦୁହାସ୍ୟେ ଭାଷିଲେ ନରେଶ—
ଅହୋ, କି ଆଶ୍ଚର୍ଯ୍ୟ, ଋଷି, ହେବ କି ହେ ଭଲ
ତପ୍ତ ବୈତରଣୀ ପାର ଶବ—ନାବେ ବସି,
ଐଶ୍ୱର୍ଯ୍ୟେ ଆସକ୍ତ କିପାଁ, ଉପେକ୍ଷି ଈଶ୍ୱରେ ?
କହିଲା ସନ୍ନ୍ୟାସୀ ତହୁଁ—ନୃପ, ଅଛି ବିଧି
ତନ୍ତ୍ରଶାସ୍ତ୍ରେ—ବଳିଦାନ, ଶବସାଧନାର ;
ଧର୍ମର ଅସଂଖ୍ୟ ପଥ, ଉଦ୍ଦେଶ୍ୟ ଗୋଟିଏ;
କେହି ଗମେ ଋଜୁପଥେ, କେହି ବା କୁଟିଳେ,
ମାତ୍ର ସର୍ବ ତଟିନୀର ଲକ୍ଷ୍ୟ ବାରିନିଧି ।
ଧର୍ମର ଅସଂଖ୍ୟ ପଥ, ଯଥାର୍ଥ, ତାପସ,
ଉଦ୍ଭବିଲେ ଅବନ୍ତୀଶ, ମାତ୍ର ଧୃତ ପଥ
ତବ ନୁହେ ସୁଦ୍ଧା, ଯତି, ଅତ୍ୟଧମ ପଥ
ଧର୍ମସାଧନର, ତାହା ଭୌତିକ, ତାମସ
ଜଘନ୍ୟ ବର୍ବରଲୀଳା, ଅନାର୍ଯ୍ୟ ଆଚାର ।
ଅହିଂସା ପରମ ଧର୍ମ—ସର୍ବଧର୍ମମତ,

ମାତ ଯାର ମୂଳଭିତ୍ତି ହତ୍ୟା, ନିଷ୍ଠୁରତା,
ନାହିଁ ଯହିଁ ସ୍ନେହ, ମାୟା, ଦୟା, ପ୍ରୀତି, ଗୀତ,
ଧର୍ମ ନୁହେ ତାହା—ପାପଛଦ୍ମ ସଞ୍ଜ୍ଞା ସିନା ।
କାହିଁ ବ୍ରହ୍ମଯୋଏ ହେବ ଯାହାଙ୍କ ସର୍ଜନା,
ତାଙ୍କ ପୁତ୍ର କନ୍ୟା ଅର୍ପି ବଳିରୂପେ ତାଙ୍କୁ,
କରିବ କି ତାହାଙ୍କର ସନ୍ତୋଷ ସାଧନ ?
ପଶୁ ବଳି ଅର୍ଥ, ଯତି, ସ୍ବତନ୍ତ୍ର ପ୍ରକାର—
ସଂଯମହିଁ ମହାଯଜ୍ଞ, ପଶୁବଳି ତହିଁ
ମାନବର ପଶୁଭାବ—କାମ, କ୍ରୋଧ ଆଦି ।
ତନ୍ତ୍ର ଶବସାଧନାର ଅର୍ଥ ଶୁଣ ଏବେ—
ସାଧକ ତନ୍ମୟ ଚିତ୍ତେ କରିବ ସାଧନା,
ହେବ ଆତ୍ମଜ୍ଞାନଶୂନ୍ୟ, ନିସ୍ପନ୍ଦ ନିଶ୍ଚଳ
ଶବ ପରି, ସଂକ୍ଷେପତଃ ସମାଧି ଯା' ନାମ,
ସେହି ତ ଶବସାଧନା, ହେଲ ଅବଗତ ।
ନ ବୁଝି ପ୍ରକୃତ ମର୍ମ ତାନ୍ତ୍ରିକ ଚତୁର,
କରୁଛ ହତ୍ୟାରେ ଖାଲି ବିକୃତ ତାହାକୁ ।
ଏହି ଯେ ପ୍ରକୃତି, ଏହା ପ୍ରତି ଲୋମକୂପେ
ବହ୍ନାକେ ଅନନ୍ତ-ଭୂମା-ଅନନ୍ତ-ମହିମା,
କେତେ ମହାତତ୍ତ୍ୱ ରତ୍ନ ରହିଛି ଲୁଚିତ
ଏହା ଅନ୍ତରାଳେ, ଭକ୍ତି, ଏ ପ୍ରତ୍ୟକ୍ଷୀଭୂତ
ଅସ୍ତୁନିଧି ଗ୍ରନ୍ଥ, ଭକ୍ତ କେଉଁ ଜନେ ପଢ଼େ

ମ୍ଲେଚ୍ଛର କି ଅଷ୍ଟୈଶ୍ୱର୍ଯ୍ୟ ? ଅକଳ୍ପିତ ତାହା ।
ପ୍ରଜାଙ୍କେ ଯେ ଧର୍ମନାମେ ହତ୍ୟାରେ ପ୍ରବୃତ୍ତ,
କରେ ସେ ଧର୍ମକୁ ହତ୍ୟା, ଆତ୍ମହତ୍ୟା ସହ,
ପିଇ ସେ ଅମୃତ ମୁଖେ ଉଗାରେ ଗରଳ,
ଯଥା ମହୀ ପାନ କରି ନବ ବୃଷ୍ଟି-ସୁଧା
ବୈଶାଖେ ଉଦ୍ଗାରେ ବହ୍ନି ବିଷବାଷ୍ପ, ଅହ୍ନ ।
କିନ୍ତୁ ନାହିଁ ଏ କଥା ମୁଁ ପ୍ରତିକୂଳଭାବେ,
ହୋଇଅଛୁ ସତ୍ୟବଦ୍ଧ, ହେବି ମୁଁ ସହାୟ,
ବିଶେଷତଃ କର୍ମ ତବ ଅଲୌକିକ ଅତି,
ଜନ୍ମୁଅଛି କୁତୂହଳ ଦେଖିବାକୁ ତାହା,
ଆସିଲାଣି ସନ୍ଧ୍ୟା, ଏବେ ବାହୁଡ଼ ଆଶ୍ରମେ,
ହେବି ଉପସ୍ଥିତ ଆସି ଯଥାକାଳେ କାଲି ।
"ତଥାସ୍ତୁ" ଉଚ୍ଚାରି ସାଧୁ ଆଶ୍ରିଲେ ସରଣୀ ।

ଅନନ୍ତର ପରବର୍ତ୍ତୀ ରଜନୀ-ଯୌବନେ *
ବିକ୍ରମୀ ବିକ୍ରମାଦିତ୍ୟ, ଖଡ୍ଗଖଣ୍ଡପାଣି,
ଯାତ୍ରା କଲେ ଯୋଗୀ ସହ ଏକାକୀ ଗୋପନେ ।
ନିବିଡ଼ ଅନ୍ଧାରେ ମଗ୍ନ ଅନନ୍ତ ମାଧୁରୀ
ପ୍ରକୃତିର, ମଗ୍ନ ନରଚେତନା-ତରଣୀ
ନିଦ୍ରା-ପାରାବାର ଗର୍ଭେ, ସୁପ୍ତା ବସୁନ୍ଧରା,

* ନିଶୀଥ ସମୟରେ ।

ନୀରବ ନିସ୍ତବ୍ଧ ସର୍ବେ, ଆବରି ନିଶ୍ଚେତ ।
ସେହି ମହାମାରୀବତା ସୂଚୁଏ ସୃଷ୍ଟିକୁ
ଜୀବଶୂନ୍ୟ ପ୍ରାୟ, ସତେ ବା ଯାଇଛି ଉଠି
ଅବନ୍ତୀ ନଗରୀ କେଉଁ ଅଜ୍ଞାତ ପ୍ରଦେଶେ ।
କେତେ କ୍ଷଣ ପରେ ଉଭେ ମିଳିଲେ ଶ୍ମଶାନେ,
ତହୁଁ ଯତି ନରବରେ ବୋଇଲା ସମ୍ବୋଧି—
ରାଏ, ରହିଲି ମୁଁ ଏହି ଠାବେ, ଆରମ୍ଭିବି
ଇଷ୍ଟଯାଗ, ଯାଅ ତୁମ୍ଭେ ଯାମ୍ୟତର ବେଗେ,
ଭେଟିବ ପଥରେ ଏକ ଶାଳ୍ମଳୀ ପାଦପ
ବହୁଶାଖ, ତୁଙ୍ଗଚୂଡ଼, ଅଛି ତାହା ମୂଳେ
ଶବ, ଆଣ ତାହା, ହେବ ଦେବ ପୂର୍ଣ୍ଣାହୁତି;
ତଥାସ୍ତୁ ଉଚାରି ନୃପ ଗମିଲେ ଉତ୍ତରେ ।
ଜଳୁଛି ଶ୍ମଶାନେ ଚିତା, ମିଞ୍ଜିମିଞ୍ଜି ଭାବେ
ଧୂମହୀନ, ନିରିନ୍ଧନ, ଅସ୍ପଷ୍ଟ ଆଲୋକ
ଶ୍ମଶାନର ବିଭୀଷିକା ବଢ଼ାଏ ଦ୍ୱିଗୁଣ,
ଯୋଗିଣୀ ଡାକିନୀ ତାହା ଶ୍ମଶାନବାସୀର,
ପାତକ ପରାସ୍ତେ ଶିବା ବସିଅଛି ଜଗି ।
'ଧୂଲିଛନ୍ନ ନୃପଙ୍କର ଅଙ୍ଗକାରେ ଲୁଢ଼ି
ଧୂଳୁ ଧୂଳୁ ପଞ୍ଚେ ଆଜ ଗୃଳିଲ ପରାସ୍ତେ
ହୁଏ ଭୟଜାତ, ମାତ୍ର ଗୃହିଁଲେ ପଛକୁ,
ଦିଶେ ନାହିଁ କେହି, କାହିଁ ଯାଏ ସେ ଉଭେଇ,

ନିଜ ପଦ ଶବ୍ଦ ସ୍ତୁତେ ଅନ୍ୟର ବୋଲିଣ,
ଏହିପରି ଶୂନ୍ୟ ରୂପ ଧରି ନିସ୍ତବ୍ଧତା
ମାୟାମୟୀ ମାୟାବିନୀ ଦେଖାଇଲା ବାରମ୍ବାର ଭୀତ,
ମାତ୍ର ବିଜୟଙ୍କ ପାଶେ ବୃଥା ହେଲା ମାୟା ।
ଅନ୍ଧକାରେ ପଥ କଳି ନ ପାରି ନରେଶ
ଚଳିଲେ ଅପଥେ, ଯଥା ଯୌବନେ ଯୁବକ,
ଝୁଣ୍ଟି ଝୁଣ୍ଟି ଗଣ୍ଡ ପଥେ ନର ମୁଣ୍ଡମାଳ,
ନଗଣି, ପଞ୍ଜରଚୟ ହେଲେ ଅଗ୍ରସର ।
ଊର୍ଦ୍ଧ୍ୱଭାଗେ ସୁବିସ୍ତୃତ ଅନନ୍ତ ଆକାଶ,
ଧୌତ ଶାନ୍ତ-ଜଳେ, ନୀଳ, ଚଞ୍ଚଳ, ମଧୁର,
ବିରାଟ ଶ୍ମଶାନ ନିମ୍ନେ ବସୁଧା ବକ୍ଷରେ,
ବିଜନ ଭୀଷଣ ସ୍ଥଳୀ, ବିରାଟ, ଗମ୍ଭୀର,
ଗାମ୍ଭୀର୍ଯ୍ୟ ମାଧୁର୍ଯ୍ୟ ମିଶ୍ରା ସେ ବିକଟ ଛବି
ଆଣିଦେଲା କେତେ ସ୍ମୃତି, କେତେ ନବ ଭାବ,
ପୁଣି ମୁହୂର୍ତ୍ତକେ ହୋଇ ସବୁ ଲୀନ ହୃଦ
ଚୈତନ୍ୟାନ୍ୱିତ ; ଶକ୍ତି ଆଉ ସାହସ ଉଭୟେ
ଯେନ ଯେନ ଲୁଚକାଳି ଖେଳିଲେ ସେକାଳେ ।
ଅର୍ଦ୍ଧନିର୍ବାଣ ହେଲା ଚିତାର ଅଙ୍ଗାର
[illegible] ପ୍ରବଳ [illegible], ସର୍ବଧ୍ୱଂସିନୀ
ନଶ୍ୱରର ଏ ସେ ଶକ୍ତି ସମୁତ୍କଟ ହାସ—
ହାହାମୟ, ନରେଶ ବା ଶୁଣିଲେ ଭୀଷଣ—

ଏହି ମହାଶତ! ସିନା ନର ଜୀବନର
ଅନ୍ତିମ ଅନଳଶ୍ୱାସ, ଏ କ୍ଷୁଦ୍ର ଅନଳେ
ମିଶାଏ ଶରୀର ଆହା ମାନବ-ଖଦ୍ୟୋତ !
କେତେ କେତେ ପ୍ରବଳର ଦୁର୍ବାର କ୍ଷମତା,
ଦୁର୍ବଳ-ଦୁର୍ଗତିରାଶି, କ୍ରୋଧାନ୍ଧର କ୍ରୋଧ,
ଅଭିମାନ-ଅପମାନ-ଅହମିକାମନ୍ତ୍ର,
ଲୀନ ଏ ପାବକେ, ଏହା ଅମୃତସୋପାନ
ନିର୍ବାଣର, କରେ ନର ହୃଦଭାର ଲଘୁ ।
ଏହିପରି ଶ୍ରାନ୍ତ କ୍ଳାନ୍ତ ହେଲେ ଉପସ୍ଥିତ
ଶାଳ୍ମଳୀ ପାଦପ ପାଶେ, ଦେଖିଲେ ସେଠାରେ
ତରୁ କୋଡ଼େ * ସ୍ଥିତ ଶବ, ବଢ଼ାନ୍ତେ ତା ପ୍ରତି
ଧରିବା ଆଶୟେ କର, ଏକାଳେ ବେତାଳ
ଏକ ମିଳି ଅକସ୍ମାତ, ବୋଇଲା ନିଷେଧି—
ତିଷ୍ଠ ତିଷ୍ଠ ହେ ସାହସି, କହ, ତୁମ୍ଭେ କିଏ ?
ଏ ମହାଶ୍ମଶାନେ ଏକା ମୋର ଅଧିକାର,
କପାଇଁ ଆସିଲ ଏଥି ଅର୍ପିବାକୁ ପ୍ରାଣ ?
ଉତ୍ତରିଲେ ଉପେକ୍ଷାରେ ସଗର୍ବେ ଉତ୍ତମ—
ଭ୍ରାନ୍ତ ତୁମ୍ଭେ, ଏ ଶ୍ମଶାନ ନୁହେ ଅଧିକୃତ
କାହାର, ଜରଣ୍ଟ ସର୍ବେ ଆସନ୍ତି ଅନ୍ତିମେ
ଏହା ଅଧିକାରେଁ, ଯେଉଁ ବିରାଟ ଶୂନ୍ୟତା,
ଶୋଭୁଛି ତା ବକ୍ଷେ, ସେହି ଅଧିକାରୀ ତାର ।

---

* ବୃକ୍ଷ କୋଟରେ ।

ଏ ସଂସାର ମାନବର କ୍ଷଣିକ ପ୍ରବାସ,
ଦୁର୍ବଳ ସଙ୍କୀର୍ଣ୍ଣବୁଦ୍ଧି ସ୍ୱଭାବେ ମାନବ,
ବୁଝିବାକୁ ଅକ୍ଷମ ସେ ବିଶାଳ ବିଶ୍ୱର
କ୍ଷୁଦ୍ରାଦପି କ୍ଷୁଦ୍ରତମ ବାଲୁକଣା ତତ୍ତ୍ୱ,
ତାର ଅଧିକାର—ଲଜ୍ଜା, ହାସ୍ୟକର କଥା ।
ଅଧିକନ୍ତୁ—ପ୍ରାଣ-ଯନ୍ତ୍ରେ ବାଜେ ଯାହା ନାମେ
ସଦା ମୋର ମୋର ଧ୍ୱନି, ସେ ପ୍ରିୟ ଶବ୍ଦରେ
ନାହିଁ ସୁଦ୍ଧା ମାନବର ତିଳେ ଅଧିକାର,
ଅନ୍ୟଥା, ସେ ପାରନ୍ତା କି ଉପେକ୍ଷି ତାହାକୁ ?
ମୋ ନାମ ବିକ୍ରମାଦିତ୍ୟ, ଯୋଗୀ ଅନୁରୋଧେ
ଆସିଛୁ ନେବାକୁ ଶବ, ଅଛୁ ସାଧ କା'ର
ଜନ୍ମାଇବ ଅନ୍ତରାୟ ମୋ ଉଦ୍ଦେଶ୍ୟ ପଥେ ?
ଲଜ୍ଜାବୋଳା, ମ୍ଳାନ ମନ୍ଦ, ଅସୁନ୍ଦର, ହାସ୍ୟେ
ଭାଷିଲା ବେତାଳ, ନମ୍ରେ, ଧୀରେ,—ସମ୍ବୋଧନ,
ଚିହ୍ନିଲନ୍ତି ମୋତେ, ଅଗ୍ନି ବେତାଳ ମୋ ନାମ,
ପୂର୍ବେ ଦ୍ୱନ୍ଦ୍ୱ ଯୁଦ୍ଧେ ମୁହିଁ ଲଭି ପରାଜୟ
ହୋଇଥିଲି ସତ୍ୟବଦ୍ଧ ସ୍ୱତଃ, ସାଧିବାକୁ
ଉପକାର ଶ୍ରୀମୁଙ୍କର ଅନାହୂତ ଭାବେ,
ନୃପ, ଏବେ ଉପସ୍ଥିତ ସେହିକାଳ ଆସି ।
ସତ୍ୟ, ଦେବ, ଆମ୍ଭେମାନେ ଅଧମଶ୍ରେଣୀର୍
ନଶ୍ୱରସ୍ୱଭାବ, ମୂଢ଼, ଅକ୍ଷମାସର୍ବସ୍ୱ,

ମାତ୍ର ସତ୍ୟରକ୍ଷା ଆମ୍ଭ ଜୀବନଜୀବିକା,
ସତ୍ୟ ଏକା ଅନଶ୍ୱର ଏ ନଶ୍ୱର ଭବେ
ପ୍ରତିଷ୍ଠିତ ଏ ଅନନ୍ତ ସୃଷ୍ଟି ସତ୍ୟ-ଦୃଢ଼
ଭିତ୍ତିପୃଷ୍ଠେ, ସତ୍ୟ-ଯତ୍ନେ ସୁପରିଚାଳିତ ;
ଇତର ଅନାର୍ଯ୍ୟ ଆମ୍ଭେ ଦେବତାସମାନେ,
ମାନବେ ଅନ୍ତ୍ୟଜ ପ୍ରାୟେ, ନ ଜାଣୁ ଅପର
ଧର୍ମ, ସତ୍ୟ ବିନା, ସତ୍ୟ ଆମ୍ଭ ଶ୍ରେୟ, ପ୍ରେୟ,
ସତ୍ୟ, ଏ ବର୍ବର ପ୍ରାଣ ସତ୍ୟ ପଦେ ବିକା ।
ବେତାଳସମ୍ରାଟ ମୁହିଁ, ଭୂତବର୍ଗେ ମୋର
କାମରୂପୀ, କାମଗତି, ଅର୍ପନ୍ତି ସେ ଆଣି
ନିଖିଳ ବ୍ରହ୍ମାଣ୍ଡ ବାର୍ତ୍ତା ମୋତେ ନିତ ନିତି
ଶୁଣି କାଲି ଭଣ୍ଡଯୋଗୀ ଛଳନା ସମ୍ବାଦ,
ଉଦ୍ଧାରାର୍ଥେ ତୁମ୍ଭଙ୍କୁ ତା ଅଭିସନ୍ଧି-ଫାନ୍ଦୁ
ଉପସ୍ଥିତ ହଶୀଥେ ମୁଁ ଏ ଶ୍ମଶାନ ସ୍ଥଳେ ।
ଯାହା ପ୍ରତାରଣା-ଜାଲେ ପଡ଼ିଅଛ ସବେ,
ନୁହେ ସେ ପ୍ରକୃତ ଯୋଗୀ—ଛଦ୍ମ କାପାଳିକ,
ସାଧୁବେଶଧାରୀ, ଯୋଗ ତାର ହିଂସା, ଧ୍ୟାନ—
ପରାନିଷ୍ଟ, ଦେହାବୃତ ଭସ୍ମ-ପ୍ରବଞ୍ଚନା,
ଇଷ୍ଟମନ୍ତ୍ର ଦୁରାକାଂକ୍ଷା, ଲୋଭରଜ୍ଜୁ ଜଟା,
ନଖ ତୀକ୍ଷ୍ଣ ଅସ୍ତ୍ର, ଶୁଣ୍ଡ ପୁଣି କଣ୍ଠାବାସ—
ଅସନ୍ତୋଷ ଅସଂଯମ ପ୍ରକାଶ ପତାକା ।

ଅଭଦ୍ୟା, କୁଭଦ୍ୟା ଯେତେ ଅଛି ଏ ସଂସାରେ,
ସେ ସବାର ଲକ୍ଷ୍ୟ ତୁଷ୍ଟି, ବିଳାସର ଘାଟ,
ବିଷଟ ବାସନା-ବହ୍ନି ଜାଳି ହୃଦ-ତଳେ,
ଖାଲୁ ନାହିଁ କର ତାହା ନିର୍ବାପିତ ଜଳେ
ଅର୍ଥ-ଜାର ଅଭାବରେ, କଳୁ ଦୁରନ୍ତର
ଭୁଞ୍ଜୁ ନାହିଁ ଅର୍ଥ ତହିଁ ଲୁହେ ଶାନ୍ତିଦାର ;
କେବଳ ଆଲୁତ ଅର୍ଥ, ଅର୍ଥ ଲୋଭେ ପାପୀ
ରତ ମହାପାପେ ସଦା, ନ ବୁଝି ଅରେହେଁ
ଅଦୂର ଭବିଷ୍ୟଗର୍ଭେ ଉଧ୍ୱଲିପି ପ୍ରତ
ହେବ ଯାହିଁ ତବ ସବୁ ସମକକ୍ଷ ତଳେ,
ଜାଣି ସେ କାରଣ ଏହା, ବିଶେଷତଃ ଦେଖି
ସରଳ ବିଶ୍ୱାସ ତବ ଅଣିଛି ଭୁଲାଇ,
ବନାଣି ତୁମ୍ଭଙ୍କୁ ଆଜ କୂଟ କୌଶଳରେ
ହେବ ବୋଲି ରଜା, ତୁଷ୍ଟ ବାଞ୍ଛିଛି ଦୁରାଶା,
ହୁଅ * ସ୍ଥିନା ଭାଇ ନୃପ, ଏ ଶତ ସାଧନା ।
ଯେଉଁ ଆଶାକାଙ୍କ୍ଷ ସଦା ଜାଗନ୍ତି ସେ କାଳେ,
ଗୁପ୍ତ ଅସ୍ତ୍ରକୋଷ ଠାହା, ଏହୁ ବ୍ୟାଜ-ଛାଳ—
ଶେଷେ ଯେବେ ତା ସଙ୍କେତମତେ ତୁମ୍ଭେ ନୃପ,
ବହିବ ପ୍ରଣାମ, ତେବେ ବଧିବ ତୁମ୍ଭଙ୍କୁ
ତୁମ୍ଭର ଅଜ୍ଞାତସାରେ, ଥିବ ଅବହିତ ।

---

* ଛୁଟିନା ଶବଦ ।

ନାହିଁ କିଛି ଭୟ କିମ୍ବା ଉଦ୍ୱେଗ କାରଣ,
ଥିବ ମୁହିଁ ତବ ସଙ୍ଗେ ଛାୟାରୂପ ଧରି,
ସାଧିଲଣି ଦୁଷ୍ଟ ଯେତେ ସୃଷ୍ଟି ଅକଲ୍ୟାଣ,
ସେ ପାପର ପ୍ରାୟଶ୍ଚିତ୍ତରୂପେ ଅର୍ପ, ରାଏ,
ତାହା ଅନୁଷ୍ଠିତ ଯାଗେ ତା ଶିର ଆହୁତ ।
ଭଣିଲେ ବନମାଦତ୍ୟ,—ହେଲ ପ୍ରୀତ ଅତି
ତବ ଏ ପ୍ରତ୍ୟୁପକାରେ, ବଳମ୍ବ କପାଇଁ
ଦୁର୍ମତି ଦମନେ ତେବେ ? ହୁଅ ଅଗ୍ରସର
ତ୍ୱରା, ସେ ଭଣ୍ଡ-ମାବାରେ କରି ଉତ୍ପାଟିତ
ସନ୍ନ୍ୟାସି-ଶାରଦ-ଖେନ୍ଦୁ, କରିବ ନର୍ମଳ,
କାଟି କାବ୍ୟ ଦୋଷ ଯଥା ସୁ-ସମାଲୋଚକ
କରେ ତାକୁ ନଷ୍କଳଙ୍କ, ଅନବଦ୍ୟ ସୁନ୍ଦର,
ସମାଲୋଚକ ସମ୍ବଳ କଲ୍ପନା-ତୁଳିକା.
ମୋ କଲ୍ପତୁଳିକା ମାତ୍ର ହେବ ଏହି ଅସି,
କାବ୍ୟ ହେବ ପାମରର ଜୀବନପତ୍ରିକା,
ଘନୀଭୂତ ଦୋଷ ତହିଁ ଶରୀର ତାହାର ।
ବୋଇଲା ବେତାଳ ତହୁଁ ବନେଶେ ସମ୍ବୋଧି,
ପୁଣ୍ୟଶ୍ଳୋକ, ଅଛି ମୋର ପ୍ରଶ୍ନ ଏକ, କଲେ
ଅଗ୍ରେ ସମାଧାନ ତାହା, ଯିବ ଶବ ସେନ,
ଶୁଣ ହେଉ ପ୍ରଶ୍ନ ଏବେ ଜଣାଏଁ ଶ୍ରୀମୁଖରେ —

ଏକଦା ଜନୈକ ଦ୍ୱିଜ ଘୋର ବନପଥେ
ଭ୍ରମୁଥିଲେ ଅନ୍ତଃସତ୍ତ୍ୱା ସଧର୍ମିଣୀ ସହ;
ପ୍ରଚଣ୍ଡ ନିଦାଘ ଋତୁ ମଧ୍ୟାହ୍ନ ସମୟ,
ହେଲେ ରୁଦ୍ର ରୌଦ୍ରତେଜ ଅସହ୍ୟ ଅତୀବ,
ବର୍ଷିଲେ ଅନଳଧାର ନଭୁ ଅନର୍ଗଳ,
ତରୁପର୍ଣ୍ଣେ ପ୍ରତିହତ ହୋଇ ରୌଦ୍ରରେଖା,
ଚୂର୍ଣ୍ଣ ହୋଇ ରନ୍ଧ୍ରପଥେ ପଡ଼ିଲେକ ଝରି,
ଆଣିଲା ପବନ ବହ୍ନି ପାବକପ୍ରବାହ ।
ଭ୍ରମୁ ଭ୍ରମୁ ଉଭେ ହୋଇ ତୃଷ୍ଣାରେ ଅଧୀର,
ହେଲେ ପ୍ରଧାବିତ ବନବକ୍ଷେ ଇତସ୍ତତଃ
ଜଳାଶୟ ଅନ୍ୱେଷଣେ, ବିହ୍ୱଳ ନୟନେ,
ଦାରୁଣ ତୃଷାରେ ଯଥା କରେ ଧାଁ—ଦଉଡ଼
ତାଇ ତର ପ୍ରିୟବାସ ଦୁରକାଂକ୍ଷୀ ହୃଦେ ।
ଝୋଲ୍ଲମର ପ୍ରାୟ ହୋଇ କେତେକ୍ଷଣ ପରେ
ମିଳିଲେ ଦମ୍ପତି ଏକ ପଲ୍ୱଳ ନିକଟେ,
ଦେଖିଲେ ସମ୍ମୁଖ ତହିଁ ଅଛି ସ୍ୱଳ୍ପ ଜଳ
ଦଦ୍ଧପଙ୍କେ, ଶଙ୍କଳିତ, କୀଟାଣୁ ଦୂଷିତ,
ମାତ୍ର ତାହା ହରି ପାରେ ଜଣକ ପିପାସା ।
ବ୍ରାହ୍ମଣୀକୁ ଲକ୍ଷି ତହୁଁ ବୋଇଲେ ବ୍ରାହ୍ମଣ,
ନିବାର ପିପାସା ପ୍ରିୟେ, ଏହି ଜଳ ପାନେ ।
ସ୍ୱାମିର ଆଦେଶ ଶୁଣି କହିଲେ ବ୍ରାହ୍ମଣୀ,

ଦେବ, ଜଗତର ଧାତ୍ରୀ ଯେଉଁ ନାରୀ ଜାତି,
ଯାହାଙ୍କର ଧର୍ମ ସଦା ଜଗତର ସେବା,
ସେହି ନାରୀ ଜାତି ରଖି ସ୍ୱାମିଙ୍କୁ ତୃଷିତ
ମେଣ୍ଟାଇବ ଜଳପାନେ ସ୍ୱୀୟ ଦଗ୍ଧ ତୃଷା,
ଗଲେ ସୁଦ୍ଧା ପ୍ରାଣ କେବେ ସମ୍ଭବେ କି ଏହା ?
ତୁମ୍ଭେ ମୋର ସ୍ୱାମୀ, ଗୁରୁ, ଜୀବନ୍ତ ଦେବତା,
ପିପାସାରେ କଲବଲ ଦେଖିଣ ତୁମ୍ଭଙ୍କୁ
ପିଇବି ମୁଁ ଜଳ, ହାସ୍ୟ, ରମଣୀ-ସୁଲଭ
କୋମଳ ପରାଣେ ଦେବ ନ ପାରିବ ଦାସୀ
ସହି ତାହା କଦାଚନ, କ୍ଷମା କର ପ୍ରଭୋ,
ଶାନ୍ତ ହୁଅ ଆଗେ ତୁମ୍ଭେ ଏହି ଜଳ ପାନେ,
ପଛେ ମୋତେ ଆଣି ଦେବ ଅନ୍ୟତ୍ର ଅନ୍ୱେଷି ।
ପତ୍ନୀର ପ୍ରାର୍ଥନା ଶୁଣି କହିଲେ ବ୍ରାହ୍ମଣ,
ନାରୀର ଭରଣ ଭାର ନ୍ୟସ୍ତ ସ୍ୱାମୀ ପରେ,
ବିଧାତା ନିର୍ବନ୍ଧ ଏହା, ଆଶ୍ରିତ ପାଳନ
ଅଗେ, ପଛେ ନିଜ କଥା, ପ୍ରିୟେ, ଏହା ସିନା
ପ୍ରଭୁପଣ, ବିଶେଷତଃ ଅନ୍ତଃସତ୍ତ୍ୱା ତୁମ୍ଭେ,
ପିପାସାରେ ବିସର୍ଜିଲେ ପ୍ରାଣ, ହେବି ମୁହିଁ
ଲିପ୍ତ ନାରୀହତ୍ୟା ପୁଣି ଭ୍ରୂଣହତ୍ୟା ପାପେ,
ଅତଏବ ଏ ଅନ୍ୟାୟ ଅନୁରୋଧୁ, ଦେବି,
କ୍ଷାନ୍ତ ହୋଇ ପିଅ ଜଳ ନ ସହଣ କ୍ଷୁଧା ।

ଏମନ ବାଦାନୁବାଦେ ଲିପ୍ତ ହୋଇ ଦୁହେଁ
ନ ପିଇଲେ କେହି ଜଳ, କେତେକ୍ଷଣ ପରେ
ହୋଇଗଲା କଣ୍ଠରୁଦ୍ଧ, ଶେଷେ ସେ ଦମ୍ପତି,
ପରସ୍ପର ମୁଖେ ଚାହିଁ ତେଜିଲେ ଜୀବନ ।
ବୋଲନ୍ତୁ ନୃବର ଏବେ, ଏ ବେନି ମଧ୍ୟରେ
କାହାର ଅଧିକ ପ୍ରୀତି ? ଏହି ପ୍ରଶ୍ନ ମୋର ।
ଉତ୍ତରିଲେ ନରନାହା—ଅତୀବ ସହଜ
ଏ ପ୍ରଶ୍ନର ସଦୁତ୍ତର, କାହିଁ କାର ପ୍ରୀତି ?
ଥାନ୍ତା ଯଦି ପ୍ରୀତି, ତେବେ ପିଇଥିଲେ ଜଣେ
ଜଳ, ହୋଇଥାନ୍ତା ଶାନ୍ତ ଅନ୍ୟର ପିପାସା,
ଉଭୟର ମରଣ ଯେ କଲା ସଂଘଟନ
ତାହା ନାମ ମାୟା ସିନା, ପ୍ରୀତି ନୁହେ କେବେ,
ପ୍ରୀତି ପୂତ ମନ୍ଦାକିନୀ, ମାୟା କର୍ମନାସା,
ପ୍ରୀତି ସ୍ୱର୍ଗଦେବୀ, ମାୟା ଶ୍ମଶାନ ଡାକୁଣୀ,
କେଉଁ ଗୁଣେ ଭଲା ଜ୍ୱାଳାମୟୀ ଅଗ୍ନି ଶିଖା
ବସିବ ଶୀତଳ ସ୍ନିଗ୍ଧ ଚନ୍ଦ୍ରକା ଆସନେ ?
ନୀରବନ୍ତେ ବିକ୍ରମାର୍କ, କହିଲା ବେତାଳ—
ଯଥାର୍ଥ ଉତ୍ତର ନୃପ, ମାନିଲି ହୃଦୟେ,
ବସ୍ତୁର ବୁଦ୍ଧିକୁ ତବ ଶତ ଧନ୍ୟବାଦ,
ତବ ସୂକ୍ଷ୍ମ ତର୍କଣାର ଅସୀମ ପ୍ରଶଂସା
ଶୁଣିଥିଲି ବହୁମୁଖୁଁ ପୂର୍ବେ, ମାତ୍ର ଆଜି

ପ୍ରତ୍ୟକ୍ଷ ପ୍ରମାଣ ଲଭି ତାର ମେଣ୍ଟାଇଲି
ଅବିଶ୍ୱାସ ବିଶ୍ୱାସର ବିଷମ କଳହ ।
ଥିଲେ ଚଣ୍ଡ ସନ୍ନିଧାନ, ହୁଏ କାହିଁ ଭକ୍ତି
ଦୁଷ୍ଟିଙ୍କୁ ସରଳ, ତେଣୁ ନ ଚିହ୍ନି ତୁମ୍ଭଙ୍କୁ
ମୂଢ଼ ପଣେ କରିଥିଲି ଏ ପ୍ରଶ୍ନ ଜିଜ୍ଞାସା,
କ୍ଷମିବ ମହାତ୍ମା, ମୋର ଏହି ପ୍ରଗଲ୍‌ଭତା ।
ଚାଲ ତୁମ୍ଭେ ଅଗ୍ରେ ଅଗ୍ରେ, କାନ୍ଧେ ଶବ ଘେନି
ଅନୁସରିବି ମୁଁ ସଙ୍ଗେ ଶୁଶ୍ରୂଷା ରୂପ ଧରି;
ତଥାସ୍ତୁ ଉଚ୍ଚାରି ରାଜା ଗମିଲେ ଚଳିଲେ ।
ପ୍ରବେଶନ୍ତେ ଯାଇ ଦୁହେଁ ଭଣ୍ଡ ସାଧୁ ପାଶେ,
ଶବ ଥୋଇ ଉଭା ହେଲେ ଅଦୂରେ ବେତାଳ
ଅଦୃଶ୍ୟେ, ସମ୍ବୋଧି ତହୁଁ ଧୀରେ ନରବର
କହିଲେ ତାପସେ, ଏହି ଆଣିଲି ମୁଁ ଶବ
ତବ ଆଜ୍ଞାମତେ, ଯୋଗି, କର ପରୀକ୍ଷଣ ।
ବିରାଟ ଅନଳକୁଣ୍ଡ ଜାଳି ଛଦ୍ମଯତି
ବସିଥିଲା ଜପାସନେ ପ୍ରତୀକ୍ଷାରେ ତହିଁ
ନିର୍ମଳ ବସ୍ତ୍ରଖଣ୍ଡ, ଡାକନ୍ତେ ଏକାଳେ
ରାଏ, ଉଠି ଶଶବ୍ୟସ୍ତେ ଟାଣି ନେଇ ଶବେ
ବସି ତା କଙ୍କାଳ ପରେ, ଅସ୍ପଷ୍ଟେ ଉଚ୍ଚାରି
ଜପି ବାର ବାର ମନ୍ତ୍ର ଦେଲା ପାବକେ ଆହୁତ ।
ଅନନ୍ତର ଉଭା ହୋଇ ମୁହୂର୍ତ୍ତକ ପରେ

ଧର ଆଶୀର୍ବାଦ କରେ ବୋଇଲ ବକ୍ରମେ—
ଶ୍ମଶାନଶଙ୍କରୀ ପଦ ଉଦ୍ଦେଶ୍ୟରେ ନୃପ,
କର ପ୍ରଣିପାତ, ସାଙ୍ଗ ଇଷ୍ଟ ଯାଗ ଏବେ ।
ଭାଷିଲେ ଅବନ୍ତୀପତ ମୃଦୁହାସ୍ୟେ ତହୁଁ—
ଯୋଗୀ ତୁମ୍ଭେ, ଏ ଯଜ୍ଞର ପ୍ରଧାନ ସାଧକ,
କରିବା ଉଚତ ସିନା ପ୍ରଣାମ ତୁମ୍ଭର
ଅଗ୍ରେ, ତହିଁ ପରେ ଯାହା କର୍ତ୍ତବ୍ୟ ମୋହର
ପାଳବ ଅବଶ୍ୟ ତାହା, ସେ ମୋର ବାଞ୍ଛିତ,
ହେବ ନାହିଁ ତାହା ମୋତେ ଦେବାକୁ ଶିଖାଇ ।
ନ କର ଦ୍ୱିରୁକ୍ତି କଛି କପଟ ସନ୍ନ୍ୟାସୀ
ବହିଲା ମହୀରେ ଲୁଣ୍ଠି ସାଷ୍ଟାଙ୍ଗ ପ୍ରଣାମ,
ଏକାଳେ ବକ୍ରମାଦତ୍ୟ ବୁଝି ଅବସର,
ଝରକରେ କରବାଳେ କାଟି ଶିର ତାର
ନକ୍ଷେପିଲେ ଅଗ୍ନିକୁଣ୍ଡେ—ତାହାର ସହିତ ।
ଯେ ଶିକାରେ ଲକ୍ଷ୍ୟ କରି ଆସିଥିଲା ବ୍ୟାଧ,
ହେଲା ଶେଷେ ଲକ୍ଷ୍ୟ ଦୁଷ୍ଟ ସେହି ଶିକାରର,
ହାତେ ହାତେ କୃତକର୍ମ ଭୁଞ୍ଜିଲା ପାମର ।

ଏଥନ୍ତେ ଆକାଶୁ ହେଲା ଅଶରୀରୀ ବାଣୀ—
ହେ ବକ୍ରମାଦତ୍ୟ, ହେଉ ମଙ୍ଗଳ ତୁମ୍ଭର,
ଅମଙ୍ଗଳ-ଧୂମକେତୁ ଏ ନର-ରାକ୍ଷସେ

ବଧି ତୁମ୍ଭେ ସାଧିଲ ଯେ ସୃଷ୍ଟିର କଲ୍ୟାଣ,
ଯୋଗ୍ୟ ଧର୍ମ ତାହା, ନୃପ, ତୁମ୍ଭର ସମାନ
ଦୁର୍ଦ୍ଦାନ୍ତ-ଦମନକ୍ଷମ ଧର୍ମରକ୍ଷିଙ୍କର,
ପ୍ରୀତ ହୋଇ ସାଧୁ କାର୍ଯ୍ୟେ ପିତାମହ ତବ
ତ୍ରିଦିବଈଶ୍ୱର ଇନ୍ଦ୍ର ଅଛନ୍ତି ପଠାଇ
ସ୍ନେହ-ଉପହାରସ୍ୱରୂପୀ ଏହି ସିଂହାସନ
ଦ୍ୱାତ୍ରିଂଶ ପୁତ୍ତଳଖଚୀ, ରତନେ ସୁନ୍ଦର,
ହେଲେ ଉପବିଷ୍ଟ ଏହି ମହାସିଂହାସନେ,
ଧରିବ ଅଦ୍ଭୁତ ଶକ୍ତି ତୁମ୍ଭେ, ସୁଧୀବର,
ନ୍ୟାୟ ମୀମାଂସାର ଗୂଢ଼ ସୂକ୍ଷ୍ମତତ୍ତ୍ୱମାନ
ପ୍ରତିଫଳିବ ତୁମ୍ଭର ନଟ-ଦର୍ପଣରେ,
ଦେବରାଜ ଦୂତ ମୁହିଁ, ତାଙ୍କ ଅଜ୍ଞାମତେ
ଆସିଥିଲି ଅର୍ପିବାକୁ ତାଙ୍କ ଆଶୀର୍ବାଦ,
ଦେନ ଏହି ସିଂହାସନ, ହେଲି ମୁଁ ବିଦାୟ ।
କହୁ କହୁ ଏହା, ନଭୁ ଖସିଲା ସବେଗେ
ଜ୍ୟୋତିପିଣ୍ଡ, କୋଟି ଉଲ୍କା-ଆଲୋକ-ଲାଞ୍ଛନ,
ଐଶ୍ୱର ପ୍ରତାପ କି ସେ ? ଆସେ ମର୍ତ୍ତ୍ୟପୁରେ
ମହାକାର୍ଯ୍ୟ ସାଧନାର୍ଥେ ଜ୍ୟୋତିଷ୍କ ରୂପରେ ।
ସେ ସୁରମ୍ୟ ସିଂହାସନ ଦରଶନ୍ତେ ମହୀ
ପ୍ରତେ ହେଲା ଯଥା ପ୍ରାପ୍ତ ତମିସ୍ର ନିଶୀଥ,
ଲଭି ତା ବିକ୍ରମାଦିତ୍ୟ ମଣିଲେ ନିଜକୁ

ଧନ୍ୟ, ଭାଗ୍ୟବନ୍ତ, ଫୁଟି ଉଠିଲା ନଭରେ
ସୌଭାଗ୍ୟ-ଶ୍ରୀ-ସାନ୍ଦ୍ର ଜ୍ୟୋତି, ଖେଳିଲା ଆନନେ
ଆନନ୍ଦ-ଅମୃତ ଜ୍ୟୋତ୍ସ୍ନା ; ହେରି ଅପଲକେ
ଦେବସିଂହାସନ ଶୋଭା ଭାବିଲେ ମାନସେ—
ଆହା ଏହା ଥିଲା କିବା ଶୂନ୍ୟ କଳ୍ପନାର
ସଜୀବ ସଚେଷ୍ଟ ଦୃଶ୍ୟ, ଅଦ୍ଭୁତ ହୃଦରେ ?
ହେଲା ବିକ୍ରମଙ୍କ ଭାଗ୍ୟେ ଅଷ୍ଟନିଧି ଲାଭ,
ତହୁଁ ସେ ବେତାଳ ଶିରେ ବହାଇ ତାହାକୁ
ବାହୁଡ଼ିଲେ ରାଜି ଶେଷେ ଅବନ୍ତୀ ନଗରେ,
ସଂସ୍ଥାପିଲେ ଯଥାସ୍ଥାନେ ଦେବ ସିଂହାସନ ।



# ଅଷ୍ଟମ ସର୍ଗ ।



ଶକାଦିତ୍ୟ ନାମେ ଏକ ଅନାର୍ଯ୍ୟ ନୃପତି
ଦୁର୍ଦ୍ଦମ ଶକ ଜାତିର ଲଭି ସହାୟତା
ବିସ୍ତାରିଲା ସ୍ୱପ୍ରଭାବ । ଜିଣିଲା ସେ ବହୁ
ରାଜ୍ୟ ବାହୁବଳେ, ତାର ଦୁର୍ଦ୍ଧର୍ଷ ପ୍ରତାପେ
ହେଲେ ତାହାଳକ ନୃପେ ଶଙ୍କିତ ସରବେ;
ବଳେ ଛଳେ କଉଶଳେ ଉତ୍କୋଚ ପ୍ରଦାନେ
କରି ସେ ସ୍ୱାଧୀନ ବହୁ ପାର୍ବତୀୟ ଜାତି
ଶେଷେ ଆକ୍ରମିଲା ଯାଇ ହସ୍ତିନା ନଗରୀ
ଗୋପନେ ନିଶୀଥେ, ଥିଲେ ନଗରନିବାସୀ
ବିଶ୍ରାମଦା ନିଦ୍ରାଦେବୀ ଅଙ୍କେ ଅଚେତନ,
ଏକାଳେ ପିଶାଚ ପଶି ଖଣ୍ଡରୂପେ ପୁରେ
ବଧ କରି ରାଜପାଳାଭିଧ ସୁପ୍ତନୃପ,
ନିରାପଦେ ଅଧିକାରି କଲା ସିଂହାସନ ।
ଶୁଣି ଏହି ଦୁଃସମ୍ବାଦ ଉଜ୍ଜୟିନୀପତି
ଚତୁରଙ୍ଗ ସେନା ସହ କଲେ ଅଭିଯାନ
ଶକାଦିତ୍ୟ ବିରୁଦ୍ଧରେ ହସ୍ତିନାଭିମୁଖେ ।

ଜାହ୍ନବୀ-ମେଖଳାମୟୀ ହସ୍ତିନା ସୁଷମା
ନିରେଖି ବିକ୍ରମାଦିତ୍ୟ, ଭାଳିଲେ ସ୍ୱଗତେ—
ଭାରତ ମସ୍ତକେ ଏ କି ଶେଫାଳିକା ଗଭା ?
କେବଣ ଅଦ୍ଭୁତ ଶିଳ୍ପୀ ଇଚ୍ଛାମାତ୍ରେ ଯେହ୍ନେ
ସୃଜିଛି ଏ ରମ୍ୟା ପୁରୀ, ଇଚ୍ଛା ଉପାଦାନେ ।
ଜଗତେ ଆଦର୍ଶ ଯାର ବୀରତ୍ୱ, ମହତ୍ତ୍ୱ,
କ୍ଷମା, ତେଜସ୍ୱିତା, ସୁତେ ଯାର ଶୌର୍ଯ୍ୟନୀତି—
ଉଦ୍ଧାମ-ସେବକ, ଯେହ୍ନୁ ଗତ ଗୌରବର
ଅଙ୍ଗୁଳିନିର୍ଦ୍ଦେଶ ସ୍ତମ୍ଭ ଆର୍ଯ୍ୟସମାଜର,
ବୀରତ୍ୱର ବରଣୀୟ ସେ ପୁଣ୍ୟତୀର୍ଥର
କି ତୁଳନା କାହିଁ ? ଏହି ସୁନ୍ଦରୀ ପୁରୀର
(ରାଜସୂୟ ଅଶ୍ୱମେଧ ଆଦି ଯଜ୍ଞପୂତ)
ପ୍ରତ୍ୟେକ ଇଷ୍ଟକଖଣ୍ଡ ପ୍ରତ୍ୟେକ ଅଣୁରେ
ବିଜଡ଼ିତ କେତେ ମହାସ୍ମୃତି—ଉଦ୍ଘାଟିତ
କେତେ ପୁରାବୃତ୍ତପୃଷ୍ଠା, କେ କଳିବ ତାହା ?
ଭାଳୁ ଭାଳୁ ଏହିପରି ପ୍ରତେ ହେଲା ଭୂତ
ବର୍ତ୍ତମାନ ପ୍ରାୟ, ସତେ କି ହସ୍ତିନା ପୁଣି
ଧରିଲା ବକ୍ଷରେ ସେହି ଅତୀତ ଯୁଗର
ବୀରତ୍ୱ-ମହିମାମୟ ଅପ୍ରତିମ ଛବି,
ସତେ ଯେବେହ୍ନେ ଝୁଲିଗଲେ ଆଖିଆଗେ ଖରେ
ଭୀମାର୍ଜୁନ ମହାରଥ, ଭାରତ-ଗୌରବ,

ସଗର୍ବେ ଉଡ଼ାଇ ନଭେ ବିଜୟପତାକା ।
ବୀରବର ଏ ନୀରବ ମହାଅଭିନୟ
ବିକ୍ରମଙ୍କ ବୀର ହୃଦ ଲଭିଲା କି ଶିକ୍ଷା
ମହାଗୂଢ଼ତର, ତାହା ଜାଣନ୍ତି ସେ ଏକା ।
ଏଣେ ଶକାଦିତ୍ୟ ଶୁଣି ବିକ୍ରମାଗମନ
ନିଜକୁ ଅକ୍ଷମ ମଣି ପ୍ରତିଯୋଗିତାରେ
ବିନା ଯୁଦ୍ଧେ ରାଜ୍ୟ ତେଜି ପଳାଇଲା ଭୟେ,
ନିରୁପଦ୍ରବରେ ତହୁଁ ଅବନ୍ତୀ-ମଣ୍ଡନ
କଲେ ଅଧିକାରଭୁକ୍ତ ହସ୍ତିନା ନଗରୀ ।
ସେ ଦିନୁ ଶକାରି ଆଖ୍ୟା ଲଭି ନରମଣି
ପ୍ରଚଳିଲେ ରାଜ୍ୟ ମଧ୍ୟେ ଶକାବ୍ଦ ସ୍ୱନାମେ ।
ବିଜୟଶ୍ରୀବିମଣ୍ଡିତ ହୋଇ ମାଳବେଶ
ଘେନିଣ ବିଜୟଲବ୍ଧ ବହୁ ରତ୍ନରାଶି,
ଅଗଣିତ ଅଶ୍ୱ ଗଜ ରଥ ଆଦି ସହ
ସସୈନ୍ୟେ ବାହୁଡ଼ି ଗଲେ ସ୍ୱରାଜ୍ୟେ ସାନନ୍ଦେ ।

ଇନ୍ଦ୍ରଦତ୍ତ ସିଂହାସନେ ବସି ବୀରମଣି
ଶାସିଲେ ସାମ୍ରାଜ୍ୟ ସୁଖେ, ସ୍ୱର୍ଗେ ଇନ୍ଦ୍ର ଯଥା,
ତାହାଙ୍କର ଶୌର୍ଯ୍ୟ ବୀର୍ଯ୍ୟ ପ୍ରତାପ-ମୟୂଖ
ବ୍ୟାପିଲା ଧରଣୀ, ସ୍ୱଚ୍ଛ ପୂତ ସେ ଆଲୋକେ
ଭଜିଲା କ୍ଷୀଣତା ସର୍ବ ନରପତି ପ୍ରଭା,

ପ୍ରକାଶନ୍ତି ଜ୍ୟୋତି ସତ୍ୟ ତାରକାନିକର,
ମାତ୍ର ଉଦେ ହେଲେ ଚନ୍ଦ୍ର, ଦିଶନ୍ତି ମଳିନ,
( ମଳିନ ଯେସନ ଦୀନ ହାସ୍ୟ ) ସ୍ୱାଭାବିକ
ଏହା । ଦିଗଙ୍ଗନାକୁଳ ଗାଇଲେ ତାଙ୍କର
ଗୌରବ-ଗରିମା-ଗୀତ କୋଟି କଣ୍ଠ ଫେଡ଼ି;
ମହାରାଷ୍ଟ୍ର ଦେଶପତି ଶୁଣି ସେ ଗୀତିକା
ଉତ୍‌ଫୁଲ୍ଲି ବିପୁଳାନନ୍ଦେ ଭାଳିଲେ ଏସନ—
ଏତେ ଦିନେ ଇଷ୍ଟଦେବ ପ୍ରସନ୍ନ ମୋ ପ୍ରତି,
ଏତେ ଦିନ ପରେ ଆଣି ଘଟାଇଲା ବିଧି
ମୋ କନ୍ୟାର ଯୋଗ୍ୟ ପାତ୍ର, ମୋର ମନୋମତ,
ଇନ୍ଦୁମୁଖୀ ଇନ୍ଦୁମତୀ ତନୟା ମୋହର,
ଅନନ୍ତ ଲାବଣ୍ୟଧାମ, ଅନନ୍ତ ସଦ୍‌ଗୁଣା,
ସରଳତା ପବିତ୍ରତା ସୁବର୍ଣ୍ଣ ପ୍ରତିମା,
ଆହା, କି କୋମଳହୃଦା ଜେମାମଣି ମୋର,
କରୁଣାର ଉପାଦାନେ ବିଧାତା କି ଅବା
ନିର୍ମାଣିଛି ସୁକୁମାରି ଅଙ୍ଗଯଷ୍ଟି ତାର,
ନିହିଛି ଲୋତକ କେତେ ତାହା କେବେ ପୁଣି,
ଆତୁର ଦରିଦ୍ର ଦୁଃଖ ଦର୍ଶନ ମାତ୍ରକେ
ଝରେ ତହୁଁ ଝର ପ୍ରାୟ ଅଶ୍ରୁ ଅନର୍ଗଳ ।
ରାଜକନ୍ୟା, ମାତ୍ର ନାହିଁ ଅଳିଅଳି ଭାବ,
ସଦା ଦୁଃଖି-ଦୁଃଖେ ଦୁଃଖୀ, ଦୁଃଖୀର ଆଶ୍ରୟ ।

ନାହିଁ ଥିଲେ ଐଶ୍ୱର୍ଯ୍ୟର ବିକୃତାଡ଼ମ୍ବର ।
ଯେସନ ବିକ୍ରମାଦିତ୍ୟ କଷିତ-କାଞ୍ଚନ
ନୃପତିସମାଜେ, କନ୍ୟା'ରତନ ତେସନ
ନୃପଜା ସୃଷ୍ଟିରେ, ଉଭେ ଉଭୟର ସମ,
ନଷ୍ଟେ ସେ କାଞ୍ଚନେ ମୁହିଁ ଯୋଜିବି ରତନ ।
ଏହା ଭାବି ରାଇ ପାଶେ ପାଣି ମିତ୍ରଗଣେ,
ଯେନ ତାଙ୍କ ପରାମର୍ଶ, ବରଗିଲେ ଦୂତ
ଅବନ୍ତୀ ନଗରେ, ଲେଖି କରଣ ଚଠାଉ ।

ଦିବସର ଶ୍ରାନ୍ତ-ଶୀର୍ଣ୍ଣ ଶେଷ ରଶ୍ମିରେଖା
ମିଶିଗଲା ସନ୍ଧ୍ୟାନଳେ, ମିଶି ଯାଏ ଯଥା
ମୁମୂର୍ଷୁର ଶେଷ ଆଶା, ଚିର ନିବୃତ୍ତିର
ମହାମୌନତା ଗରଭେ, ବାରୁଣୀ-ତାପସୀ
ବହିଲା ଆରତି ଚନ୍ଦ୍ର-ଦୀପେ ସନ୍ଧ୍ୟା ବ୍ରତ,
ନାହିଁ କେବେ ବିରତି ସେ ମହା ଆରତିର,
ସେ କାଳର ରମଣୀଙ୍କୁ ସେ ଆତ୍ମବିସ୍ମୃତ
ମାଧୁର୍ଯ୍ୟ ପ୍ରକୃତିଦେବୀ ପ୍ରତି ପ୍ରେମକୂପେ
ମୁକ୍ତ କରି କି ଅନନ୍ତ ଜ୍ଞାନ-ଗନ୍ତାଘର,
କଲା ତାକୁ ଧ୍ରୁବ ସତ୍ୟ ମହିମା-ଜୃମ୍ଭିତ ।
ବହିଲା ଚନ୍ଦ୍ରିକା ଧାରା, ମଣି ତାକୁ ଧରା
ଦେବ-ଆଶୀର୍ବାଦଧାରା ଧରିଲା ମସ୍ତକେ,

ହସିଲେ କୁସୁମେ, ମାତ୍ର ଦୁଃଖିନୀ ପଦ୍ମିନୀ
ପୋତିଲା ତଳକୁ ମଥା, କି ତୀବ୍ର ବ୍ୟଥାରେ,
ସେ ଅବ୍ୟକ୍ତ ବେଦନାର ଘନ କାତରତା
ବାହାର ପଡ଼ିଲା ତାର ଚକ୍ଷୁ ମୁଖ ଦେଇ ।
ଏ ସମୟେ ମିଳି ଦୂତ ବିକ୍ରମ ସକାଶେ
ଅର୍ପିଲା ବିନୟେ ଧୀରେ ଶ୍ରୀଗୁମୂରେ ଲେଖ;
ଅନନ୍ତର ଯଥାକାଳେ ଶିକାରୁ ବିକ୍ରମ
ବିଜେହେଲେ ଟେହବରେ * ମହାରାଷ୍ଟ୍ର ଦେଶେ,
ପରମଗୌରବେ ତାଙ୍କୁ ଗ୍ରହି ନରପତି
ସମର୍ପିଲେ ତାଙ୍କ କରେ ଦୁହିତା ନିଜର,
ଅପୁତ୍ରିକ ରାଏ, ତେଣୁ ଯଉତୁକରୂପେ
ଦେଲେ ମହାରାଷ୍ଟ୍ର ରାଜ୍ୟ ନବ ଜାମାତାଙ୍କୁ ।
ସରିଲା ବିବାହ, ନବ ଦମ୍ପତୀଯୁଗଳ
ଲଭି ପରସ୍ପରେ ସଙ୍ଗୀ ଦୀର୍ଘ ଜୀବନର,
ସହାୟ ସମ୍ବଳହୀନ ଭବ-ମରୁପଥେ,
ମଣିଲେ କୃତାର୍ଥ । †ନରପ୍ରାଣେ ପରଶିଲା
ମଙ୍ଗଳ ସଂସ୍କାର ସାର, ବର କନ୍ୟାଙ୍କର
ହସ୍ତଗ୍ରନ୍ଥି ନୁହେଁ ଖାଲି ପ୍ରଣୟ ବନ୍ଧନ,

---

* ଅଡ଼ମ୍ବର ।

† ବିକ୍ରମାଦିତ୍ୟ ମହାରାଷ୍ଟ୍ର ରାଜକନ୍ୟା ଚନ୍ଦ୍ରମତୀଙ୍କ ପାଣିଗ୍ରହଣ କରିଥିଲେ । ଐତିହାସିକ ପ୍ରମାଣ ମୃଗ୍ୟ ।

ଧର୍ମର ବନ୍ଧନ ତାହା, ସତ୍ୟର ବନ୍ଧନ,
ଅଚ୍ଛିନ୍ନ ଅଭିନ୍ନ ତେଣୁ, ବିବାହ ଦିବସ
ଭବାଶ୍ରମ ପ୍ରବେଶର ଆଦ୍ୟ ଦିନ ସିନା,
ସେ ଦିନୁ ଆରମ୍ଭ ହୁଏ ଧର୍ମଜୀବନର
ପ୍ରକୃତ କର୍ତ୍ତବ୍ୟ, ତାହା ମହାଶୁଭ ଦିବା ।
ନବୀନା ମହିଷୀ ସହ ଅବନ୍ତୀଭିରସା
ବାହୁଡ଼ିଲେ ରଥେ ବସି ସଦଳେ ସ୍ୱଦେଶେ,
ବିକ୍ରମଙ୍କ ଦକ୍ଷେତରେ ମହାରାଷ୍ଟ୍ର ଜେମା
ଶୋଭିଲେ ଯେସନ ପୁଣ୍ୟ ପାଶେ ପବିତ୍ରତା,
ଅବା ତପଃ ପାଶେ ସିଦ୍ଧି, କୃପା ସ୍ନେହ ପାଶେ,
ଅଥବା ବସନ୍ତ ରଜା ବିଜେ ପୁଷ୍ପରଥେ
ସୁଷମା-ସାମ୍ରାଜ୍ଞୀ ସହ, ମହାସମାରୋହେ ।
ଲଗିଲା ବେନଙ୍କ ମଧ୍ୟେ ଦାମ୍ପତ୍ୟ ସମ୍ଭାଷ,
ପ୍ରଥମତଃ ଥରେ ଥରେ ବାଧା ଦେଲା ବ୍ରୀଡ଼ା,
ମାତ୍ର ଉଦ୍ଦାମ ପ୍ରୀତିର ପ୍ରଖର ପ୍ରବାହେ
ହୋଇ ସେ ଅକ୍ଷମ ଶେଷେ ଆତ୍ମା ସୁରକ୍ଷଣେ
ବୁଡ଼ିଗଲା ତହିଁ । ବହୁ କଥାବାର୍ତ୍ତା ପରେ
ଭାଷିଲେ ଦୟିତ—ପ୍ରିୟେ, ଭାଗ୍ୟଧର ମୁହିଁ
ଲଭି ତୁମ୍ଭ ଭଳି ପତ୍ନୀ—ନିଖିଳ ସଦ୍‌ଗୁଣା,
ଆଜଠାରୁ ହେବ ସତ, ତୁମ୍ଭେ ଗୋ ପୂଜିତା
ମୋର ହୃଦ-ସିଂହାସନେ, ପ୍ରେମ-ପାରିଜାତେ ।

ଉତ୍ତରିଲେ ଇନ୍ଦୁମତୀ, ସୁନ୍ଦରୀ-ଇନ୍ଦ୍ରାଣୀ,
ପ୍ରଭୋ, ଏ କି ଅସଙ୍ଗତ କଥା, କରିବାକୁ
ଅଧିକାର ହୃଦ ତବ, ପବିତ୍ର ପରମ,
ଅଛି କି ରମଣୀ କାହିଁ ରମଣୀ-ସୃଷ୍ଟିରେ ?
ତୁମ୍ଭେ ମୋର ସ୍ୱାମୀ, ପୂଜ୍ୟ ହୃଦୟଦେବତା,
ଆକାଂକ୍ଷାର ସ୍ୱର୍ଗଧାମ, ଏ କିଣା କିଙ୍କରୀ
ସେବାଦାସୀ ବିନା, ଦେବ, ଚରଣେ ତୁମ୍ଭର ।
କହିଲେ ନୃମଣି, ପ୍ରିୟେ, ଏହି ଆତ୍ମଗ୍ଲାନି
ତବ ବିଶେଷତ୍ୱ, ସ୍ତ୍ରୀତ୍ୱ, ମହତ୍ତ୍ୱ, ଦେବତ୍ୱ,
କିପାଁ ନ ମଣିବି ଧନ୍ୟ ଲଭି ମୁଁ ତୁମ୍ଭଙ୍କୁ ?
ଏହିପରି ସ୍ନେହାଳାପ କରୁଁ କରୁଁ ଦୁହେଁ
ମିଳିଲେ ଅବନ୍ତୀ ରାଜ୍ୟେ, ତହୁଁ ଯଥାବିଧି
ଲାଗିଲା ଆନନ୍ଦୋତ୍ସବ ସପ୍ତ ଦିବା ନିଶି ।
ନବୀନା ଭାମିନୀ ସହ ବିକ୍ରମ ନୃପତି
ସଂଯାପିଲେ ସୁଖେ ଦିନ ଏକ ମନ ପ୍ରାଣେ,
କରୀ କରିଣୀ କି ବଦ୍ଧ ଏକଇ ଶୃଙ୍ଖଳେ !
ମିଶିଲା ଆତ୍ମାରେ ଆତ୍ମା, ଭିନ୍ନ ଖାଲି ଦେହେ ;
ଯଥା ଏକମାତ୍ର ଶବ୍ଦ ଦ୍ୱିଅର୍ଥ ବୋଧକ ।
ଏହି ଶୁଭ ଉଦ୍ୱାହର ସ୍ଥାୟୀ ସ୍ମୃତିରୂପେ
ସଂସ୍ଥାପିଲେ ବିକ୍ରମାର୍କ ନବ ରାଜ୍ଞୀ ନାମେ
ଇନ୍ଦୁପୁର ରାଜ୍ୟ, ଯାମ୍ୟଭାଗେ ଅବନ୍ତୀର,

ପରିଚିତ ଏବେ ତାହା ଇନ୍ଦୋର ଆଖ୍ୟାରେ ।
ଏ ଅନ୍ତେ ଅବନ୍ତୀ-ପତି-ମନ୍ତ୍ରୀ-ସୁନାସୀର
ସାଜିଲେ ବରିଷ୍ଠ ଚମୂ ଦିଗ୍‌ବିଜୟ ଆଶେ,
ବାହାରିଲେ ଜୟଶୀଳ ଉଜ୍ଜୟିନୀ ଘରେ
ଦୀପ୍ତ ପ୍ରକ୍ଷ୍ୱେଡନଧାରୀ, ଉଠୁଛି ଆଭାସି
ପ୍ରାକର୍ମ୍ମ, ସାହସ ନେନ୍ତୁ, କମ୍ପାଇ ଆକାଶ
ଜୟ ମହାକାଳ ରବେ, ଶୁଭିଛନ୍ତି ଘରେ
ଅସ୍ତ୍ରଲେଖାଙ୍କିତ ବକ୍ଷ ଫୁଲାଇ ଉଲ୍ଲାସେ,
ସମ୍ମୁଖସାମନ୍ତ ସର୍ବେ, ମହାଶ୍ୱେତ ସ୍ଥଳ
ଭୟଙ୍କର, ଦୁରନ୍ତ ରାଢ଼, ଆଉ ଆନ କଥା,
ସମରେ ଅମରଜ୍ଞୟ, ଅପୃଷ୍ଠଦରଶୀ,
ତେଣୁ ନାହିଁ ଅସ୍ତ୍ରଲେଖା ପୃଷ୍ଠେ । ତାଙ୍କ ପଛେ
ସୁବର୍ଣ୍ଣ କଳସ ଯୁକ୍ତ ସୁନ୍ଦରସ୍ୟନ୍ଦନ,
ଗର୍ବୋନ୍ନତଗ୍ରୀବ ଅଶ୍ୱ, ମତ୍ତ ଦନ୍ତାବଳ—
ଆସୁରୀ ଅମାର—ହେମ କୁବେଣୀମଣ୍ଡିତ
ମିଶିଲେ ତା ସହ ଆସି ହସ୍ତିନାନିବାସୀ
ଉଦଗ୍ର ଆସ୍ତିକବୃନ୍ଦ, ଶୁଣ୍ଡୁଳ, ପୃଥୁଳ,
ବିଶାଳ ଉଷ୍ଣୀଷ ଶିରେ, ଦିଶୁଛନ୍ତି ଯଥା
ଆଂଶିକ * ନୃସିଂହ ମୂର୍ତ୍ତି, ବିନା ପରଶନେ
ହରନ୍ତି ଯେ ଦର୍ଶକ ମାନଙ୍କେ ଅରାତିଙ୍କ

* ଭୟାନକ ।

ଅର୍ଦ୍ଧେ ବଳ, ଅର୍ଦ୍ଧେ ଧୈର୍ଯ୍ୟ । ଆସିଲେ ଆବର
ମହାରାଷ୍ଟ୍ର ମହାଗଣରେ, ମହାରଣରଙ୍ଗୀ
ଗୃହିଣୀ ଗୌରବବ୍ୟଞ୍ଜୀ ଉଦାର, କଠୋର,
ଯାହାଙ୍କ ତ୍ରିଶୂଳ ମୂନେ ବସେ ଅଲକ୍ଷରେ
ଭୁବନ-ଦମନ-ଦକ୍ଷ ଦୁରନ୍ତ ଶମନ ।
ଏହିରୂପେ ନାନା ଦେଶ ସୈନ୍ୟ ସମାବେଶେ
ହେଲା ପରିବ୍ୟାପ୍ତ ମହୀ ଅଷ୍ଟାଦଶ ଯୁଣ, *
ସଂଖ୍ୟାରେ ପୂତନା ହେଲା ତ୍ରିକୋଟି ପଦାତି,
ରଥାରୋହୀ ଅଶ୍ୱାରୋହୀ ସେହି ପରିମିତ,
ଚତୁଷ୍କୋଟି ଗଜ ରୋହୀ, ଚତୁର୍ଲକ୍ଷ ପୋତ
ଘେନ ଚତୁରଙ୍ଗବଳ ବିଜେ ହେଲେ ରଥେ
ଭାରତେ ଅପ୍ରତିରଥ ବିକ୍ରମାର୍କ ରଥୀ,
ସଚଳ ସାଗର ପ୍ରାୟେ ଚଳିଲା ବାହିନୀ,
ପ୍ରଥମେ ପ୍ରତୀଚୀ ମୁଖେ, ଗମ୍ଭୀର ନିର୍ଘୋଷେ ।
ଯିଚ ତହିଁ ସୈନ୍ୟପନ୍ତ୍ର ଉଷ୍ଣୀଷ ଫେନିଳ,
ରକ୍ତ ବୈଜୟନ୍ତୀମାଳା ବିଦ୍ରୁମ ଲତିକା,
ଧନୁଶର ସର୍ପଜାଳ, ଫଳକ କଚ୍ଛପ,
ଖଡ୍ଗ ମୀନ, ଅଶ୍ୱ ଗଜ ତିମି ତିମିଙ୍ଗିଳ,
ଶକଟ କର୍କଟ,ରଥ ଅଟ୍ଟାଳିତ ପୋତ,
ରତ୍ନାକର-ରତ୍ନରାଶି ବୀର ଅଳଙ୍କାର ।

---

* ଯୋଜନ ।

ଘାତ ଲଭି ବିକ୍ରମଙ୍କ ଦୁର୍ବାର ବିକ୍ରମେ
ଥୋକେ ନୃପ, କରି ତାଙ୍କ ବଶ୍ୟତା ସ୍ୱୀକାର,
ଭେଟିଲେ ଶ୍ରୀମୂରେ ଆଣି ରାଜକରରୂପେ
ବହୁ ଧନ, ରତ୍ନ, ଗଜ, ବାଜୀ, ସ୍ୟନ୍ଦନାଦି
ସ୍ୱୀୟ ସ୍ୱାଧୀନତା ସହ, ଭେଟେ ଯଥା ନଦ
ସିନ୍ଧୁ ପଦେ ଢାଳି ଦେଇ ଶରୀର-ସମ୍ବଳ ।
ଚଳାଇ ସ୍ୱକୀୟ ଶକ ବିଜିତ ପ୍ରଦେଶେ
ଘେନ ପରାଜିତ ସୈନ୍ୟେ ହେଲେ ଅଗ୍ରସର
ରାଏ ଅନ୍ୟ ରାଜ୍ୟ ପ୍ରତି; ମିଶି ଠାବେ ଠାବେ
ପଥେ ବହୁ ନରପତି ଚମୂ, ହେଲା କ୍ରମେ
ସମ୍ରାଟବାହିନୀ ଉଗ୍ର ପୃଥୁତର, ଯଥା
ନଦୀ ଘେନ ଗତିପଥେ ବହୁ ଉପନଦୀ
ହୁଏ ପୃଥୁତମା । ବଳେ ଯଦି ବିକ୍ରମ ସମ
ହେଲେହେଁ ବିକ୍ରମ, ମାତ୍ର ନ କରନ୍ତି ରଣ
ଦୁର୍ବଳ ସହିତେ, କେବେ ଯୁଝେ କି ନକୁଳ
ମଣିଚୂଡ଼ ଅହି ଭିନ୍ନ ମସିଲତା ସହ ?
ସତତ ସଦୟ ସେହୁ ପରାଜିତ ପ୍ରତି,
ମାତ୍ର ଯେ ବଳସୁଦର୍ପେ ବିଜିତ ଉପରେ
କରେ ଅତ୍ୟାଚାର, ନୁହେ ବୀର ସେ କଦାପି,
ସେ ପିଶାଚ, ନରୁ ହିଂସ୍ରଜନ୍ତୁ ନରରୂପୀ,
ପ୍ରଦର୍ଶେ ସେ ଅସମ୍ମାନ ପୁଣ୍ୟ ବୀରଧର୍ମେ,

ବୀର ପକ୍ଷେ ଶ୍ରେଷ୍ଠ ସ୍ୱର୍ଗ, ସର୍ବଶ୍ରେଷ୍ଠ ତୀର୍ଥ
ରଣସ୍ଥଳୀ, ବୀରର ସେ ଜୀବନ-ବାଞ୍ଛିତ,
ବାଲ୍ୟେ ଯେ ସୁହୃଦବର୍ଗ, ଯୌବନେ ସଙ୍ଗିନୀ,
ବାର୍ଦ୍ଧକ୍ୟରେ ମରଣର ଶେଷ ମହାଶଯ୍ୟା,
କରେ ତାଙ୍କୁ ଅପବିତ୍ର ଅତ୍ୟାଗୃହୀ ବୀର ।
ପଶ୍ଚାତ୍ତେ ଯେ ଶତ୍ରୁ ପ୍ରତି ପ୍ରକାଶେ କରୁଣା,
ମଣେ ଶତ୍ରୁ ଗୌରବକୁ ନିଜର ଗୌରବ,
ସେହି ବୀର, ବୀରତ୍ୱର ମହିମିତ ଭୂଷା ।
ଲଙ୍ଘି ବହୁ ବନ ଗିରି ଗୁରୁକାନ୍ତଚୂଡ଼,
ବିସ୍ତୀର୍ଣ୍ଣ ପ୍ରାନ୍ତର, ନଦୀ, ରମ୍ୟ ରାଜଧାନୀ,
ମିଳିଲା ବାହିନୀ ଯାଇ ଗୁଇକ୍ୱାଡ ଦେଶେ,
ସ୍ୱଦେଶ ରକ୍ଷାର୍ଥେ ତହୁଁ ସେ ରାଜ୍ୟ ସୈନିକେ
ଦଳେ ଦଳେ ଦୁର୍ଗ ମଧ୍ୟୁ ହୋଇ ବହିର୍ଗତ
ଧାଇଁଲେ ଅରାତି ପ୍ରତି, ସନ୍ଧ୍ୟାଗମେ ଯଥା
ବାହାର ଗେରୁଆ ଖୋଲୁ * ପଲ ପଲ ହୋଇ
ଅସଂଖ୍ୟ ଅଜ୍ଞାନପକ୍ଷ † ହୁଅନ୍ତି ଧାବିତ
ଆକାଶେ ଉଦ୍ୟାନ ମୁଖେ ‡ ଫଳାଶନ ଆଶେ ।
ଉତ୍ତେଜନା ଉଚ୍ଛ୍ୱାସରେ ପୂର୍ଣ୍ଣ ପ୍ରଦୀପିତ
ସକଳ ବୀରର ଆସ୍ୟ, ନିଷ୍ଠୁର ହାମିତ,

---

* ଗଞ୍ଜାମ ଜିଲ୍ଲାସ୍ଥ ଇଚ୍ଛାପୁରର ସୁନାମଧନ୍ୟ ପର୍ବତ । † ବାଦୁଡ଼ି ।
‡ ସମସ୍ତ ଜିଲ୍ଲାସ୍ଥ ଉଦ୍ୟାନଶ୍ରେଣୀ ।

ପ୍ରତେ ହୁଏ, ଯେଉଁ ସର୍ବେ ଶତ୍ରୁର ଅପେକ୍ଷା
ଅଧିକ ବଳିଷ୍ଠ ମନେ, ଲାଗିଲା ସମର,
ମାତ୍ର କେତେ କ୍ଷଣ ଅବା ତିଷ୍ଠିବ ଶଲଭ
ଜ୍ୱାଳାବଳୀବିଭୂଷିତ ଜ୍ୱଳନ୍ତ ଅନଳେ ?
ନ ପାରି ବିପକ୍ଷବୀର୍ଯ୍ୟ ସହି ଗୁଇକ୍ୱାଡ଼େ
ପଳାଇଲେ ଇତସ୍ତତଃ ଭଙ୍ଗ ଦେଇ ରଣେ,
ଆଶାର ସୁବର୍ଣ୍ଣ-ସୌଧ ହେଲା ଧୂଳିସାତ ।
ଏଥୁଅନ୍ତେ ଜୟୋଲ୍ଲାସେ ବିଜୟୀବାହିନୀ
ଚଳିଲା ଗୁର୍ଜର ଦେଶେ * ସାଗର-ମେଖଳ,
ଧୌତ ଯାର ବକ୍ଷ ସଦା, ଧୌତେ କକ୍ଷ ଯଥା,
ଦ୍ୱୀପ ଦ୍ୱୀପାନ୍ତରାଗତ ମାଣିକ୍ୟ ମୌକ୍ତିକେ,
ମହାଦୁର୍ଗ ଭାରତର ଜଳଦ୍ୱାରରୂପୀ,
ବସି ଯେଉଁ ଦ୍ୱାରେ ଆହା ଭାରତଜନନୀ
କରନ୍ତି ଶ୍ରବଣ ନିତ୍ୟ ରତ୍ନାକର ମୁଖେ
ସଂସାରର କି ଦୁର୍ବୋଧ ବ୍ୟାକୁଳ ବେଦନା-
ଗୀତ, ସେ ଅନନ୍ତ ରୁଦ୍ର ଅଖଣ୍ଡ ଗୀତିକା
ଅନନ୍ତ ଆକାଶ ଶୁଣି ସ୍ତମ୍ଭିତ ସର୍ବଥା ।
ଗର୍ଜିଲା ଗୁର୍ଜରମହୀ ହେରି ବୈରିଆଟ,
ମାତ୍ର ତାହା ବୃଥା, ଶୂନ୍ୟଗର୍ଭ ଆସ୍ଫାଳନ,
ବ୍ୟର୍ଥ ଆସ୍ଫାଳନ ଯଥା ତା ପଦେ ସିନ୍ଧୁର;

* ଅଧୁନାକ ଗୁଜରାଟ

ନିରେଖି ଗୁର୍ଜରପତି ସୈନ୍ୟ-ପାରାବାର
ହୋଇ ସ୍ତବ୍ଧ ମହାଶ୍ଚିତ, କଲେ ଅସି ଶିରେ
ସନ୍ଧି ଅର୍ପି ଯଥୋଚିତ ରାଜକର, ତହୁଁ
ବିଜେ ହେଲେ ବିକ୍ରମଙ୍କ କଚ୍ଛ ଉପକୂଳେ ।
ପୁରୋଭାଗେ ରତ୍ନାକର ଅଛି ବିଲମ୍ବିତ,
ଚିର ଖଚୀ ବିକ୍ଷୋଭିତ, ଅକଳିତକୂଳ,
କି ରୁଦ୍ର ବିସ୍ତୃତ ଅହୋ, ଅନନ୍ତ, ଅଗମ୍ୟ,
ଯେସନ ହିରଣ୍ୟଗର୍ଭ, ଖିଳ ଜ୍ଞାନାତୀତ,
ମାନବର କ୍ଷୁଦ୍ରାଦପି କ୍ଷୁଦ୍ର ଅନୁଭୂତି
ନ ପାରି ସେ ବିସ୍ତୃତିର ସୀମା ସ୍ପର୍ଶ କରି,
ବୁଡ଼ିମରେ ଶେଷେ ତାର ଅଗାଧ ସଲିଳେ ।
ଅର୍ଦ୍ଧମୁକୁଳିତ ବକ୍ଷ ଦେଖାଇ ପ୍ରକୃତି
ପ୍ରକାଶେ କି ବିଶ୍ୱଭୂମା ମହିମା-ଗରିମା,
ବିରାଟ ବିକଟ ରମ୍ୟ ସାଗର ତାଣ୍ଡବେ
ହେଲେ ନୃପବର ସ୍ତବ୍ଧ, ବିଶାଳ-ବାରିଧି,
ବିଶାଳ ବିକ୍ରମ-ହୃଦ, ବିଶାଳ ବିଶାଳ
ଭେଟି—ବାରୀନ୍ଦ୍ର ନରେନ୍ଦ୍ର ଭେଟି, ମହାମହା
ମିଳନରେ ସଂଜାତ କି ମହାଭାବ ଅବା
କେ କହିବ ତାହା, ସେ ଯେ ଅଜ୍ଞେୟ ଅନ୍ୟର ।
ପୂର୍ବରୁ ସଜ୍ଜିତ ତହିଁ ଥିଲି ରଣତରୀ
ଚଳିଲି ଅସଂଖ୍ୟ, ନୃପ ଆରୋହି ସଦଳେ

ରୋମ ରାଜ୍ୟ * ଅଭିମୁଖେ କଲେ ଅଭିଯାନ,
ଚଳିଲା ତରଣୀସଙ୍ଘ ଲହରୀ ବିଦାରି
ବିହଙ୍ଗଗତିରେ ଖରେ, ପ୍ରତେ ହେଲା ଯଥା
କେଉଁ ମହାନଗରୀ ବା ଯାଉଅଛି ଭାସି
ଲଙ୍ଘି କ୍ରମେ ସିନ୍ଧୁ ସିନ୍ଧୁ ପବନସଙ୍ଗମ, ¶
ରଖି ଦକ୍ଷଭାଗେ ଅବ୍ଧ—ଆରବ-ମୁଖର
ଆରବ ନଗରେ, ମ୍ଳେଚ୍ଛ ଯବନବସତି,
ପଡ଼ିଲା ତରଣୀବାର ଲୋହିତ ସାଗରେ,
ହେବ ତହିଁ ରକ୍ତ ଜଳ ଭାରତୀୟ ଶରେ
ଲଭିଲେ ବିସ୍ମୟାନନ୍ଦ, ପ୍ରତିଫଳି ମୁଖ
ଲୋହିତ ସଲିଳବକ୍ଷେ ଦିଶିଲା ରକ୍ତାଭ,
ପଦ୍ମ ଯଥା ବୋଳହୋଇ ଉଷା ପାଟଳିମା;
କା' ସହ ତର୍ଜ୍ଜର କ୍ରୀଡ଼ା ଇଚ୍ଛି ସୃଷ୍ଟିରାଣୀ
ସ୍ବଚ୍ଛନ୍ଦ ଫଗୁଜଳେ ମହାଜଳାଶୟ,
ଖେଳୁଛି ଲୋହିତବାସ ଲୋହିତ ଉରସେ,
ରୂପ-ପାରାବାରେ ଯଥା ସୁଷମା ଲହରୀ
କିମ୍ବା ଉଠେ ରଙ୍ଗଘନେ ରଙ୍ଗ ବିଦ୍ୟୁ ଭାସି ।
ଓହ୍ଲାଇ ବାହିନୀ ତହିଁ, ଚଳି ଖଣ୍ଡେ ଦୂର
ଆରୋହିଲା ତରୀ ପୁଣି ଭୂମଧସାଗରେ,
ଧାଇଁଲା ତରଣୀ ଏବେ ଭୂମଧ୍ୟସାଗରେ,
ଲୋହିତସାଗର ଶୋଭା ଦିଶିଲା ସେଠାରୁ
ସୀମନ୍ତ ସିନ୍ଦୂର କାନ୍ତି ପ୍ରାଚ୍ୟ ପ୍ରକୃତିର ।

---

* ଇଟାଲିର ଅନ୍ତର୍ବର୍ତ୍ତୀ ରାଜ୍ୟ ।    ¶ ସମୁଦ୍ର ଏବଂ ସିନ୍ଧୁନଦ ।

ଦିଶିଲା ଅଗ୍ରତେ ହେମ ସୁରମ୍ୟ ନଗରୀ,
ଇତିହାସସୁପ୍ରସିଦ୍ଧା, ସୌଭାଗ୍ୟଶାଳିନୀ,
ସଭ୍ୟତାର ପୁଣ୍ୟ ପୀଠ, ଧନେ, ମାନେ, ଜ୍ଞାନେ,
ପୁଣି ଶୌର୍ଯ୍ୟପ୍ରଭାବରେ ଜଗତେ ଅତୁଳା;
ବିରାଜେ ବାରିଧି ପ୍ରାନ୍ତେ, ନଭଃପ୍ରାନ୍ତେ ଯଥା
ଧ୍ରୁବତାରା, କମ୍ବା ଲଙ୍କା ଭାରତପଶ୍ଚରେ ।
ସେ ଦେଶ ନୃପତି ଶୁଣି ଶତ୍ରୁ ଆଗମନ,
ସାଜି ହିରା ତରୀବ୍ୟୂହ ଓଗାଳିଲେ ପଥ
ବିପୁଳ ବିକ୍ରମେ ଆସି, ସାଗରବକ୍ଷରେ
ବେନ ନୌବାହିନୀ ଦୂରୁ ଦିଶିଲା ରୁଚିର,
ମଧ୍ୟେ ନୀଳ ପାରାବାର ମାତ୍ର ବ୍ୟବଧାନ,
ଶାରଦୀୟ ମେଘରନ୍ଧ୍ରେ ନଭରେଖା ଯଥା,
ଅଥବା ମର୍କତେ ବନ୍ଧା ରଜଦାଣ୍ଡ ପାଶେ
ଶୋଭେ ନବରାଜଧାନୀ ନବରତ୍ନଖଚୀ·
ବାସ୍ରାଶ ବରୁଣଙ୍କର । ଲାଗିଲା ସମର,
ପ୍ରଥମତଃ ତରୀଚୂଡ଼ଧ୍ୱଜ କଟାକଟି,
ଦ୍ୱିତୀୟେ ପରୀକ୍ଷା ବଳ, ଗୁଳିଲା ଆକାଶେ
ଶର, କୋଟି କୋଟି ଉଲ୍କାପ୍ରାୟ ସନସନେ,
ବର୍ଷିଲା ସ୍ଫୁଲିଙ୍ଗରାଶି ବାଣ ସଂଘର୍ଷଣେ,
ଆର୍ତ୍ତନାଦ, ଶରନାଦ, ଧନୁକଟଙ୍କାର
ମିଶିହୋଇ ପୃଥ୍ୱୀଳତ,ଦେଲାକ ବୁଡ଼ାଇ

ପାରାବାର ତରଙ୍ଗନ ଗର୍ଜ୍ଜର ଚହଳ ।
ମଣିମଣ୍ଡୀ ଶୁକ୍‌ଚକତ ଗଜଦନ୍ତ ପୋତେ
ଦେଖୁଥିଲେ ବିକ୍ରମାର୍କ ରଣ, ମନ୍ତ୍ରିବର
ବୀରସେନ ସହ ଧୀରେ ଏତେବେଳଯାଏଁ,
ମାତ୍ର ହେର ଆତ୍ମପକ୍ଷେ କିଞ୍ଚିତ ଦୁର୍ବଳ
ଉଠିଲେ ଉଭସ୍ମ ସ୍ୱରେ ଟଙ୍କାର ଅଧିକ୍ୟ,
ବରଷିଲେ ବାଣଧାରା ବର୍ଷାଧାରା ସମ
ଲଘୁହସ୍ତେ, କିଏ କେବେ ନିଏ ତୂଣୁ ଶର,
ଯୋଖେ ତାହା କେତେବେଳେ ଶରାସନେ ନେଇ,
କେତେବେଳେ କରେ ଅବା ଗୁଣ ଆକର୍ଷଣ,
ହେଲା ନାହିଁ ଜାଣି କିଛି, କେବଳ ସତତ
ଦିଶୁଥାଏ ବେନି ଧନୁ ମଣ୍ଡଳ ଆକାର ।
ବିପକ୍ଷର ରଣତରୀ କେତେ ହେଲା ମଗ୍ନ,
କେତେ ଭଗ୍ନ, ଅର୍ଦ୍ଧଭଗ୍ନ, ବିପର୍ଯ୍ୟସ୍ତ କେତେ,
କେତେ ବା ଅଚଳ, ଦେଖି ତାହା ବିପକ୍ଷର
ହୋଇଗଲା ଚୂର୍ଣ୍ଣୀଭୂତ ଆଶା-ବିନ୍ଧ୍ୟାଚଳ ।
ଲକ୍ଷି ସୋମେଶ୍ୱର ବକ୍ଷ ଶ୍ରୀବିକ୍ରମାଦିତ୍ୟ
ବିନ୍ଧିଲେ ଶାୟକ ଏକ, ମାତ୍ର ପରକ୍ଷଣେ
କିଂଖିଦଣ ମନେ, ପଡ଼ୁ ପଡ଼ୁ ତାହାଯାଇ
ବିପକ୍ଷ ବକ୍ଷରେ, ମାରି ଖରେ ଆନ ଶର
ନେଲେ ତା ଉଡ଼ାଇ, ଦେଖି ଏ ଅଦ୍ଭୁତ ଶିକ୍ଷା

ହେଲେ ଛନ୍ଦଭଙ୍ଗ ଭୟେ ପରପନ୍ଥି ଦଳେ ।
ବନ୍ଦୀ କରି ତହୁଁ ରୋମ ବିଧର୍ମୀ ଅଧିପେ
ବାହୁଡ଼ିଲେ ବିକ୍ରମାର୍କ ଭାରତାଭିମୁଖେ ।
ଚାଲିଲା ତରଣୀବ୍ୟୂହ ଖରେ ଅବିରତ,
ଦୋଳିଖେଳ ଖେଳି ଖେଳି ଲହରୀଦୋଳାରେ,
ଜୟୋଲ୍ଲାସେ ମାତି ସୈନ୍ୟେ କଲେକ ଆବୃତ୍ତି
ଜାତୀୟ ସଙ୍ଗୀତ ସ୍ନିଗ୍ଧ ସୁମଧୁର ସ୍ୱରେ,
ଯଥାକାଳେ ଆସି ସର୍ବେ ମିଳିଲେ ସ୍ୱଦେଶେ ।
ବଶ୍ୟତା ସ୍ୱୀକାର କରି ରୋମ ଅଧିପତି
ମାଗନ୍ତେ ମେଲାଣି, ତହୁଁ ଭାରତ-ସମ୍ରାଟ
ଲଭି ପରିତୁଷ୍ଟି ଦେଲେ ତାହାଙ୍କୁ ବିଦାୟ
ସସମ୍ମାନେ, ଗଲା ବୀର ବିରସେ ବାହୁଡ଼ି,
ସେ ଦିନୁ ଚଳିଲା ରୋମେ ଖଗେନ୍ଦ୍ର-ଅଙ୍କିତ
ସୁନ୍ଦର ଦିନାର ମୁଦ୍ରା ସମ୍ରାଟ-ଆଦେଶେ । *



* ରୋମର ପ୍ରାଚୀନ ମୁଦ୍ରା "ଦିନେରିଅସ୍" ସମ୍ଭବତଃ ବିକ୍ରମାଦିତ୍ୟଙ୍କ ଗରୁଡ଼ାଙ୍କିତ ମୁଦ୍ରାଏହି "ଦିନାର ଶବ୍ଦକ ।"

# ନବମ ସର୍ଗ ।



ଅନନ୍ତର ପୂର୍ବଦିଗ ବିଜୟ-ମାନସେ
ଯାତ୍ରା କଲେ ଯଶୋଧନ ଶ୍ରୀବିକ୍ରମାଦିତ୍ୟ,
ପ୍ରଥମତଃ ମରୁଗର୍ଭ ରାଜସ୍ଥାନ ଜିଣି,
(ଚିର ବୀରଧାତ୍ରୀ ବୀର ପିଣ୍ଡ ମୁଣ୍ଡେ ଗଢ଼ା)
ମିଳିଲେ ସସୈନ୍ୟେ ଯାଇ ପଞ୍ଚନଦ ଦେଶେ
ନବସନ୍ତ ଯହିଁ ଏବେ ଶୂରଶିଖ ଶିଖେ
ଲୌହବର୍ମଧାରୀ, ଯାଙ୍କ ଦ୍ୱିଧାର କୃପାଣ,
ଅରି ଲହୁ-ଲେହନରେ ବିଶେଷ ତତ୍ପର ।
ଘେନ ତହୁଁ ରାଜକର, ହସ୍ତିନା ପଥରେ
ବିଜେ ହେଲେ ବୀରବର ମଥୁରା ନଗରେ,
ପୌରାଣିକ କଂସରାଜ୍ୟ, ଅଦୂରେ ଯାହାର
ରାଜେ ବୃନ୍ଦାବନଧାମ, ନିକୁଞ୍ଜ-ମଞ୍ଜୁଳ,
ଯାର ପୁଣ୍ୟରେଣୁକଣା ବୈଷ୍ଣବ-ବାଞ୍ଛିତ,
ଯେଣୁ ତାହା କୃଷ୍ଣପ୍ରେମେ ବିସିକ୍ତ ଶୀତଳ ;
ବିଳସି ଯେଠାବେ ଶ୍ୟାମ, ଘନଶ୍ୟାମକୁଞ୍ଜେ
ଶ୍ୟାମିକାଙ୍ଗୀ ରାଧା ସହ—ବଜାଇ ମୁରଲୀ

ମୋହିଲେ ଗୋପିକାକୁଳ ଅତୀତ ଯୁଗାନ୍ତେ ।
ନିହିତ କି ଗୂଢ଼ତତ୍ତ୍ୱ କୃଷ୍ଣ ଅବତାରେ
କୃଷ୍ଣରୂପୀ ଆତ୍ମା ବିଜେ ଦେହ—ବୃନ୍ଦାବନେ
ପ୍ରକୃତି—ରାଧିକା ସହ, ବାଇ ଜ୍ଞାନ-ବଂଶୀ
ହରନ୍ତି ସେ ମତିରୂପା ଗୋପାଙ୍ଗଣୀ ମତି,
କରି ଯାରେ ଜ୍ଞାନ-ନେତ୍ରେ ତାଙ୍କୁ ଯେ ଦର୍ଶନ
ସେ ଅଜ୍ଞାତଦେଶେ, ଲଭେ ନିର୍ବାଣମୁକ୍ତି ସେ,
ପ୍ରଦର୍ଶିଲେ ହରି ସିନା କୃଷ୍ଣରୂପ ଧରି
ମାନବ ଶିକ୍ଷାର୍ଥେ ଏହି ରୂପକାଭିନୟ ।
ମଥୁରା ପତନ ଅନ୍ତେ ବିଜୟୀବାହିନୀ
ଚଳିଲା ସରଯୂତୀର କୋଶଳାଭିମୁଖେ,
ରଘୁକୁଳ ରାଜଧାନୀ ସତୀ ସୀତାପୂତ,
ଯା ମହିମା ମହାସ୍ମୃତି ଘୋଷେ ରାମାୟଣ ।
ଗତିପଥେ ଜୟି କରି ପ୍ରୟାଗ ନଗରୀ—
ଜାହ୍ନବୀ ଯମୁନା ଯୋଗ ପୁଣ୍ୟତୀର୍ଥସ୍ଥଳୀ,
ବାରାଣସୀ—କୈଳାସ ଯେ ଭାରତସ୍ୱର୍ଗର,
ପ୍ରବେଶିଲେ ବିକ୍ରମାର୍କ ମଗଧପ୍ରଦେଶେ,
ପଞ୍ଚଶୈଳବିବେଷ୍ଟିତ ଗିରିବ୍ରଜପୁରେ, *
ସ୍ଥାପିଥିଲେ ରାଜଧାନୀ ଜରାସନ୍ଧ ଯହିଁ ।

---

* ବୈଭାରଗିରି, ବିପୁଳଗିରି, ରତ୍ନଗିରି, ଉଦୟଗିରି ଏବଂ ଶୋଣଗିରି । ଅଧୁନିକ ନାମ ରାଜଗୃହ ଗିରିବ୍ରଜପୁର ।

ଉଦ୍‌ବୋଧଇ ଶାକ୍ୟସ୍ମୃତ ପାଶେ ଉରୁବିଲ୍ୱ, *
ତଦନ୍ତେ ପାଟଳୀପୁତ୍ର, ରାମସଂସ୍ଥାପିତ, †
ରାଜେ ଯହିଁ ବୁଦ୍ଧଗୟା, ତୀର୍ଥ ସୁପାବନ, ‡
ତହିଁ ବୋଧିଦ୍ରୁମ ମୂଳେ ଯୋଗୀ ଶାକ୍ୟସିଂହ,
( ଅହିଂସା ପରମଧର୍ମ ଯାଙ୍କ ଧର୍ମଗୀତ )
ଲଭିଥିଲେ ସତ୍ୟଧର୍ମ—ଦିବ୍ୟଜ୍ଞାନାଲୋକ ।
ବାହାର ପାଟଳୀପୁତ୍ରୁ ସମ୍ରାଟବାହିନୀ
ଉପସ୍ଥିତ ଦାତାକର୍ଣ୍ଣ-ଅଗାତ-ପାଳିତ
ଅଙ୍ଗେ, ତହିଁ ପରେ ବଙ୍ଗେ, ଯାର ବଙ୍ଗାଧିପ
ଘେନି ଦନ୍ତାବଳ ବଳ ଅର୍ବୁଦସଂଖ୍ୟକ
ଆରମ୍ଭିଲେ ଘୋର ରଣ, ମାତ୍ର ପରିଣାମେ
ନ ପାରି ସମ୍ଭାଳି ରଏ ବିକ୍ରମ-ବିକ୍ରମ
ଦୁର୍ଦ୍ଦଣ୍ଡ ପ୍ରଚଣ୍ଡ, ଅର୍ପି ଉପହାରରୂପେ
ସର୍ବ ଯୂଥପତିଯୂଥେ ସମାଟ ଶ୍ରୁମୁରେ,
ବଶତା ସ୍ୱୀକାର କରି ଚଳିଲେ ଗହନେ ।
ବେନି ନରପତି ସେନା ମିଶି ହୋଇଲା ଏକ,
ସନ୍ଧି ସାଧନାରେ ଏକ ଯୁଗ୍ମପଦ ଯଥା ।
ଅନନ୍ତର ଅମାକମା କପିସା ଉତ୍ତର

---

* ଉରୁବିଲ୍ୱ ପର୍ବତରେ ବୁଦ୍ଧଦେବ ଧ୍ୟାନସ୍ଥ ରହି ବୌଦ୍ଧଗୀତ ରଚନା କରିଥିଲେ ।
† ପାଟଳିପୁତ୍ର ବଳରାମଙ୍କଦ୍ୱାରା ସଂସ୍ଥାପିତ ବୋଲି କିମ୍ବଦନ୍ତୀ ଅଛି ।
‡ ବୁଦ୍ଧଦେବ ଏଠାରେ ଦିବ୍ୟ ଜ୍ଞାନ ଲାଭ କରିଥିଲେ ।

(ସ୍ୱର୍ଣ୍ଣରେଣୁ ରୂପାନ୍ତର ଯା ବାଲୁକାରାଶି)
ଉପସ୍ଥିତ ଉତ୍କଳର ନିସର୍ଗ ପ୍ରାଚୀର
ମେଘାସନ ଶୈଳ ପାଶେ, ଅଭ୍ରଚୁମ୍ବିଚୂଡ଼
ଦେବଧାମ ଗିରିବର, ଦେବରୂପଧାରୀ,
ପରିହରି ସଂସାରର ବିଳାସ ବାସନା
ନିରତ କି ଯୋଗୀ ଯୋଗେ ଏ ମହାବିଜନେ,
ଲମ୍ବିତ ଦକ୍ଷିଣସ୍କନ୍ଧେ ଉତ୍ତରୀୟ ଯଥା
ଶୋଭାଙ୍ଗୀ ବଳାଙ୍ଗୀ, ବାମେ ସ୍ୱଚ୍ଛୋଦା ସାଳନ୍ଧୀ
ଶୁଭ୍ର ଉପବୀତ ପ୍ରାୟ, ଶିରେ ଘନସ୍ତର,
ଶୋଭେ ଯେହ୍ନେ ଛନ୍ଦୋବଦ୍ଧ ଜଟାର ମୁକୁଟ ।
ଆରୋହିଲେ ସେ ପର୍ବତେ ବିକ୍ରମଆଦିତ୍ୟ
ମନ୍ତ୍ରୀ ସହ, ତଳେ ରଖି ବିରାଟବାହିନୀ,
କ୍ରମେ କ୍ରମେ ନରମଣି ଉଠିଲେ ଉପରେ,
ତଳୁ ଯା ଆଖିସୁଥିଲା ତୃଣଭୂମି ସମ,
ହେଲା ତାହା ପରିଣତ ଭୀଷଣ କାନ୍ତାରେ,
ଗୁଳ୍ମ ହେଲା ମହୀରୁହ, ଖର୍ବଖଣ୍ଡୋପଳ
ବିଶାଳ ଶିଖର, ଦୃଷ୍ଟି ଶିଶୁ କରିଯୂଥ ।
ଦେଖି ଦେଖି ଗଜପତିଏ ଏହିପରି ନାନା
ଅଦ୍ଭୁତ ପରିବର୍ତ୍ତନ ଭୋଜବାଜି ପ୍ରାୟ;
ହେଲେ ଅଗ୍ରସର, ତହୁଁ ପ୍ରକୃତିସୁନ୍ଦରୀ
ପଥରୁ ସଙ୍ଗୋପି ନେଲା ଯୋଗାଇ ନିଯୋଗୀ,

ଧରିଲେ ନୃପତି ଶିରେ ପୁଷ୍ପ-ପାଟଛତୀ
କେତେ ତରୁ ଛତ୍ରଧରରୂପେ, କେତେ ଧରି
ବିଟପ-ଚାମରବାର ଢାଳିଲେ ସଧୀରେ,
ଗାଇଲେ ବିଜୟଦୁହା ଖଗ-ବୈତାଳିକେ ।
ହସୁଛି ମଧୁରେ ଗିରି ଗୁରୁମାଳମାରେ,
ସେ ମହାମାରବ ହାସ୍ୟ ମିଶୁଛି ଆକାଶେ,
ଅନନ୍ତ ମହାର୍ଘ ରତ୍ନ ପଡ଼ିଛି ବିଞ୍ଛୁଡ଼ି
ବହୁ କାଷ୍ଠ ପାଷାଣର ବିକୃତ ବିଭୂତି,
ଅପୂର୍ବ ସ୍ୱଭାବ ଶୋଭା, ଅତି ବିଶୃଙ୍ଖଳ,
ମାତ୍ର ସେହି ବୈଶୃଙ୍ଖଲ୍ୟ ବିଶେଷତ୍ୱ ତାର,
ଶୃଙ୍ଖଳଆବଦ୍ଧା ଶୋଭା ନଷ୍ଟେ ବିକଳାଙ୍ଗୀ,
ସୌନ୍ଦର୍ଯ୍ୟ ଯେତିକି ହୁଏ ମୁକ୍ତ, ବିଶୃଙ୍ଖଳ,
ସେତିକି ସେ ହୁଏ ସିନା ମଧୁର, ବ୍ୟାପକ ।
କରି ନେତ୍ର ଶୀତଳ ସେ ଶୋଭା-ଜ୍ୟୋତ୍ସ୍ନାମୃତେ
ଉଠିଲେ ଅବନ୍ତୀନାଥ ସପ୍ତମ ଶିଖରେ,
ନିବସନ୍ତି ତହିଁ ଏକ ଜଟିଳ ତାପସ
ଧର୍ମାନନ୍ଦ ନାମେ, ନୃପ ନମିଲେ ପଦ୍ମରେ,
ସସ୍ମିତେ ଆଶିଷି ଯତି, ଅଭ୍ୟାଗତ ଜ୍ଞାନେ
ବସାଇଣ କୁଶାସନେ ପୁଚ୍ଛିଲେ ସ୍ୱାଗତ ।
ମନ୍ତ୍ରିମୁଖୁଁ ପରିଚୟ ପାଇ ନୃପଙ୍କର
ଅଧୀର ଆନନ୍ଦେ ଯୋଗୀ ଭାଷିଲେ ଏସନ—

ପୁଣ୍ୟ ସୁପ୍ରଭାତ ଆଜ, ଘଟିଲା ଭାଗ୍ୟରେ
ସମ୍ରାଟ ଦର୍ଶନ, ଧନ ମୁଁ, ପୂଜିବ କାହିଁ ?
ଉତ୍ତରିଲେ ନରେଶ୍ୱର ସବିନୟେ—ଯତି,
ହୁଅନ୍ତୁ ଆପଣ କ୍ଷାନ୍ତ, କାହାଁ ନରପୂଜା ?
ଲଭିଛି ମୁଁ ଉପଯୁକ୍ତ ସୌଜନ୍ୟ ସତ୍କାର ।
ଭାଷିଲେ ସନ୍ନ୍ୟାସୀ—ନୃପ, ଦେବପୂଜା ଏହା,
ନୁହେ ନରପୂଜା, କୋଟିଅନ୍ନପୁଷ୍ଟା ଯେହୁ,
ଯାହାର ଜୀବନେ ରହେ ଜୀବତ ପ୍ରକୃତ,
ହେଉ ପଛେ ଆକୃତରେ ମାନବ ସେ, ମାତ୍ର
ଗୁଣରେ ଗୀର୍ବାଣ, ଗୁଣ ସର୍ବତ୍ର ପୂଜିତ ।
ଏହିରୂପେ ବହୁ ଶିଷ୍ଟ ସମ୍ଭାଷଣ ପରେ
'ପୁଚ୍ଛିଲେ ବନମାଦତ୍ୟ ବୃଦ୍ଧ ତପୋଧନେ—
ଏ କେଉଁ ପ୍ରଦେଶ, ଦେବ, ବୋଲନ୍ତୁ ସଦୟେ ।
ଭାଷିଲେ ତାପସ—ବୀର, ଏ ଉତ୍କଳ ମହୀ
ନିଖିଳ ଦେବାଧିଷ୍ଠିତା, ପୁରାଣ-ପ୍ରଖ୍ୟାତା,
ପୁଣ୍ୟତୀର୍ଥମୟୀ ସ୍ଥଳୀ, ଦେଉଳମାଳିନୀ,
ସ୍ୱର୍ଣ୍ଣ ଶତଦଳ ପୁଷ୍ପ ଭାରତ-ମାନସେ ।
ବହୁ ପୁରାବୃତ୍ତ ସ୍ମୃତି-ପୁଣ୍ୟ ମକରନ୍ଦ
ମିଶ୍ରିତ ଏହାର ଅଣୁ ପରମାଣୁ ସହ,
ବହୁ ଯୁଗଯୁଗାନ୍ତରୁ ଏ ମର୍ତ୍ତ୍ୟଅମରା
ଦେଖାଉଛି ସମଭାବେ ଅଙ୍ଗୁଳିନିର୍ଦ୍ଦେଶେ

ମୋକ୍ଷର ପରମ ପଥ ମାନବସମାଜେ ।
କେତେ ଧର୍ମ ଉପଧର୍ମ ଉଇଁ କାଳବଶେ
ଲଭିଲା ବିଲୟ ଏହି ଭାରତବର୍ଷରେ,
ମାତ୍ର ଏ ଉତ୍କଳମହୀ ରଖିଛି ସମ୍ବାଦ
ସନାତନ ଆର୍ଯ୍ୟଧର୍ମ ମହିମା ଅକ୍ଷତ,
ଚିର ଅନିର୍ବାଣ ଏଥି ସତ୍ୟଧର୍ମ ଦୀପ,
ଦେଖିବାକୁ ଇଚ୍ଛା ଯେବେ ଏ ପ୍ରଦେଶସୀମା—
ଏ ପ୍ରଦେଶ ଦୂରଶୋଭା ଶାନ୍ତିପ୍ରୀତିପ୍ରଦ,
ଆସ ତେବେ ମୋ ସହିତେ ସର୍ବୋଚ୍ଚ ଶିଖରେ ।
ଏହା ଋଷି ଅଗ୍ରେ ଉଠି ଦେଖାଇଲେ ପଥ,
ଚଳିଲେ ତାହାଙ୍କ ପଛେ ସମନ୍ତ୍ରୀ ସମ୍ରାଟ ।

ମେଘାସନ ସାନୁଦେଶେ ବସି ତପୋନିଧି
ରେନ ଆଗନ୍ତୁକ ସହ ଦକ୍ଷିଣାଭିମୁଖେ,
ବୋଇଲେ ବିଶଦକଣ୍ଠେ ଅଙ୍ଗୁଳି ନିର୍ଦ୍ଦେଶ—
ଏହି ଯେ ଭୂଖଣ୍ଡ ଅଗ୍ରେ ରହିଛି ବିସ୍ତୃତ
ଶତପତ୍ର-ପତ୍ର ପ୍ରାୟ, ଏ ଉତ୍କଳଭୂମି ।
ପୂର୍ବେ ନୀଳ ନୀରାକର, ଅତଳ, ଅକୂଳ,
ଦକ୍ଷିଣରେ କୁଳାଚଳ ମହେନ୍ଦ୍ରଶିଖରୀ,
ପଶ୍ଚିମେ ମହେନ୍ଦ୍ରମାଳ * ତୋଳିଛି ମସ୍ତକ

* ଉତ୍କଳର ପଶ୍ଚିମାଞ୍ଚଳୀୟ ପର୍ବତ ମହେନ୍ଦ୍ରମାଳ ଆଖ୍ୟାତ ।

କୁଳିଶକଠିନ ଲୌହପ୍ରାଚୀର ପ୍ରତୁଳ,
ଉତ୍ତରେ ସୁବର୍ଣ୍ଣରେଖା, ଗତପଥେ ଯାକୁ
ଆସିଛ ଉଲ୍ଲଙ୍ଘି ନୃପ, ମଧ୍ୟେ ଏ ପ୍ରଦେଶ,
ରାଜେ ଯଥା ପ୍ରକୃତିର ଅନନ୍ତ ଉଦ୍ୟାନ,
ଅନନ୍ତ ସମ୍ଭାରେ ପୂର୍ଣ୍ଣ, ସଦା ଫଳବାନ ।
ସ୍ୱର୍ଣ୍ଣପ୍ରସୂ ଏ ଭୂଖଣ୍ଡ, ଧନେ, ମାନେ, ଜ୍ଞାନେ,
ପୁଣ୍ୟେ, ଶିକ୍ଷା, ସଭ୍ୟତାରେ ଭାରତେ ଅତୁଳ
ଧରେ ବକ୍ଷେ ବହୁ ତୀର୍ଥ, ବହୁ ନଦ ନଦୀ,
ତଡ଼ାଗ, କାନନ, ହ୍ରଦ, ଗିରି, ଉତ୍ସ, ଦରୀ,
ଉପତ୍ୟକା, ଦେବାଳୟ—ଗୁରୁକାରୁବନ୍ତ ।
କି ସ୍ୱଭାବଶିଳ୍ପେ, କିବା କୃତ୍ରିମଶିଳ୍ପରେ
ଏ ପ୍ରଦେଶ ବିଶ୍ୱକର୍ମା ମହାକର୍ମଶାଳ,
ନିସର୍ଗ କୃତ୍ରିମତାର ଏଭଳି ମିଳନ—
ଏଭଳି ପ୍ରତୃପ୍ତି-ପ୍ରଦ ମଧୁର ମାଧୁରୀ,
ଏକାଧାରେ ଧରାତଳେ ବିରଳୁ ବିରଳ ।
ଏ ଉତ୍କଳ ଜାତ୍ୟମାତା, ବହୁ ଯନ୍ତ୍ରଣାରେ
ନିଯୁକ୍ତ ବିଭିନ୍ନ ଅଙ୍ଗ ସେବାରେ ଏହାର,
ଏ ଦେଶର ଜଳେ, ବାତେ, ଆବର ମାଟିରେ
ମିଶ୍ରିତ ଅଖଣ୍ଡ ସୁଖ, ଶାନ୍ତି, ସ୍ୱାଧୀନତା ।
ଏହି ଯେ ଶାଳ-ଶ୍ୟାମଳ ବିଶାଳ ଭୂଭାଗ
ଦେଖୁଛ ପ୍ରସ୍ତୃତ ଅଗ୍ରେ ପଶ୍ଚାତ୍ ପ୍ରାନ୍ତ,

ସୂର୍ଯ୍ୟବଂଶୀ ନୃପତଙ୍କ ରାଜଧାନୀ ଏହା
ମୟୂରଭଞ୍ଜାଖ୍ୟା, ଚାରୁ ମୟୂର-ମେଦୁର ।
ପଦେ ଶୋଭେ ନୀଳଗିରି ଅଥର୍ବ ପର୍ବତ,
ଅଙ୍ଗାରକାଳିମାମୟ ମୁଗୁନି-ଆକର ।
ଦିଶୁଛି ଦକ୍ଷିଣେ ଏହି ଅଦୂରେ ଯେ ଗିରି
ନୀଳ ନଭକୋଳେ ସୁପ୍ତ ଶ୍ୟାମଘନ ପ୍ରାୟ,
ସେ ଗନ୍ଧମାଦନ, ସ୍ଥିତ ଯେଉଁ ରାଜ୍ୟ ପଦ-
ତଳେ ତାର, ଧରଇ ସେ କେନ୍ଦୁଝର ନାମ,
ସୁପ୍ରକାଣ୍ଡ ଖଣ୍ଡାଧାର ପ୍ରପାତ-ମୁଖର, *
ଯା ସୂକ୍ଷ୍ମ ସିତାର ତାର ଖ୍ୟାତ ଦେଶେ ଦେଶେ ।
ଉତ୍ତର ସୀମାରେ ତାର ପରିଖା ସ୍ୱରୂପେ
ଆଭାସେ ଯେ ସୂକ୍ଷ୍ମରେଖା, ତାହା ପୌରାଣିକ
ବୈତରଣୀ ନଦୀ, ପାପସନ୍ତାପହାରିଣୀ ।
ସମସ୍କନ୍ଧେ ଘଣେ ଯେଉଁ ତୁଙ୍ଗ ସାନୁମାନ
ବହ୍ନିସ୍ତର ଭେଦି, ନାମ ତାର ମାଲ୍ୟଗିରି,
ମାତଙ୍ଗ-ଆତଙ୍କ-ପ୍ରଦ, ସତତ ଭୀଷଣ,
ବସନ୍ତେ କାନନଲକ୍ଷ୍ମୀ ଯହିଁ ନିକାଞ୍ଚନେ
ବସି ସ୍ନିଗ୍ଧ ସୁରଭିତ ନାଗେଶ୍ୱର କୁଞ୍ଜେ,
ରଚନ୍ତି ସେ ଫୁଲ୍ଲ ନାସେ ସୁବର୍ଣ୍ଣବସଣୀ । †

---

* କେନ୍ଦୁଝରରେ ଖଣ୍ଡାଧାର ଜଳପ୍ରପାତ ବିଦ୍ୟମାନ ।
† ମାଲ୍ୟଗିରିରେ ନାଗେଶ୍ୱର ଉଦ୍ୟାନ ଦୃଷ୍ଟିଗୋଚର ହୁଏ ।

ନୈର୍ଋତେ ବାମଣ୍ଡା ରାଜ୍ୟ, କାନନଶ୍ୟାମଳ,
ପ୍ରପାତ ପ୍ରଧାନ ପାଟେ ଯହିଁ ସୌରକର
ସୃଜେ ନିତ୍ୟ ଇନ୍ଦ୍ରଧନୁ ଉଦୟାସ୍ତ କାଳେ,
ନିରେଖି କଳାପିକୁଳ ସେ ବର୍ଣ୍ଣ ବୈଭବ,
(ବର୍ଣ୍ଣିବାର ଅସାଧ୍ୟ ସେ ଦ୍ରଷ୍ଟବ୍ୟ ସର୍ବଥା)
ଚିତ୍ର ଲଜ୍ଜା ଗୁରୁଖେଦେ ସଙ୍କୋଚି ସ୍ୱପୁଚ୍ଛ
ବିଳପନ୍ତି କେକାରବେ, ବିସର୍ଜି ଲୋତକ—
ଧାରାପାତେ ଚ୍ଛୁରିତ ଜଳକଣା ବ୍ୟାଜେ ।
ଦେଖିବ ଯେ ଦିଶୁଅଛି ନୀଳରେଖାନିଭ
ଚକ୍ରବାଳ ପଦତଳେ ମିଶିଗଲା ପ୍ରାୟ,
ସେ ପ୍ରଦେଶ ରେଢ଼ାଖୋଲ ସ୍ୱର୍ଣ୍ଣପୁର ଆଦି ।
ପୁଚ୍ଛିଲେ ବିକ୍ରମ ନୃପ, ବାମଣ୍ଡା ଆକାଶ
କିପାଁ ଦିଶେ ଜ୍ୟୋତିର୍ମୟ ଏବେ । ତହୁଁ ଯତି
ରହି ଧ୍ୟାନମଗ୍ନ କ୍ଷଣେ ଉତ୍ତରିଲେ ଧୀରେ—
ଜାଣିଲି ମୁଁ ଯୋଗବଳେ ନୃପ, ଗତ ହେଲେ
ବହୁଶତ ବର୍ଷ, ହେବେ ଆବିର୍ଭୂତ ତହିଁ
ଗଙ୍ଗବଂଶେ ଏକ ରାଜା, ଅଦ୍ଭୁତପ୍ରତିଭ,
(ରତ୍ନଖଣି-ବାମଣ୍ଡାର ମହୋଜ୍ଜ୍ୱଳମଣି)
କି ସାହିତ୍ୟ, କି ବିଜ୍ଞାନ, କି ଦର୍ଶନ ଆଦି
ଉନ୍ନତିର ସର୍ବାଙ୍ଗେ ସେ ବୁଲାଇବେ ହାତ,
ହେବେ ତହିଁ କୃତକାର୍ଯ୍ୟ, ସେ ଅମୃତହସ୍ତ ।

ସର୍ବଗୁଣବିଚକ୍ଷଣ ନିରେଖି ତାହାଙ୍କୁ
ଉତ୍କଳ-ବିକ୍ରମାଦିତ୍ୟ ବୋଲିବେ ସକଳେ,
ଉତ୍କଳ-ଅବନ୍ତୀ ଆଖ୍ୟା ବହିବ ବାମଣ୍ଡା ;
ଜନ୍ମିବେ ସେ ମହାଯଶା ସୁଦୂର ଭବିଷ୍ୟେ,
ଏହିଜ୍ୟୋତି ତାଙ୍କ ଭାଗ୍ୟ ପ୍ରତିଭାର ପ୍ରଭା ।
ଏଣେ ଧୂମସ୍ତୂପ ପ୍ରାୟ ଆଭାସେ ଯେ ଶୈଳ,
ବୋଲିଏ ସେ ବାରଚଳ, ବିସ୍ତୃତ ତା ପଦେ
ଉତ୍କଳର ଜ୍ୱାଳାମୁଖୀ ତାଳଚେର ମହୀ,
ପବିତ୍ର ହିଙ୍ଗୁଳାପୀଠ ଉପନାମ ଯାର ।
ଦିଶୁଛି ତା ବକ୍ଷେ ଯାହା ମଲ୍ଲିମାଳା ସରି,
ବ୍ରାହ୍ମଣୀ ନାମେ ତଟିନୀ ସେ, ଚିର କ୍ଷୀରନୀରା ।
ବାରି ବାମେ କପିଳାସ ଅଭ୍ରଭେଦୀ ଶୈଳ,
ଉତ୍କଳ-କୈଳାସଧାମ, ମହାଶମ୍ଭୁପୀଠ,
ଯା ନିର୍ଝର ସ୍ୱଚ୍ଛନୀର ଅଜୀର୍ଣ୍ଣର ଯମ ।
ତାହାର ଦକ୍ଷିଣ ଦିଶେ ବଲ୍ମୀକ ଆକୃତି
ଯେ ଗିରି, ସାପୁଆମୁଣ୍ଡୀ ଅଭିଧା ତାହାର.
ପଦେ ରାଜେ ଯେଉଁ ରାଜ୍ୟ, ଖଣ୍ଡପଡ଼ା ତାହା,
ନୀଳମାଧବ-ପାଳିତ, ଯହିଁ କାଂସ୍ୟକାରେ
ଗଢ଼ନ୍ତି ସ୍ୱହସ୍ତେ ପାତ୍ର କଳକୃତ ଭଳି ।
ପୁଚ୍ଛିଲେ ଶଙ୍କାରି—ଦେବ, ଖଣ୍ଡପଡ଼ା ନଭେ
କୃତ୍ତିକା ନକ୍ଷତ୍ର କିପାଁ ଉଦିତ ଦିବସେ ?

ମହୂର୍ତ୍ତେ ଧ୍ୟାନସ୍ଥ ରହି ଭାଷିଲେ ତାପସ—
ନୁହେ ସେ ନକ୍ଷତ୍ରପୁଞ୍ଜ, ବହୁ ବର୍ଷ ପରେ
ଜନ୍ମିବେ ସେ ରାଜ୍ୟେ ଚନ୍ଦ୍ରଶେଖର ନାମରେ
ଋଷିକଳ୍ପ ପ୍ରକୃତିର ତତ୍ତ୍ୱଦର୍ଶୀ ଏକ,
ସେ ମହାପୁରୁଷ ଦୈବୀ ପ୍ରତିଭା ବଳରେ
ଉଦ୍ଭାବି ଜ୍ୟୋତିଷ ସୂତ୍ର, ବିଶୁଦ୍ଧ, ସରଳ,
କରିବେ ଜଗତେ ସ୍ତବ୍ଧ, ଏ ତାଙ୍କର ପ୍ରଭା ।
ତହିଁ ପରେ କିଛିଦୂରେ ଦିଶୁଛି ଦୀର୍ଘିକା
ପ୍ରକୃତି-ପାର୍ବତୀଙ୍କର ଲଲାଟଲୋଚନ
ପ୍ରାୟ, ସେ ଚିଲିକାହ୍ରଦ, ରହି ଗଞ୍ଜାମର
ଉତ୍ତରର, ଆବର ସେ ଶୋଭା-ସ୍ୱର୍ଣ୍ଣସିନ୍ଧୁ ।
ତାହାର ଦକ୍ଷିଣେ ବହେ ଋଷିକୁଲ୍ୟା ନଦୀ
(ଗଞ୍ଜାମର ଓଜସ୍ୱିନୀ ଜୀବନନାଡ଼ିକା)
ଋଷିମାଳ ଗିରିସୁତା, ଋଷିପତ୍ନୀ ପ୍ରାୟ
ଶାନ୍ତଶୀଳା, ଶୁଚିମତୀ, ସତ୍ତ୍ୱଗୁଣମୟୀ,
ବିସ୍ତାରି ତଟିନୀ ଶାଖା ପ୍ରଶାଖା ଅସଂଖ୍ୟ
ଦିଶେ ଯଥା ଉତ୍ପାଟିତ ନିଷ୍ପତ୍ର ପାଦପ ।
ଏଣେ ଦେଖ ମାଳୀଗିରି ଈଷତ୍ ତିର୍ଯ୍ୟକେ
ଲମ୍ବିତ ଯେ ଗିରିମାଳ ସୀମାସେତୁ ଯଥା,
ନାମିତ ସେ ପଞ୍ଚଧାର ନାମେ, ଝିଁରେ ଦେହୁ
ତାର ଉଷ୍ଣ ବାରିଝର * ଘର୍ମଧାରା ସମ ।

* ପଞ୍ଚଧାର ପର୍ବତରେ ଦେଉଳଝର ନାମକ ଉଷ୍ଣପ୍ରସ୍ରବଣ ଅଛି ।

ପୂରବରେ ଦିଶେ ଯାହା—ଶୀତେ ଶୀର୍ଣ୍ଣତର
ନାଗୁଣୀ ସମାନ, ବକ୍ର ମନ୍ଥରଗମନା,
ସେହୁ ଚିତ୍ରୋତ୍ପଳା ନଦୀ—ଉତ୍କଳ-ଜାହ୍ନବୀ,
ଜନ୍ମି ବିନ୍ଧ୍ୟ ପାଦୁ ଧନୀ, ଯୁଗଯୁଗାନ୍ତରୁ
କରୁଛି ଉତ୍କଳ ବକ୍ଷ ପବିତ୍ର, ଶୀତଳ,
ଢାଳି ଅକାତରେ ହୃଦୁ ଅମୃତପ୍ରବାହ ।
ଆଜ୍ଞସେ ଯେ ଅଂଶ ତାର ଗୁପ୍ତ ହେଲା ଭଳି,
ତାହା ସପ୍ତକୋଶୀ ଗଣ୍ଡ, ଶୈଳ-ସଙ୍କୁଚିତ,
ତହିଁ ନଦୀଶଯ୍ୟା ବହୁ ସଙ୍କଟେ ସଙ୍କୁଳ,
ଚିରଅନ୍ଧାରିତ ସ୍ଥଳୀ, ଅମା ରଜନୀର
କିବା ସେ ଅନ୍ତଃପୁରଶାଳ—ଦିଗ୍ୱଷିକାବାସ ।
ନାହିଁ ତହିଁ ଦିବସର ଅଧିକାର କିଛି,
ବସିଛି ବିସ୍ତାରି ରାତି ଅଖଣ୍ଡ ରାଜତ୍ୱ,
ସୃଷ୍ଟିକାଳୁ ସୋମ ସୂର୍ଯ୍ୟ ଅଦୃଶ୍ୟ ସେ ଠାଇଁ ।
ଚିତ୍ରୋତ୍ପଳା ଯାମ୍ୟ ତୀରେ ବୌଦ, ତହିଁ ପରେ
ଘୁମୁସର ରାଜ୍ୟ, ରମ୍ୟ, ବିପୁଳସମୃଦ୍ଧ,
ଭଞ୍ଜବଂଶୀୟ ନୃପେ ପାଳିତ, ଲାଳିତ,
ଏହି ଯେ ଦିଶୁଛି ଅର୍ଦ୍ଧ ବନମଗ୍ନ ଗିରି
ଦୈତ୍ୟପତିଙ୍କ କୀର୍ତ୍ତି ପ୍ରାୟ, ଅଭିହିତ ତାହା
ଦୁଧସର ନାମେ, ସ୍ଥିତ ଘୁମୁସରେ ସେହୁ ।
ଲକ୍ଷିଲେ ନୃପତିମଣି, ଦୁଧସର ଚୂଳେ

ଖେଳୁଛି ଯେ ଘନ, ତାହା କେଡ଼େ ରମଣୀୟ,
ସତେ କି ସେ ଘନ, କିମ୍ବା ସୁବର୍ଣ୍ଣ-ଦର୍ପଣ,
ସ୍ୱଚ୍ଛ, ଆଭାମୟ, ଧୌତ ଦିବ୍ୟ ଜ୍ୟୋତି-ଜଳେ ।
ଉତ୍ତରିଲେ ତପୋଧନ ମୃଦୁ ହାସ୍ୟେ ତହୁଁ—
(ପୂର୍ବପର କିୟତ୍‌କ୍ଷଣ ଧ୍ୟାନମଗ୍ନ ରହି)
ସାରସ୍ୱତ ପ୍ରତିଭା ସେ, ନୁହେ ବାରିବାହ,
ଜାତ ହେବେ ସେହି ରାଜ୍ୟେ ସୁଦୂର ଭବିଷ୍ୟେ
ମହାକବି ମହାପ୍ରାଜ୍ଞ ଉପେନ୍ଦ୍ର ଆଖ୍ୟାତ,
ଉତ୍କଳ ଭାଷାକୁ ସେହୁ କରିବେ ଜୀବିତ
ଜୀବନ୍ୟାସ ମନ୍ତ୍ରେ, ତହୁଁ ହେବ ସେ ପ୍ରବଳା;
ଭାସୁଥିବ ଏହିପରି ଏ ମହାପ୍ରତିଭା
ନଭେ କେତେକାଳଯାଏଁ, ଘୂର୍ଣ୍ଣୀବାୟୁ ଯଥା,
ହେଲେ ଅବତୀର୍ଣ୍ଣ କବି, ଆଶ୍ରିବ ତାହାଙ୍କୁ ।
ତାହାର ଦକ୍ଷିଣେ ଦେଖ ଉତ୍ତୁଙ୍ଗ ଭୂଧର
ନୀଳ ରୁଦ୍ର କାନ୍ତି, ଦିଶେ ଯଥା କ୍ରୁଦ୍ଧ ହରି
ଫୁଲାଇ କେଶର ଉଭା ସଗର୍ବ ଠାଣିରେ,
ଗିରିଚକ୍ରବର୍ତ୍ତୀ ସେହୁ ସିଂହରାଜ ନାମେ,
ଉତ୍କଳେ ସେ ହିମାଳୟ, ଖେମଣ୍ଡୀ-ମଣ୍ଡନ ।
ଝରେ ତାର ବନ ଗ୍ରାମ ଅଧିତ୍ୟକା ବକ୍ଷୁଁ
"ତପ୍ତପାଣି ଝର", * ପୂତ ସତୀ ସୀତା ସ୍ନାନେ ।

* ବିଶଦ ବିବରଣ "ସିଂହରାଜ" ପୁସ୍ତକରେ ଦ୍ରଷ୍ଟବ୍ୟ ।

ତାହାର ଆଗ୍ନେୟ୍ ଭାଗେ କନଷ୍ଠ-ତାହାର
ବନ୍ଦିତ ମହେନ୍ଦ୍ରଗିରି, ମହେନ୍ଦ୍ର-ବାଞ୍ଛିତ,
ଚନ୍ଦବାଳେ ଘନ କାନ୍ତି ଲଭିଲା ପରାଏ,
ଦିଗ୍‌ବିଜୟେ ଆସି ରଘୁ, ଭାରତ-ଭୂଷଣ,
(ଯେ ଭୂଷଣ ଅବିନାଶୀ ଚିର ଅମଳିନ)
କରିଥିଲେ ତହିଁ ସୁଖେ ତ୍ରିରାତ୍ରି ଯାପନ,
ରଖିଛନ୍ତି ନିଦର୍ଶନ ପାଣ୍ଡବେ ତା ଚୂଳେ
ବନବାସ କାଳେ, ତୋଳି ଅଦ୍ଭୁତ ଦେଉଳ ।
ଆଉସେ ଯା ପୂର୍ବେ ତାର ଶ୍ୟାମଳ ଶାଦ୍ୱଳ
ପ୍ରାନ୍ତ ମହୋଦଧି ଦାଢ଼େ, ଉଦ୍ୟାନଖଣ୍ଡ ସେ, ✱
ଉତ୍କଳ-କମଳାଙ୍କର ଅନନ୍ତ ଭଣ୍ଡାର,
ଅକାଳରେ ଫଳ ତହିଁ ଧରନ୍ତି ତରୁଏ ।
ଅବିରତ ଅମରାଏ ବାରିଦ-ବିମାନେ,
ସମାପି ପ୍ରଭାତ ସ୍ନାନ ସିନ୍ଧୁ ପୂତ ଜଳେ,
ତୋଳି ସେ ଉଦ୍ୟାନୁ ଫୁଲ ଫୁଲ୍ଲ ଫୁଲକରେ,
ବିଭୂଷି ଖୋଷାରେ ତାହା ଗମନ୍ତି ତ୍ରିଦିବେ ।
ଏହିପରି ପ୍ରକୃତିର କୋଟି ଉପାଦାନେ
ପୂର୍ଣ୍ଣ ଏ ଉତ୍କଳଖଣ୍ଡ, ବିଶାଳ ଅତୁଳ,
ନରଦୃଷ୍ଟି ସୀମାଗତ ତା ବିସ୍ତୀର୍ଣ୍ଣ ସୀମା,
ଅନନ୍ତ ଗରଭେ ତାର ସ୍ଥିତି କେତେ ସ୍ଥାନେ,

✱ "ଉଦ୍ୟାନଖଣ୍ଡ" ପୁସ୍ତକରେ ବିଶେଷ ବିବରଣ ଦ୍ରଷ୍ଟବ୍ୟ ।

କେତେ ରାଜ୍ୟ, କେତେ ତୀର୍ଥ, କେ କଳିବ ତାହା !
ଏହା ଭାଷି ନୀରବନ୍ତେ ସ୍ୱାଧ୍ୟାୟ—ସମ୍ବଳ,
ଜଙ୍ଘାସିଲେ ଧରାଧିପ, ଦିଶୁଛନ୍ତି ଦୂରେ
ଅସଂଖ୍ୟାତ ଶିଶୁ ଶ୍ରେଣୀ, ଯାତ୍ରୀପନ୍ଥ ତଥା,
ଏ ନର-ବାମନ-ସ୍ରୋତ ବାହାରୁଛି କାହୁଁ,
ଧାଉଁଛ କା ର ଉଦ୍ଦେଶ୍ୟ କାହିଁ, ଯତିବର,
ବୋଲନ୍ତୁ ଏହାର ତଥ୍ୟ, ସଦୟ ଅନ୍ତରେ ।
ବଖାଣିଲେ ଯୋଗୀ, ନୃପ, ଏ ଉତ୍କଳ ମହୀ
ନୁହେ ଖାଲି ମହିମିତା ସ୍ୱଭାବ-ସମ୍ପଦେ,
ଅଦ୍ୱିତୀୟ ପ୍ରିୟ ପୀଠ ଧର୍ମ ଦେବଙ୍କର,
ପ୍ରେମାନନ୍ଦ ପ୍ରସ୍ରବଣ ଜାଣିବ ଏହାକୁ ।
ତୀର୍ଥରାଜ ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା
ପଢିଥିବ ପୁରାଣରେ, ସେ ମୋକ୍ଷଦ ଧାମ—
ସେ ମର୍ତ୍ତ୍ୟ-ବୈକୁଣ୍ଠ ସ୍ଥିତ ଉତ୍କଳ ଦକ୍ଷରେ,
ଏଥି ଯେ ଦିଶୁଛି ରାଏ, ମହୋଦଧି ତୀରେ
ମହାକାଶେ ମହାବୃତ୍ତ, ଅତସୀମାଳିମ,
ନୁହେ ତା ସିନ୍ଧୁ ନୀଳିମା, କିମ୍ବା ସୌରକରେ
ଘନର ବିକୃତି, ଖୁର ସେ ଅନନ୍ତ ପ୍ରଭା
ଦାରୁବ୍ରହ୍ମରୂପୀ ନୀଳ ମାଧବ ଶରୀରୁ,
କସ୍ତୂରୀ ତିଳକପ୍ରାୟ ଶୋଭେ ନଭ-ଭାଲେ ।
ଶଙ୍ଖାକୃତି ସେହି ସ୍ଥଳୀ ଶ୍ରୀକ୍ଷେତ୍ର ଆଖ୍ୟାତ,

ଲାଗିଥିଲା ରଥଯାତ୍ରା ତହିଁ , ରଥୋପରେ-
ହେରିଲେ ବାମନ ମୂର୍ତ୍ତି, ନୋହେ ପୁନର୍ଜନ୍ମ,
ଏହି ଶାସ୍ତ୍ର ବିଶ୍ୱାସରେ ଲକ୍ଷ ଲକ୍ଷ ଜନେ
ଆସିଥିଲେ ଦୂରଦେଶୁ, ଯାତ୍ରା ସାଙ୍ଗ ଏବେ,
ଯାଉଛନ୍ତି ଫେରି ସର୍ବେ ସ୍ୱଗ୍ରାମାଭିମୁଖେ,
ନୁହନ୍ତି ବାଳକ କିମ୍ବା ବାମନ ସକଳେ,
ଦିଶୁଛନ୍ତି କ୍ଷୁଦ୍ରକାୟ ଦୂରେ ଥିବା ହେତୁ ।
ଭାଷିଲେ ଅବନ୍ତୀନାଥ, ଥିଲେ ଶାସ୍ତ୍ରକାରେ
ଉର୍ବରମସ୍ତିଷ୍କ କେଡ଼େ, କି ଗମ୍ଭୀର ଭାବ
ଅନୁସ୍ୟୂତ ଏ ବଚନେ, ଧନ୍ୟ ସେ ପ୍ରତିଭା,
ଦେହ-ରଥେ ବସି ବୁଦ୍ଧି ସାରଥିରୂପରେ
ଚଳାଏ ତାହାକୁ, ଯୋଚି ଇନ୍ଦ୍ରିୟ-ତୁରଗ,
ମନ ତହିଁ ବାହନର ମୁଖବନ୍ଧ ରଜ୍ଜୁ,
ଜ୍ଞାନ-ନେତ୍ରେ ଦେଖେ ଯେହୁ ସେହି ଦେହରଥେ
ସୂକ୍ଷ୍ମତମ ଆତ୍ମାରୂପୀ ବାମନ ମୂରତି,
ଜରା ଜନ୍ମ ଯନ୍ତ୍ରଣାରୁ ଲଭେ ସେ ନିସ୍ତାର,
ଶାସ୍ତ୍ରର ଏ ଅର୍ଥ ବୁଝି ଆସନ୍ତି କି ସର୍ବେ
କ୍ଷେତ୍ରେ ନନ୍ଦିଘୋଷରଥେ ବାମନ ଦର୍ଶନେ ?
ହସିଲେ ସନ୍ନ୍ୟାସୀ—ଘୋର ତାମସ-ନିହିତ
ଆଧ୍ୟାତ୍ମିକ ଗୂଢ଼ତତ୍ତ୍ୱ, ସଦ୍‌ଗୁରୁସାପେକ୍ଷ,
ଭେଦିବେ ସକଳେ କାହୁଁ ସେ ମହାରହସ୍ୟ ।

ଅନନ୍ତର ସବନସ୍ତେ ଅବନ୍ତୀ-ଭରସା
ନବେଢଲେ ଯଥ କଥ, ବୃଷେ, ଇଚ୍ଛା ମୋର
ଶ୍ରୀକ୍ଷେତ୍ର ଦର୍ଶନେ, ଏବେ ହସ୍ତଗତ ଆହା
ସେ ସୌଭାଗ୍ୟ ମୋର, ହେଲେ ହରାଇଲେ ଏହା
ରହିବ ଅପୂର୍ଣ୍ଣ ସଦା ଆକାଙ୍କ୍ଷା ହୃଦୟେ,
ଅପୂର୍ଣ୍ଣ ଆକାଙ୍କ୍ଷା ଜ୍ୱାଳା ଅସହ୍ୟ ମୋହର ।
ନଶ୍ୱେଷ୍ଣ ମୃତ୍ତିକା ନୁହେ ଏ ଉତ୍କଳ ମହୀ,
ନଶ୍ୱେ ଏ ଜାଗ୍ରତ ଦେଶ, ନ ଦେବ ଏହାଁର
ପବନ ଶରୀରେ ପୀଡ଼ା ସେନା ସଂଘର୍ଷଣେ,
ଦଳିବ କନକମୂର୍ତ୍ତି, କେ ଏଡ଼େ ପାଷଣ୍ଡ,
ବିଶେଷେ ଏ ଦେବଭୂମି, ପୂଜ୍ୟା ମାତୃସମା
ଭକ୍ତିସହକାରେ ଯିନା କରିବା ଦର୍ଶନ
ଉଚିତ ଏହାକୁ, ରାଜା ମୁହିଁ, ଆଦେଶିବି
କରୁପେ ବା ସମସ୍ତଙ୍କୁ, "ଜଳ ବୋଲି ଏହା
ଭକ୍ତିରେ ଦର୍ଶନ" ନୁହେ ଶୁଭଦ କଦାପି
ଭକ୍ତିରେ ବାଧିତା, ବଳେ ଫୁଟାଇଲେ ଫୁଲ,
ହୁଏ ଯିନା ନଷ୍ଟ ତାର ସୌନ୍ଦର୍ଯ୍ୟ, ସୁବାସ,
ଅତଃ ଏ ଗିରୀନ୍ଦ୍ର ପଦେ ରଖି ଅନକଣା,
ଯିବ ମୁହିଁ ଏକୁଟିଆ ନୀଳାଦ୍ରି ଦର୍ଶନେ,
ତପୋବନେ, ଦସ୍ୟୁ ବନ୍ଧି ଦେଶାନ୍ତୁ ସଂରଣୀ ।
ଅବଟର ଶୈଳଶୃଙ୍ଗ ସବେ ଯଥାକାଳେ

ମିଳଲେ ଅଚଳ ତଳେ, ତହୁଁ ମନ୍ତ୍ରୀପ୍ରତି
ରକ୍ଷଣାବେକ୍ଷଣ ଭାର ଅର୍ପି ବାହିନୀର,
ମୁଷ୍ଟିମେୟ ଅନୁଚର ସମଭିବ୍ୟାହାରେ
ବଜେ କଲେ ବନମାର୍ଗ ସମତଳ ସ୍ଥଳେ,
ଅଗ୍ରତେ ଗୃଲ୍ଲେ ପଥ ଦେଖାଇ ଅନୁଜ ।



## ଦଶମ ସର୍ଗ ।



ଲଙ୍ଘି ପଥେ ବହୁ ନଦୀ, ନଗର, ପ୍ରାନ୍ତର,
ମିଳିଲେ ଯାତ୍ରିକେ ଯାଇ ବୈତରଣୀ ତୀରେ—
ପୁଣ୍ୟ ନାଭିଗୟାକ୍ଷେତ୍ରେ, ତ୍ରିଦିବଦୁର୍ଲ୍ଲଭ,
ପରଶମାତ୍ରକେ ଯାହା ପୂରିଲା ମାନସେ
କି ଅବ୍ୟକ୍ତ ଭକତିର ଅନାସ୍ୱାଦୀ ସୁଧା,
ଅଜ୍ଞାତ, ଅପ୍ରତ୍ୟାଶିତ; ଏ ଅନାସ୍ୱଭାବ
ସ୍ଥାନର ମାହାତ୍ମ୍ୟ ନିଶ୍ଚେ, ଭାବି ଏହା ମନେ
ପୁଚ୍ଛିଲେ ତାପସେ ଯାଏ, କେଉଁ ସ୍ଥଳୀ ଏହା,
ସ୍ପର୍ଶମାତ୍ରେ ଆଣେ ମନେ ବୈରାଗ୍ୟ ସଂଯମ,
ପବିତ୍ର ଏ, ଥରେ ପାଦ ଗୁଳିବାକୁ ଏଥି ।
ଉତ୍ତରିଲେ ଯତି—ଏହା ନାଭିଗୟାକ୍ଷେତ୍ର,
(ସୁରଭିତ ଅଗ୍ନିହୋତ୍ରୀ ନିତ୍ୟ ଯଜ୍ଞଧୂମେ)
ପରିଚିତ ପୁରାଣେ ଏ ଗଦାତୀର୍ଥ ନାମେ,
ଅଶ୍ୱମେଧ ଯଜ୍ଞ ଏଥି କରିଥିଲେ ବିଧି,
ତେଣୁ ଯଜ୍ଞପୁର ଆଖ୍ୟା ବୋଲିଏ ଏ ଲୋକେ ।
ସେହି ଯଜ୍ଞୁ ଜନ୍ମ ଲଭି ଭବାନୀ ବିରଜା,

ଆବର ଅଚ୍ୟୁତରୂପୀ ବରାହ ସୁନ୍ଦର
ନବସନ୍ତ ଏଥି, ମହାକ୍ଷେତ୍ର ଏ ଭାରତେ,
ସେବିଲେ ନଖିଳ ତୀର୍ଥ, ନ ସେବି ଏହାକୁ
ଲଭେ ନାହିଁ ସମ୍ପୂର୍ଣ୍ଣତା ତୀର୍ଥାଟନବ୍ରତ ।
ଅଙ୍ଗୁଳି ନର୍ଦ୍ଦେଶି ନୃପ ବୈତରଣୀ ପ୍ରତି
ପୁଚ୍ଛିଲେ ତାପସେ, ଦେବ, କେଉଁ ନଦୀ ଏହା,
କପାଁ ତା ପୁଳିନେ ବସି ଅସଂଖ୍ୟ ମାନବ
ଆର୍ଦ୍ରବାସେ, ଯୁକ୍ତକରେ ଅଛନ୍ତି ନୀରବ,
କଏ ବା ଏ ବପ୍ର, ବସି ଅଗ୍ରତେ ତାଙ୍କର
କରୁଛନ୍ତି ସମାଳାପ କେବଣ ସଙ୍ଗୀତ ?
ଉତ୍ତରିଲେ ଯୋଗୀ—ଏହା ବୈତରଣୀ ନଦୀ,
ଦାଢ଼ିଲେ ଏ ତୀର୍ଥେ ପିଣ୍ଡ, ମୃତ ପିତୃଗଣ
ଲଭନ୍ତି ସନ୍ତୃପ୍ତି, ଏଣୁ ବିଶ୍ୱାସେ ଯାଜିଏ
ବସି କରୁଛନ୍ତି ଏଥି ଶ୍ରାଦ୍ଧ ଅନୁଷ୍ଠାନ,
ପୁରୋଧାଙ୍କ ପ୍ରତିନିଧି ଅଗ୍ରବର୍ତ୍ତୀ ଦ୍ୱିଜ ;
କରୁଛନ୍ତି ଆବୃତ୍ତି ସେ ଶ୍ରାଦ୍ଧମନ୍ତ୍ର ଉଚ୍ଚେ ।
ଶୁଣି ଏ ଭାରତୀ ସବେ ହେଲେ ସ୍ତମ୍ଭୀଭୂତ,
ହେଲ୍‌ନିକ ବିଶାଳ ଭାଲ ବିସ୍ମୟେ କୁଞ୍ଚିତ,
ଭାଷିଲେ ଭୂପେଶ, ଅହୋ, କି ଆଶ୍ଚର୍ଯ୍ୟ ଏହା,
ଦେହାନ୍ତେ ଦେହୀର ଦେହ ମିଶେ ପଞ୍ଚଭୂତେ,
ଆତ୍ମା ଯାଏ ଲୋକାନ୍ତରେ, ଏହା ଶାସ୍ତ୍ର ବାଣୀ,

ଜୀଏ ତେବେ କହ ଯତି, ବୈତରଣୀତୀରେ
ଶୁଣିବ ଆହ୍ୱାନମନ୍ତ୍ର, ଲଭିବ ସନ୍ତୃପ୍ତି,
ଆତ୍ମା ନିରାକାର, ଅତଃ ଅତୃପ୍ତ ଅକ୍ଷୁଧ,
କେ ଭୁଞ୍ଜିବ ଭଲା ଏଥି ଏ ଭକ୍ଷ୍ୟ ସମ୍ଭାର ?
ଉତ୍ତରିଲେ ଯୋଗୀ, ନୁହେ ନିରର୍ଥକ, ନୃପ,
ଶ୍ରାଦ୍ଧ ପ୍ରଥା, ପ୍ରକାରାନ୍ତେ ସ୍ମୃତିପୂଜା ତାହା ।
ଭାଷିଲେ ବନମ, ଋଷି, ଏ କି ସ୍ମୃତିପୂଜା,
କ୍ଷୁଦ୍ର ତଣ୍ଡୁଳାଦି ନୁହେ ସ୍ମୃତି ଉପାଦାନ,
ସ୍ମୃତି ଶୂନ୍ୟମୟ, ତାର ଉପାଦାନ ତଥା,
ଭକ୍ତି ପ୍ରୀତି ପ୍ରଦର୍ଶନ ମୃତ ଉଦ୍ଦେଶ୍ୟରେ
ଉପଯୁକ୍ତ ସ୍ମୃତିପୂଜା, ଶ୍ରଦ୍ଧାର୍ପଣ ବିନା
ଶ୍ରାଦ୍ଧ, ଛାଡ଼ି ଏ ସରଳ ପଥ, ଆଡ଼ମ୍ବର
କିପାଁ ? କେଉଁ ପୁଣ୍ୟ ଅବା ତହିଁ ? ଅସାର ସେ ।
ପୁରାକାଳେ ଅବିରତ ରତ ବହୁ ଦ୍ୱିଜେ
ଯଜ୍ଞ ଆଦି ସାଧାରଣ ଶିବକର କର୍ମେ,
ଆଦର୍ଶ ନିଃସ୍ୱାର୍ଥବ୍ରତ ପାଳୁଥିଲେ ମୋଦେ,
କୃତଜ୍ଞତା ପ୍ରଦର୍ଶନସ୍ୱରୂପେ ତାହାଙ୍କୁ
ଭେଟନ୍ତି ଗୃହସ୍ଥେ ନେଇ ଆହାର୍ଯ୍ୟୋପାଦାନ,
କରି ତା ଗ୍ରହଣ ବିପ୍ର, ବିତରି ସ୍ୱଶିଷ୍ୟେ,
ସାଧୁଥିଲେ ଏହିରୂପେ ଦାନ, ପ୍ରତିଗ୍ରହ ।
ତୋଷି ପୁଣି ଆଶୀର୍ବାଦେ ଦାତାର ମାନସ,

ବାଞ୍ଛନ୍ତି ତା ପିତୃଗଣ-ଗତାତ୍ମାକୁଶଳ,
କାଳକ୍ରମେ ଏ ସୁପ୍ରଥା ହୋଇ ପଲ୍ଲବିତ
ହୋଇଅଛି ପରିଣତ ବିବିଧ ଶ୍ରାଦ୍ଧରେ,
ନାହାନ୍ତି ଏକାଳେ ଆଉ ସେଭଳି ବ୍ରାହ୍ମଣ,
ସ୍ୱାର୍ଥପଟୁ, କର୍ମଭୀରୁ ଏ କାଳର ଦ୍ୱିଜ,
ଉଦରସର୍ବସ୍ୱ, ସବୁ ତାଙ୍କର ଭିଆଣ,
ବିପ୍ରକୁଳାଧମ ସର୍ବେ, ଆଳସ୍ୟ—ସେବକ,
ଅଭିଶପ୍ତ, ଅଧୋଗତ, ନତୁ ବ୍ରାହ୍ମଣର
ଧର୍ମ ନୁହେ ପ୍ରେତକୁଳ ଉଚ୍ଛିଷ୍ଟ ଭୋଜନ ।

ଏଥୁଅନ୍ତେ ଚଳି ପାନ୍ଥେ ଦକ୍ଷିଣାଭିମୁଖେ,
ଲଙ୍ଘି ଗତ ପଥେ ବ୍ରାହ୍ମୀ, ମିଳିଲେ ସକଳେ
ମହାନଦୀ ତୀରେ, ଦେଖି ବିପୁଳ ବିସ୍ତୃତ
ତାର ଚଳସିନ୍ଧୁ ପ୍ରାନ୍ତ, ହେଲେ ସ୍ତବ୍ଧ, ତହୁଁ
ବିକ୍ରମାର୍କ ପଚାରନ୍ତେ ନଦୀ ପରିଚୟ,
ସସ୍ମିତେ ଭାଷିଲେ ଯତି—ମେଘାସନ ଶିଖୁ
ଦିଶୁଥିଲା ଯେ ତଟିନୀ ଶୀର୍ଣ୍ଣ ସର୍ପ ପ୍ରାୟ,
ସେହି ଚନ୍ଦ୍ରୋପଳା ଏହା, ମନ୍ଥରଗାମିନୀ,
ତୁଷ୍ଟି ଲଭି ସୁକାନ୍ତଙ୍କ ସ୍ତବେ ଭାଗୀରଥୀ
ହୋଇଛନ୍ତି ଆବିର୍ଭୂତା ଚନ୍ଦ୍ରୋପଳା ନାମେ;
ଏହାର ସଲିଳରାଶି ଉଜ୍ଜଳେ ପୀୟୂଷ ।

ତହୁଁ ପରେ ତସ୍ୱୋଗେ ତର ତରଙ୍ଗିଣୀ
ମିଳିଲେ ପଡ଼ିଆ ଦେହେ ପଥିକମଣ୍ଡଳୀ,
ଅହୋ, କି ଅଦ୍ଭୁତ ଦୃଶ୍ୟ—ଅସ୍ୱପ୍ନ-ସୁଲଭ,
ବସିଛୁ ଚୌପାଶେ ତହୁଁ ଆନନ୍ଦର ହାଟ,
ଗର୍ଭେ ଅରବିନ୍ଦ, ମନ୍ଦ ଗନ୍ଧବହ ସହ
ଖେଳୁଛୁ ବସ୍ତାର ହାସ, ଅଧୀର ଆନନ୍ଦେ,
ଚୌପାଶେ କାନନଶ୍ରେଣୀ ମହାମାଳାସ୍ଥିତ,
ବୋଳିଦଏ କେନେ ସ୍ନିଗ୍ଧ ଆନନ୍ଦ-ଅମିୟ,
ଉଚ୍ଚେ ଖଗାଳିଏ ମୋଦେ ଗାବନ୍ତ ସଙ୍ଗୀତ,
ଯେହ୍ନେ ଦିବ୍ୟ, ପ୍ରକୃତିର ଶିଶୁ, ଖେଳେ କୋଳେ
ତାର ମହାଙ୍କେ ମହାସୁଷମା ବିଛୁଡ଼ି ।
'ଦଶିଲ୍ଲି ସେଠାରୁ ଖଙ୍କ ଖଣ୍ଡଗିର ନଗ,
ଯେସନ ଦଧିନଉତଶୂନ୍ୟ ଦେବାଳୟ,
ପୁଛିଲେ ଅବନ୍ତୀପତି—ଦେବ, କେଉଁ ଶୈଳ
ଏହା, ନୀଳମଣି ସ୍ତୂପ ପ୍ରାୟ ସୁଚଞ୍ଚୁଳ ।
ଭାଷିଲେ ତାପସ—ଏହି ଦକ୍ଷିଗର୍ଭ ଗିରି
ଧରେ ଖଣ୍ଡଗିର ନାମ, ବୌଦ୍ଧକୀର୍ତ୍ତିପୂତ ।
ପୂଣ୍ୟ ଗର୍ଭ ତାର ଯତମୁଖବନୀଃସୃତ
ପ୍ରଣବ ମୁଖର, ଶୋଭା-ସାମ୍ରାଜ୍ଞୀର ଶିର
ଭୂଷଣ-ପେଟିକା କିମ୍ବା ଶିଳ୍ପ ଗନ୍ତାଘର ।
ପଥ ଅତନମି ବହୁ କଥୋପକଥନେ

ପଶିଲେ ସକଳେ ଏକ କାନନ ମଧ୍ୟରେ,
ନାରିକେଳ ପୁନ୍ନାଗାଦି ପାଦପ-ବହୁଳ,
ଶିବମୟ ସ୍ଥାନ, ଯହିଁ ଦେଖ ତହିଁ ଶିବ,
ଦେଖି ତା ତାଠଙ୍କା ଲଭି ପୁଚ୍ଛିଲେ ବନ୍ଦମ—
ତାପସ, ଏ କେଉଁ ସ୍ଥଳୀ । ଉତ୍ତରଲେ ସେହୁ—
ଦ୍ୱିତୀୟ ବାରାଣସୀ ଏ ଭାରତମଣ୍ଡଳେ,
ମହାଶମ୍ଭୁ ପୀଠ, କୋଟି ଶିବମୂର୍ତ୍ତିପୂତ,
ଏକାମ୍ରକାନନ ନାମେ ପୁରାଣେ ପ୍ରଥିତ ।
ନିବସନ୍ତି ଏଥି ପ୍ରଭୁ ଶ୍ରୀଭୁବନେଶ୍ୱର,
ଭୁବନବିଖ୍ୟାତ ଯାଙ୍କ ଅନନ୍ତ ପ୍ରତାପ,
ଏହାର ଅପର ଆଖ୍ୟା ଚକ୍ରକ୍ଷେତ୍ର, ସେବି
ଏ ପାବନ ତୀର୍ଥ ନରେ ଲଭନ୍ତି ଅକ୍ଲେଶେ
ନିଖିଳ ଭାରତ ତୀର୍ଥ-ସେବନ-ସୁକୃତ ।
ଏକାମ୍ରେ ଉପେକ୍ଷି ସର୍ବେ ଆସୁଁ ଗଡ଼ ପଥେ
ଭେଟିଲେ ଭାର୍ଗବୀ ନଦୀ, ହୀର-ଶୁଭ୍ରନୀରା,
ବହୁଛି ତଟିନୀ ଯାମ୍ୟେ, ମୃଦୁ ମନ୍ଦ ବେଗେ,
କି ସେ ଭାଗ୍ୟଦେବୀଙ୍କର ଆଶୀର୍ବାଦଧାରା ।
ପୁଚ୍ଛନ୍ତେ ଧରଣୀପାଳ ଭାର୍ଗବୀ ଚରିତ,
ଉତ୍ତରିଲେ ଯତିବର, ମେଦିନୀ-ମଣ୍ଡନ,
ଋଷିଗୁରୁ ଭୃଗୁ ତପୁ ସଂଜାତା ଏ ନଦୀ,
ଭାର୍ଗବୀ ଅଭିଖ୍ୟା ତେଣୁ ବହେ ଉତ୍କଳରେ ।

ଏହି ଯେ ଦିଶୁଛି ପୂର୍ବେ କୁଟିଳା ତଟିନୀ,
ସହୋଦରୀ ଏହାର ସେ, ଦଧିଭଦ୍ରା ନାମେ,
ମହାସ୍ୱାର୍ଥତ୍ୟାଗୀ ଦ୍ୱିଜ ମହର୍ଷି ଦଧୀଚ
ସାଧିଥିଲେ ତୀବ୍ର ତପ ଏ ନିମ୍ନଗା କୂଳେ,
ତା ତୀରେ ଧବଳଗିରି ତୋଳିଛି ମସ୍ତକ,
ନୀରବ ଐତିହାସିକ ସେ ଗିରି, ଅଙ୍କିତ
ତା' ଅଙ୍କେ ଅମର ବର୍ଣ୍ଣେ ସୁଦୂର ଅତୀତୁଁ
ଐରରାଜା ଆଜ୍ଞାବଳେ ବୌଦ୍ଧାନୁଶାସନ ।
ଦିଶୁଛି ଦୀର୍ଘିକା ଦେଖ ସମ୍ମୁଖେ ବିସ୍ତୃତ
ସର ନାମେ, ସିନ୍ଧୁ ତୀରେ ଉପସିନ୍ଧୁ ପ୍ରାୟ,
ଅତୀତକାଳର କି ସେ ସ୍ମରଣ ମୁକୁର,
'ମହାଦାତା ପ୍ରାୟ ହ୍ରଦ ବାଣ୍ଟେ ଅକାତରେ
ଧନରାଶି, ମତ୍ସ୍ୟ ମୁକ୍ତା ପୁଷ୍କର ବ୍ୟାଜରେ,
ବୁଝିଛି ସେ ଧର୍ମ ଆଖ୍ୟା ଦାନେ ଅଳଙ୍କୃତ,
ମହିମିତ ଗୌରବିତ ଦାନେ ସିନା ଧନ ।
ବହୁ ଦର୍ଶନୀୟ ଦୃଶ୍ୟ ଦେଖି ଏହିରୂପେ
ମିଳିଲେ ଯାଇଁଏ ଶେଷେ ମହାସିନ୍ଧୁ ତୀରେ
ସ୍ୱର୍ଗଦ୍ୱାରେ, ଯହିଁ ଦେବେ ଓହ୍ଲାଇ ତ୍ରିଦିବୁ
ଆସନ୍ତି ଏ ମହାଧାମେ, ବୈକୁଣ୍ଠପତିଙ୍କ
ଦର୍ଶନଲାଳସେ, ନିତ୍ୟ ପ୍ରାତଃ ସନ୍ଧ୍ୟାକାଳେ ।
ଭବସିନ୍ଧୁ ସମ ସିନ୍ଧୁ, ଲହରୀ ଘଟନା,

ହାଙ୍ଗର ମଗର ଆଦି ଜନ୍ତୁ ବହୁକୁଳ,
ତିମି ମତ୍ସ୍ୟ, ଜୀବ ତହିଁ ଅନ୍ୱେଷୀ, ସ୍ୱକୃତ-
ନାବିକ ଯୋଗେ ହୁଏ ସେ ଶୃଙ୍ଖଳିତ ସତତ ।
ବର୍ଷୀୟାନ ରତ୍ନାକର ମହାପୁରାତନ,
ମାତ୍ର ସେହି ପୁରାତନ ଅନ୍ତସ୍ତରଭେଦି
ଉଠୁଛି ଆଭାସି ଖରେ ନିତ୍ୟ ନୂତନତା,
ଜାଗ୍ରତ ସୁଷୁପ୍ତି ଆଣେ ତା' ରୁଦ୍ର ବିସ୍ମୃତ ।
ସଦା ସେ ମୁଖର, କି ସେ ବିଶ୍ୱ ବୈତାଳିକ ?
ଖଙ୍ଗୁଛନ୍ତି କେତେ ଯାତ୍ରୀ ସମୁଦ୍ରେ ଲହରୀ
ଓଲଟି ତରଙ୍ଗାବେଗେ, ଯଥା ସନ୍ଧ୍ୟାଦେଖି
ସମର୍ପନ୍ତି ଦୂରଗତ କ୍ରୀଡ଼ାରତ ବାଳେ
ମାତୃକୋଳେ ଆଣି, ତଥା ସାଗରଲହରୀ
ଆଣିଦିଏ ବେଳାଅଙ୍କେ ସ୍ନାନଯାତ୍ରିକୁଳେ ।
ପୁଷ୍ପ ନାରିକେଳ ଆଦି ଭକ୍ତିଭେଟି ଦ୍ରବ୍ୟ
ନିକ୍ଷେପନ୍ତି ସିନ୍ଧୁଗର୍ଭେ ସର୍ବଜନେ, ମାତ୍ର
ଯେଣୁ ତାର ମହାଜନବ୍ରତ, ଗ୍ରହି ତେଣୁ
ସ୍ପର୍ଶମାତ୍ରେ ତାହା ଆଣି ଦିଅଇ ଫେରାଇ ।
କି ସୁନ୍ଦର ବେଳା, ଶଙ୍ଖଶୁକ୍ତି ତାରକିତ,
ଲୋହିତ କର୍କଟେ ତହିଁ ପଦ୍ମରାଗଖଣ୍ଡ,
ଗଡ଼ିବୁଲେ ମୃଦୁବାତେ ଗୁଡ଼କଙ୍କଫୁଲ ।
ସର୍ବାଙ୍ଗ ପ୍ରୋଥିତ କରି ବେଳା ବାଲୁକାରେ

ଦର୍ଶକର ମୁଖ ଉନ୍ନ, କେତକ ସାଧକେ
କେଜାଣି କେବଣ ଧ୍ୟାନେ ଛନ୍ତି ନେତ୍ର ମୁଦି,
କେହି ବା ଉତ୍ତାନଶାୟୀ ବକ୍ଷେ ଚାପି ଶିଳା,
ବସ୍ତ୍ରାବୃତ କରତଳ ପୃଷ୍ଠି ମୁଦ୍ରାଧନେ ।
ପୁଚ୍ଛିଲେ ବନ୍ଦମ, ଏକ ଅଦ୍ଭୁତ ଘଟଣା
ପଥପାର୍ଶ୍ୱେ ଶବପନ୍ତ ପ୍ରୋଥିତ କିପାଇଁ ?
ଉତ୍ତରିଲେ ଯତି—ସିଏ, ନୁହନ୍ତି ଏ ଶବ,
ଅଟନ୍ତି ଏମାନେ ଏକ ଶ୍ରେଣୀୟ ସାଧକ,
ଲଭନ୍ତି କି ପୁଣ୍ୟ ଅର୍ପି ଶରୀରେ ଯନ୍ତ୍ରଣା,
ଜଣା ତାହାଙ୍କୁହିଁ ସେହି ସମସ୍ୟା ବିଷମ ।
ଭାଷିଲେ ବନ୍ଦମ—ଯତି, ମିଳୁଥାନ୍ତା ଯେବେ
କାୟକ୍ଲେଶ ବନ୍ଦନମଧ୍ୟେ ପୁଣ୍ୟ, କେଉଁଦିନୁ
ତେବେ ଯାଆନ୍ତାଣି ଉଠି ଅଭିଧାନ ଅଙ୍କୁ
ପାପ ଶବ୍ଦ, ନ ଥାଆନ୍ତେ ସଂସାରେ ପାତକୀ,
ଧର୍ମସାଧନର କ୍ଷେତ୍ର ନୁହେ ତ ଶରୀର,
ମନହିଁ ଭଜନ ଏକା ତହିଁକି ସର୍ବଥା ।
କିପାଇଁ ଏହାଙ୍କୁ ମୁଦ୍ରା ଅର୍ପନ୍ତି ଯାତ୍ରୀଏ ?
କହିଲେ ତାପସ ତହୁଁ—ହୁଏ ପୁଣ୍ୟାର୍ଜନ
ଦାନ କଲେ ତୀର୍ଥେ, ଏହି ଭ୍ରାନ୍ତ ବିଶ୍ୱାସରେ
ଅର୍ପନ୍ତି ଏହାଙ୍କୁ ମୁଦ୍ରା ଦାନପାତ୍ର ଜାଣି ।
"ପୁଣ୍ୟ ନୁହେ ପଣ୍ୟଦ୍ରବ୍ୟ", ଉତ୍ତରିଲେ ନୃପ,

ଚଳେ ନାହିଁ ଏକା ଦକ୍ଷିଣା ଧର୍ମ ଜଗତରେ,
ପ୍ରେମ, ମୈତ୍ରୀ, ସତ୍ୟ, ନ୍ୟାୟ, ଶାନ୍ତି, ପବିତ୍ରତା,
ହେଲେ ସଂଜୀବିତ ମନେ, ହୁଅନ୍ତି ଧାର୍ମିକ
ମାନବେ, ଅନ୍ୟଥା ଦାନ ଯଦୃଚ୍ଛା ପାତ୍ରରେ
ଅସ୍ତ୍ରାଘାତ ବିନା ମୂଳେ ସ୍ୱାବଲମ୍ବିତାର,
ହୁଅନ୍ତି ସେରୂପ ଦାନେ ଅସନ୍ତୁଷ୍ଟ ବଧି,
ବସ୍ତୁତଃ ତା ପୁଣ୍ୟ ନୁହେ, ଅକ୍ଷମ୍ୟ ପାତକ,
ନୁହନ୍ତି ସାଧକ ଏହି ଭଣ୍ଡେ—ପଣ୍ଡଶ୍ରମୀ,
ସକଳେ ଅଳସ, ଶଠ, ଅର୍ଥସଂଗ୍ରାହକ,
ଏମାନଙ୍କ ପ୍ରତି ଦୟାପ୍ରଦର୍ଶନ ବିନା
ଧର୍ମର ଅବଜ୍ଞା, ପୁଣି ପ୍ରତାରଣାପୂଜା ।

ଉତ୍ତରସ୍ୟେ ତପୀ ସଙ୍ଗେ ଭୂପ ଯଶୋଧନ
ବୁଲିଲେ ସୈକତ ପଥେ, ସ୍ଥାନପ୍ରଭାବରେ
ସ୍ପର୍ଶିଲା ସାତ୍ତ୍ୱିକ ଭାବ, ସ୍ଫୁରିଲା ପୁଲକ
ଆଶ୍ରିଲେ ତାହାଙ୍କ ହୃଦେ ଏକକାଳେ ଆସି
ଆନନ୍ଦ, ସନ୍ତୋଷ, ଶାନ୍ତି, ବୈରାଗ୍ୟ, ସଂଯମ,
ପବିତ୍ରତା, ସୁଧାମୟ ଅନାବିଳ ସୁଖ ।
ଏ ଅଦ୍ଭୁତ ବିପର୍ଯ୍ୟୟ ଅନୁଭବ ଘଏ
ପୁଚ୍ଛିଲେ ତାପସେ, ପ୍ରଭୋ କେଉଁ ସ୍ଥଳୀ ଏହା,
କିପାଁ ଏଥି ଜୀବନର ଜୀର୍ଣ୍ଣ ଉପବନେ

ଉଦିତା ବସନ୍ତ-ଲକ୍ଷ୍ମୀ, ଅହୋ, କି ସୌଭାଗ୍ୟ !
ଚିର ଅନ୍ଧକାରାବୃତ ଚିତ୍ତଗୃହେ ଅଜି
ଅଲକ୍ଷେ ଜାଳିଲା କିଏ ମଣିମୟ ଦୀପ—
ସ୍ନିଗ୍ଧ, କାନ୍ତ, ସମୁଜ୍ଜ୍ୱଳ, ବୋଲନ୍ତୁ ଗୋସାଇଁ ।
ଉତ୍ତରିଲେ ଯୋଗୀ— ନୃପ, ଏ ଶ୍ରୀକ୍ଷେତ୍ରଧାମ,
ଶାସ୍ତ୍ରର ବର୍ଣ୍ଣିତା ସ୍ୱର୍ଗ, ଅପ୍ରତ୍ୟକ୍ଷ ତାହା,
ମାତ୍ର ଏ ପ୍ରତ୍ୟକ୍ଷ ସ୍ୱର୍ଗ, ରୂପବନ୍ତ ଏଥି
ସାକ୍ଷାତ କୈବଲ୍ୟରୂପୀ ବ୍ରହ୍ମ ସନାତନ,
ରାଜ ରାଜେଶ୍ୱର ଏହୁ ଅଖିଳ ତୀର୍ଥର ।
ଗୋଟିଏ କୁସୁମେ ଯଥା ନ ହୁଏ ଦେଖାଇ
ଉଦ୍ୟାନର ସର୍ବବିଧ ସୌନ୍ଦର୍ଯ୍ୟଗରିମା,
ତଥା ଏ କ୍ଷେତ୍ରବରର ଅକ୍ଷୟ ମହିମା
ହେବ ନାହିଁ ପଦେ ଅଧେ ବର୍ଣ୍ଣନାରେ ଶେଷ ।
ଏ ସ୍ଥାନ ପରଶମାତ୍ରେ ଭୁଲିଯାଏ ନର
ସ୍ୱଭାବଦୌର୍ବଲ୍ୟ, ସ୍ୱାର୍ଥ, ପାପ, ସଂକୀର୍ଣ୍ଣତା,
ଅମୃତବର୍ତ୍ତିକା ଏହା ଅଜ୍ଞାନ ନେତ୍ରର ।
ଅଷ୍ଟଶମ୍ଭୁ, ଅଷ୍ଟଶକ୍ତି ବସନ୍ତି ଏହାର
ଅଷ୍ଟଦିଗେ, ବିରାଜନ୍ତି ମଧ୍ୟଭାଗେ ବନ୍ଧୁ
ଦେବ ଦେବୀ, ଲଭି ଦାରୁବ୍ରହ୍ମଙ୍କ ସନ୍ନିଧି,
ଯଥା ଗୁଣିଜନେ ଇଚ୍ଛି ନୃପ ସହବାସ
ନବସନ୍ତ ଯାଇ ସର୍ବେ ରାଜଧାନୀ ସ୍ଥାନେ

ପୂର୍ଣ୍ଣ ଏ ପବିତ୍ର ସ୍ଥଳୀ ମଠେ, ଦେବାଳୟେ,
ସରେ, ସ୍ଥିତ ଅଳ୍ପ ଦୂରେ ତୀର୍ଥ ମାର୍କଣ୍ଡେୟ,
କଲ୍ପଜୀବୀ ମାର୍କଣ୍ଡେୟ ତାପସସତ୍ତମ
ସାଧିଥିଲେ କୂଳେ ଯାର ତପସ୍ୟା କଠୋର,
ଇଚ୍ଛା ଯଦି ଦେଖିବାକୁ ତାହା, ଆସ ତେବେ
ଏହି ପଥେ, ଏହା ଭଣି ଯେତେଗଲେ ଋଷି
ଯଥାସ୍ଥାନେ ବନମାର୍ଗେ, ଦେଖି ନୃପ ତାର
ଜନ କେଶନଖମୟ, ପୁଚ୍ଛନ୍ତେ କାରଣ,
ଉତ୍ତରିଲେ ତପୋଧନ, କଲେ ମାନସିକ
ଏ ତୀର୍ଥେ ମସ୍ତକ କେଶ ଦେବାକୁ ଉଣ୍ଡାଇ,
ନ ବାଧେ ଆପଦ, ଏହି ମୂଢ଼ ଧାରଣାରେ
ହୋଇଛି ଏ ପୁଣ୍ୟତୀର୍ଥ ନର୍କେ ପରିଣତ ।
ଅହୋ, କେଡ଼େ କୁସଂସ୍କାର, ଭଣିଲେ ନରେଶ,
ନଖ କେଶ ଉତ୍କୋଚରେ ବଶ କି ଦେବତା ?
କି କହିବି ଅଛି ଭଲ ବିପଦ ଉପରେ
ମାର୍କଣ୍ଡତୀର୍ଥର, କଲେ ଅପବିତ୍ର ତାଙ୍କୁ
ଦେବ ସେତୁ ବର, ଏହା ଅଦ୍ଭୁତ ସିଦ୍ଧାନ୍ତ !
ହାୟ ତୀର୍ଥ, ହାୟ ଧର୍ମ, ତୁମ୍ଭେ ପୁଣି କହେ
ମାନବ ସ୍ବଭାବସିଦ୍ଧ ଉତ୍କୋଚଗ୍ରାହକ ?
କଲେ ଏଥି ସ୍ନାନ, କରି ମସ୍ତକ ମୁଣ୍ଡନ,
ଜଳ ଗୁଣେ ହୋଇପାରେ ସ୍ବାସ୍ଥ୍ୟର ଉନ୍ନତ—

ଯୋଗର ବିଜାଣୁ ନଷ୍ଟ, ମାତ୍ର ତା ଦୂଷିତ
କରି ନଖ ଲୋମାଦିରେ ହେବା ନିରାପଦ,
ନଷ୍ଟେ ଏହା ଧର୍ମଦ୍ରୋହୀ ବର୍ବର ଧାରଣା ।
କିଏ ତୀର୍ଥ ତପୋନିଧି, ଯେ ପବିତ୍ର ସ୍ଥାନ
ସ୍ୱାସ୍ଥ୍ୟଶାନ୍ତିମୟ, ଘଟେ ସାଧୁସଙ୍ଗ ଯହିଁ,
ଅଥବା ଯେଠାରେ ଲଭେ ଚିତ୍ତ ପ୍ରସନ୍ନତା,
ସେହି ତ ପରମ ତୀର୍ଥ, ଯେ ନରପାଂଶୁଳ
କରେ ତାହା କଳଙ୍କିତ, ସେ ଘୃଣ୍ୟ ପିଶାଚ ।

ଏହିରୂପେ ଦେଖି ବହୁ ତୀର୍ଥ ପୀଠ ଶ୍ରମ
ମିଳିଲେ ଶ୍ରୀ ବିକ୍ରମାର୍କ ସଗହଣେ ଯାଇ
ଶ୍ରୀମନ୍ଦିର ସିଂହଦ୍ୱାରେ, ତହିଁ ତପଗୃସ୍ଥ
ଭାଷିଲେ ସସ୍ମିତେ-ନୃପ, ଏହି ଶ୍ରୀମନ୍ଦିର,
ମନୋବୃତ୍ତି-ମାନଦଣ୍ଡ ଉତ୍କଳଜାତିର,
ନିଧନେ ବୈକୁଣ୍ଠ ଯଥା, ତଥା ଏ ଶ୍ରୀକ୍ଷେତ୍ରେ ;
ଜଗତ୍ପିତ ଜଗନ୍ନାଥ ବିରାଜନ୍ତି ଏଥି,
କରିବ ସାର୍ଥକ ନେତ୍ର, ପ୍ରବେଶ ସତ୍ୱର,
ଏହା ଭାଷି ଦେଖିଗଲେ ବେଢ଼ା ମଧ୍ୟଭାଗେ ।
ଅବଲୋକି ମନ୍ଦିରର ବିରାଟ ଆକୃତି
କହିଲେ ଅବନ୍ତୀନାଥ ଭାବଗଦଗଦେ-
ନିବସନ୍ତି ମଧ୍ୟେ ଯାର ବିରାଟ ପୁରୁଷ,

ବିରାଟୁ ବିରାଟତର ନୋହିବ ସେ କିଆଁ ?
ଏ ଭଳି ମହତ୍ତ କୀର୍ତ୍ତି ରଖି ପାରେ ଯେହୁ,
ସେହି ଏକା ରଖିବାକୁ ସ୍ୱଜନ ସର୍ବଥା
ଜାତି, ଧର୍ମ, ସମାଜର ପ୍ରତିଷ୍ଠା ବିଶାଳ ।
ଅହୋ, କି ଅଦ୍ଭୁତ ଶିଳ୍ପ, ଯତ୍ନେ ଯନ୍ତ୍ରିତ, ନା
କଳ୍ପନା-କଳ୍ପିତ ? ବାର ହୁଏ ନାହିଁ କିଛି,
ଆଭାସି ଉଠୁଛି ତହୁଁ ଜାତୀୟ ପ୍ରାଣର
ମହାସତ୍ତ୍ୱ, ମହାନତା, ମହାନୁଭବତା ।
ଧନ୍ୟ ଏ ଉତ୍କଳ ମସ୍ତି, ଗରିଷ୍ଠ-ଗୁଣରାଶି,
ବଡ଼େ ବଡ଼, ବଡ଼-ବଡ଼ ଚଢ଼େ ପୁଣି ବଡ଼,
ରାଜରାଜେଶ୍ୱରୀ ଏହା ଏ ପୁଣ୍ୟ ଭାରତେ ।
ମାତ୍ର ଦେବ, ସନ୍ଦିଗ୍ଧ ମୁଁ ଅତି, ଅଛି କିଆଁ
ବିଜଡ଼ିତ ଶ୍ରୀମନ୍ଦିର ଗାତ୍ରେ ସ୍ଥାନେ ସ୍ଥାନେ
ବୀଭତ୍ସ ଅଶ୍ଳୀଳ ଚିତ୍ର, କୁରୁଚ୍ୟୁତ୍ପାଦକ,
ଦେବ-ଅର୍ଚ୍ଚଣିଆ ସଙ୍ଗେ ମିଶିଲା କିରୂପେ
ଏ ଉଚ୍ଛିଷ୍ଟ, ଲାଗେ ମନେ ଆଘାତ ସୁତୀକ୍ଷ୍ଣ ;
ଦେବାନ୍ନ ଅମୃତେ ଦେଖି ବିଷ କଳମ୍ବିତ
ନ ହେବ ଶତଧା ଫାଟି କାହାର ହୃଦୟ ?
ଉତ୍ତରିଲେ ଯୋଗୀ—ନୁହେ ନିରର୍ଥକ ଏହା,
ଏ ଦିବ୍ୟ ଦେଉଳରାଜ ଦେଖାଇ ସଙ୍କେତେ
ସଂସାରର ଅଭିନୟ, ଅପୂର୍ବ ଉପଦେଶ,

ସଂସାରର ବହିର୍ଭାଗେ ଲାଗିଛି ବିସ୍ମୃତ
ଷଡରିପୁ ଇନ୍ଦ୍ରିୟର ଏ ଘୃଣିତ ଲୀଳା,
ଏଣୁ କହେ ଏ ମନ୍ଦିର ନୀରବ ଭାଷାରେ--
"ହେ ପ୍ରବେଶି, ଏଥିପ୍ରତି ଦୃଷ୍ଟି ନ ବଳାଇ
ପଶ ଅଭ୍ୟନ୍ତରେ, ଯହି କରିବ ସଫଳ
ଅମର ମାନବ ଆତ୍ମା, ହେରି ନିରଞ୍ଜନ
ଜଗତନିର୍ଲିପ୍ତ ବ୍ରହ୍ମ, ସତ୍ୟଶିବମସ୍ତୁ ।"
ଏ ଗମ୍ଭୀର ମହାନୀତି, ଏହି ପୁଣ୍ୟବାଣୀ,
ଏହି ଆଧ୍ୟାତ୍ମିକ ତତ୍ତ୍ୱ, ଏ ସାରୋପଦେଶ
ଲୁକ୍କାୟିତ ଏ ଅଶ୍ଳୀଳ ମୂର୍ତ୍ତି ଅନ୍ତରାଳେ ।
ଏଣେ ହେଉ ଦୃଷ୍ଟିପାତ, ଏହି ଯେ ମଣ୍ଡପ
ଦିଶୁଛି ସମ୍ମୁଖେ, ତାହା ଶ୍ରୀମୁକ୍ତିମଣ୍ଡପ,
ଧର୍ମପ୍ରାଣ ଶାସ୍ତ୍ରଜ୍ଞ ପଣ୍ଡିତମଣ୍ଡଳୀ
ବସି ଏଥି ସଂଗଠନ୍ତି ଯେବଣ ବ୍ୟବସ୍ଥା,
ହୁଏ ତାହା ଆର୍ଯ୍ୟାବର୍ତ୍ତେ ପୂଜିତ, ଗୃହୀତ,
ପାପେ ପ୍ରାୟଶ୍ଚିତ୍ତ ବିଧି ଅର୍ପନ୍ତି ଏ ସଭା ।
ପୂ ଛୁଲେ ବନ୍ଦନ, ଯତ, ସ୍ୱର୍ଣ୍ଣ ରୌପ୍ୟ ଦାନେ
କରେ ପ୍ରାୟଶ୍ଚିତ୍ତ ଲୋକ, ମାତ୍ର କି କ୍ଷମତା
ଧାତବ ପିଣ୍ଡର ଅଛି ପାପ ଉପରେ ବା ?
ସର୍ବଶ୍ରେଷ୍ଠ ପ୍ରାୟଶ୍ଚିତ୍ତ—ଦୁଷ୍କୃତ ସୁମରି
ଅନୁତାପ, ଆଉ ପାପତ୍ୟାଗର ସଙ୍କଳ୍ପ ।

ଭାଷିଲେ ତାପସ, ସତ୍ୟ ଯା କହିଲ ରାଏ,
କିନ୍ତୁ ହେଲେ ପ୍ରଚଳିତ ସେଭଳି ବିଧାନ,
ନ ରହିବ ପାପ ପ୍ରତି ଭୟ ଆଉ କାର,
ସେଥିଲାଗି କାୟକ୍ଲେଶ ଭ୍ରମଣୋପବାସ,
ଅର୍ଥଦଣ୍ଡ ଆଦି ଅଛି ପ୍ରାୟଶ୍ଚିତ୍ତ ବିଧି ।
ଦେହକ୍ଲେଶ, ଅର୍ଥନାଶ ବହୁଦିନ ଯାଏ
ରଖେ ସଂଜୀବିତ ପାପି ମନେ ପୂର୍ବକୃତ
ପାପ ସ୍ମୃତି, ଅନୁକ୍ଷଣ ଆଣି ଦିଏ ଭୀତି,
ସେ ଫଳରେ ଥାଏ ପାପୀ ପାପରୁ ବିରତ ।
ପୁଚ୍ଛିଲେ ବିକ୍ରମ, ମୁକ୍ତି ମଣ୍ଡପ ତଳରେ
ଲାଗିଛି କେବଣ ମେଳା ? ଇକ୍ଷ୍ୱାସେ୍ୟ ତହୁ
ଉତ୍ତରିଲେ ଯୋଗୀ—ନାହିଁ ଏଥି ଦେବଭୋଗେ
ପ୍ରଭେଦ କିଛିହିଁ ଜାତି ବା ସମ୍ପ୍ରଦାୟର,
ଜାତିଧର୍ମନିର୍ବିଶେଷେ ଏକଠେ ଯାତ୍ରିଏ
କରନ୍ତି ପ୍ରସାଦସେବା ନିର୍ବିକାରମନେ
ଏକପାଟେ, ଧର୍ମର ଏ ମହୋଦାର ନୀତି
ଅଛି, ସଦା ପ୍ରଚଳିତ ଏହି କ୍ଷେତ୍ରବରେ ।
ଭାଷିଲେ ବିକ୍ରମ ତହୁଁ ଅତୁଳ ଆହ୍ଲାଦେ,
ସତ୍ୟ କି ହେ ଏ ବଚନ, ଏହି ସମନ୍ୱୟ
ଧର୍ମର ସାଫଲ୍ୟ ସିନା—ମହତ୍ତ୍ୱ, ଗୌରବ—
ଧର୍ମର ଧରମପଣ, ଏହି ସ୍ଥାନେ ଏକା

ଜୀବର ମୌଳିକ ଧର୍ମ, ଆହା କି ସୁନ୍ଦର
ସ୍ଥିତ, ନଷ୍ଟେ ଏ ଶ୍ରୀକ୍ଷେତ୍ର ଜଗତେ ଦୁର୍ଲ୍ଲଭ,
ନଷ୍ଟେ ଏଥି ପୂର୍ଣ୍ଣବ୍ରହ୍ମ ମୂର୍ତ୍ତି ଅଧିଷ୍ଠିତ ।
ଚଳ ଏବେ ତପୋଜୀବ, ପ୍ରବେଶି ଦେଉଳେ
ହେର ପ୍ରାଣାରାମପ୍ରଦ ଶମିବା ହୃଦସ୍ଥ,
( ଯେ ପଦ ପ୍ରତ୍ୟାଶେ ଆତ୍ମା ଚିର ପିପାସିତ )
ହେଉଛି ବ୍ୟାକୁଳ ପ୍ରାଣ, ସୁଧାପାତ୍ର ରଖି
ଅଗ୍ରେ, ହୋଇ ପାରେ ସ୍ଥିର କେ ନ ଭୁଞ୍ଜି ତାହା ।

ଏଥୁଅନ୍ତେ ଶ୍ରୀମନ୍ଦିରେ ପ୍ରବେଶି ଐନ୍ଦ୍ରଜ
ଦେଖିଲେ ଲାଗିଛି ତହିଁ ଭକ୍ତର ଉତ୍ସବ,
ଭକ୍ତକଣ୍ଠ-ବିନିଃସୃତ ଛନ୍ଦୋବଦ୍ଧ ସ୍ତବେ
ମୁଖର ମନ୍ଦିର, ସର୍ବେ ଯାଚନ୍ତି ମୁକତ,
ମନ୍ଦିର ନୁହେ ତ ତାହା— ମୁକ୍ତିର ଆକର ।
କି ଅଜ୍ଞାତ ଆନନ୍ଦରେ ଉଠିଲା ଉଚ୍ଛୁଳି
ମନ, କି ସୁଧାପ୍ରବାହ ବହିଲା ହୃଦୟେ
ଚିତ୍ତର ଅଜ୍ଞାତସାରେ, କେ ବୁଝିବ ତାହା ।
ହେର ଦାରୁବ୍ରହ୍ମମୂର୍ତ୍ତି ନୀଳମଣିପ୍ରଭ,
ଭକ୍ତପ୍ରେମଭାବାବେଶେ ହୋଇ ଉନ୍ମତ୍ତ
ପଡ଼ିଲେ ସାଷ୍ଟାଙ୍ଗେ ଲୁଟି ଅସଂଖ୍ୟ ପ୍ରଣତି,
ଉଠି ପୁଣି ଯୁକ୍ତକରେ ଭଣିଲେ ଏମନ—

ନିସ୍ତରିଲି ନିସ୍ତରିଲି ପ୍ରଭୋ, ମୁକ୍ତ ହେବା
କେଉଁ ଛାର, ଧନ୍ୟ ହେଲି ମୁହିଁ, ଦେଇ ନାହିଁ
ତୁମ୍ଭେ ଏ ଚର୍ମନୟନ ଅଳୀକ ସ୍ୱପ୍ନର
ବ୍ୟର୍ଥତା ଦର୍ଶନ ଲାଗି, ପ୍ରଦତ୍ତ ତା ଦେବ,
ଶ୍ରୀରୂପ ଦର୍ଶନେ ତବ, ବୁଝିଲି ମୁଁ ଏବେ,
ଚରମ ସାଫଲ୍ୟ ଲାଭ ହେଲା ଜୀବନର,
ବହୁଜନ୍ମ ଅପୂର୍ଣ୍ଣାଶା ପରିପୂର୍ଣ୍ଣ ଆଜ ।
କି ଭେଟି ଅର୍ପିବି ହରି, ଯାହା କିଛି ମୋର,
ତାହା ତ ତୁମ୍ଭର, ପୁଣି ତୁମ୍ଭେ ସୁଦ୍ଧା ମୋର;
ଅର୍ପିଲି ତୁମ୍ଭଙ୍କୁ ଏଣୁ ତୁମ୍ଭର ଉଦ୍ଦେଶେ ।
ହୋଇଥାନ୍ତା ସ୍ୱର୍ଣ୍ଣପିଣ୍ଡ ଯଦି ଏ ହୃଦୟ,
ଯତନେ ନିର୍ମାଣି ତହିଁ ରୁଚିର କଟାଉ,
ଦିଅନ୍ତି ହରଷେ ତବ ଚରଣେ ଯୋଗାଇ ।
ସନାତନ, ପୁରାତନ, ହେ ଚିର ନୂତନ,
କର ପରିଗ୍ରହ ମୋର ସମଗ୍ର ପ୍ରାଣର
ସମସ୍ତ କାମନା, ପୂଜା ଉପାଦାନରୂପେ ।
ହେ ପୂର୍ଣ୍ଣ, ଏ ଜୀବନର ପ୍ରତି ଦଣ୍ଡ ଲତା
ପରିପୂର୍ଣ୍ଣ ହେଉ ତୁମ୍ଭ ପ୍ରାର୍ଥନା-ସଙ୍ଗୀତେ,
ଏତିକି ମାଗୁଣି ନାଥ, ସେ ଅଭୟ ପଦେ ।
ସ୍ତୁତି ଏହିରୂପେ ଗାଏ, ରତ୍ନସିଂହାସନେ
( ଲକ୍ଷସଂଖ୍ୟ ଶାଳଗ୍ରାମ ଶିରୋମଣି ସାକ୍ଷୀ )

ମହାର୍ଘ ରତ୍ନହାର ଅର୍ପି ଭେଟିରୂପେ,
ବାନ୍ଧି ଉତ୍ତମାଙ୍ଗେ ଦେବପ୍ରସାଦ ଶିରୋପା,
ବାହାରିଲେ ଶ୍ରୀମନ୍ଦିରୁ ସନ୍ନ୍ୟାସୀ ସହିତ ।
ଆସୁ ଆସୁ ପଥେ ଯତି ପୁଚ୍ଛିଲେ ସାଗ୍ରହେ,
ଶ୍ରୀମୂର୍ତ୍ତି ସମସ୍ୟା, ନୃପ, ପାରିଲ କି ଭେଦ ?
ଉତ୍ତରିଲେ ରାଏ, ଅଛି ସନ୍ଦେହ ମୋ ମନେ,
ପୁଚ୍ଛିବି ପୁଚ୍ଛିବି ବୋଲି ଭାବିଥିଲି ଯାହା,
ଦୟା ବହି କଲ ତୁମ୍ଭେ ତା ଅବତାରଣା,
କିପାଁ ଜଗନ୍ନାଥଙ୍କର ମୂର୍ତ୍ତି ବିକଳାଙ୍ଗ,
ବୋଲନ୍ତୁ ଏଥିରେ ଅଛି କି ତତ୍ତ୍ୱ ନିହିତ ?
କହିଲେ ତାପସ, ସତ୍ୟ ବିକଳାଙ୍ଗ ତାହା,
ଏ ରୂପ ଦେଖାଇ ବ୍ରହ୍ମ ବୋଲନ୍ତି ନୀରବେ,
ନାହିଁ ମୋର ହସ୍ତପଦ, ତଥାପି ସକଳ
କାର୍ଯ୍ୟର କାରଣ ମୁହିଁ, ଅତଃ ହେ ମାନବ,
ବହି ତୁମ୍ଭେ ହସ୍ତପଦ, ନ ହୁଅ ବିରତ
କର୍ମୁ, କର୍ମ ମାନବର ଅଭୀଷ୍ଟ ଦେବତା,
ତାହା ବଳେ ଲଭେ ନର ସାରୂପ୍ୟ ମୁକତି ।
ତୁଷ୍ଟି ଲଭି ବିକ୍ରମାର୍କ ପୁଚ୍ଛିଲେ ଆଦରେ,
ଏହି ଯେ ମାନବେ ଉଚ୍ଚ ପାର୍ଶ୍ୱକଣ୍ଠିଧାରୀ,
କେ ସେମାନେ, କରୁଛନ୍ତି କି ମନ୍ତ୍ର ଆବୃତ୍ତି ?
ଉତ୍ତରିଲେ ଧର୍ମାନନ୍ଦ— ବୋଲନ୍ତି ସେମାନେ

ପଣ୍ଡା, ତୀର୍ଥପ୍ରଦର୍ଶକ ଯାତ୍ରିମାନଙ୍କର,
ଉଚ୍ଚାରନ୍ତି ମୁଖେ ଯାହା, ମନ୍ତ୍ର ନୁହେ ତାହା,
ଆଶୀର୍ବାଦ, ତିରସ୍କାର; ସର୍ବେ ଅର୍ଥ ଦାସ,
ପଇଲେ ସେ ଅର୍ଥ, କ୍ଷଣେ ତଥନ୍ତି ଉଠାଇ
ଯାତ୍ରୀ ସପ୍ତପୁରୁଷଙ୍କୁ ସପ୍ତ ସ୍ୱର୍ଗ ଶିରେ,
ନ ପାଇଲେ ଅର୍ଥ, ଆଣି ପକାନ୍ତି ନରକେ ।
କହିଲେ ନୃପତମୌଳି, ଯାହାଙ୍କ ଉଦର
କ୍ରୋଧ ଭର୍ତ୍ସନାରେ ପୂର୍ଣ୍ଣ, ଘୃଣ୍ୟ, କଳୁଷିତ,
ନୁହନ୍ତି ସେ ଦ୍ୱିଜ, ତାଙ୍କ ବ୍ୟାଜ ଆଶୀର୍ବାଦ
ବଳେ ଅଭିଶାପୁଁ, ତୀର୍ଥକଣ୍ଟକ ସେମାନେ,
ମହାପାପ ସେ ପାପିଙ୍କ ନାମ ଉଚ୍ଚାରଣ ।
ମାତ୍ର ଯେ ପ୍ରକୃତ ପଣ୍ଡା, କର ପାରେ ସେହି
ପ୍ରଜ୍ଞାରେ ଉଜ୍ଜ୍ୱଳ ବେଦ, ସ୍ୱତନ୍ତ୍ର ତା କଥା,
କ୍ରୋଧ, କ୍ଷୁଧା, ପ୍ରଲୋଭନ ତରେ ତାକୁ ଦୂରୁ,
ମଣେ ସେ ଜଗତଜନେ କୁଟୁମ୍ବ ସଦୃଶ,
ପାରେ କି ଧୈ ହୋଇ କେତେ ଗୀତ ସ୍ତୁତିମତ ?
ବଖାଣନ୍ତୁ ଦେବ, ଏବେ ଶ୍ରୀମୂର୍ତ୍ତିଆଖ୍ୟାନ,
ଏ ସରୂପ ବ୍ରହ୍ମେ କଲା ପ୍ରତିଷ୍ଠା କେ କେବେ ?
ମାନବ କି ଦେବତା ସେ, କହ୍ନା ସ୍ଥାନ ତାର
ଏ ଦୁହିଙ୍କ ଉତ୍କେ, ମୁଁ ତା' ଶ୍ରବଣେ ଉତ୍ସୁକ ।
ଉତ୍ତରିଲେ ଯୋଗୀ ତହୁଁ ସାନନ୍ଦେ ସାଗ୍ରହେ,

ଭାରତର ମହାକ୍ଷେତ୍ର, ମହାଧ୍ୱଂସକ୍ଷେତ୍ର,
ଯଦୁବଂଶ-କୁରୁକ୍ଷେତ୍ର-ପ୍ରଭାସେ ଯେ କାଳେ
ତେଜି ମରତନୁ କୃଷ୍ଣ—ବୃଷ୍ଣି କୁଳଧ୍ୱଜ
କଲେକ ପ୍ରୟାଣ ସ୍ୱର୍ଗେ, ସେକାଳେ ତାଙ୍କର
ପବିତ୍ର ଶରୀର ହେଲା ନାହୁତ ଅନଳେ,
ମାତ୍ର ତାହା ନ ଭକ୍ଷିଲା ସର୍ବଭକ୍ଷ ତଳେ,
ଜାଣି ତା ଅଦାହ୍ୟ ବୋଲି ଦାହକନକର
ବିସର୍ଜିଲେ ସିନ୍ଧୁଜଳେ, ଭାସି ଭାସି ତାହା
ମହାଦାରୁଦଣ୍ଡରୂପେ କଚ୍ଛୁ ଦିନାନ୍ତରେ
ଲାଗିଲା ହିନ୍ତାଳବନେ ବାଙ୍କି ମୁହାଣରେ:
ଏହିରୂପେ କେତେକାଳ ଗଲା ଅତିବାହି,
ପୂର୍ବେ ଘଟିଲା ଯାହା କହୁଛୁ ସକଳ।
ନୁହେ ଏହା ଉପକଥା କିମ୍ବା ଜନଶ୍ରୁତ,
ବର୍ଣ୍ଣିତ ଏ ଗୂଢ଼ତତ୍ତ୍ୱ ଉତ୍କଳ-ପୁରାଣେ । ( ୧ )
ଇନ୍ଦ୍ରଦ୍ୟୁମ୍ନ ନାମେ ରାଜା ଥିଲେ ମାଳବରେ
ବିଷ୍ଣୁଭକ୍ତିପରାୟଣ, ବିଷ୍ଣୁ ଗତପ୍ରାଣ,
ତାହାଙ୍କ ଭକ୍ତିରେ ତୁଷ୍ଟି ଲଭି ଜଗନ୍ନାଥ,
ଜଗନ୍ନାହା, ଜଗସ୍ତ୍ରାହା, କଲେ ସ୍ୱପ୍ନାଦେଶ —
ଦକ୍ଷିଣ ସମୁଦ୍ର ତୀରେ ବାଙ୍କି ମୁହାଣରେ
ଲାଗିଛି ଯେ ମହାଦାରୁ, ମୋ ସ୍ୱରୂପ ତାହା,

(୧) "ଉତ୍କଳଖଣ୍ଡ" ପଠିତବ୍ୟ ।

ବତ୍ସ, ତୁ ନିର୍ମାଣି ତହିଁ ମୂର୍ତ୍ତି ତିନ, କର
ସଂସ୍ଥାପନ ନେଇ ନୀଳଗିରିଚୂଳେ, ତହିଁ
ବିସୃଜନ୍ତୁ ତନୁ ମୋର ପୂର୍ବ୍ବ କ୍ଷେତ୍ରବର, (୧)
କଳିରେ କୈବଲ୍ୟକ୍ଷେତ୍ର ନାମେ ସେ ନାମିତ ।
ଇଷ୍ଟଦେବ ଆଜ୍ଞା ପାଇ ସେ ନୃପମଉଳି
ହେଲେ ପ୍ରେମାନନ୍ଦେ ଭୋଳ, ଭକ୍ତ ପକ୍ଷେ ସିନା
ପ୍ରଭୁଙ୍କ ଆଦେଶରକ୍ଷା ଗୌରବ-ସମ୍ପଦ,
ସେହି ତାର ପ୍ରାଣାକାଙ୍କ୍ଷା, ସେହି ତାର ସ୍ୱର୍ଗ,
ତେତିକ ପାଇଲେ ମଣେ କୃତାର୍ଥ ନିଜକୁ ।
ତହୁଁ ସିଏ ଯଥାସ୍ଥାନେ ମିଳି ଯଥାକାଳେ,
ଉଠାଇ ସେ ରୁଦ୍ରଦାରୁ, ଶ୍ରୀମୂର୍ତ୍ତି ନିର୍ମାଣେ
ନିଯୋଜିଲେ ବାଛି ବାଛି ପ୍ରବୀଣ ବଢ଼ାଇ.
ମାତ୍ର ଏ ଅନନ୍ତ ବିଶ୍ୱ ଯାହାର ଉଆଣ
କେ କ୍ଷମ ନିର୍ମାଣେ ତାକୁ ? କି ସାଧ୍ୟ ସୃଷ୍ଟିର
ନିର୍ମାଣିବ ସ୍ରଷ୍ଟା, ସୃଜି ପାରେ ବୁଦ୍ବୁଦ କି
ସିନ୍ଧୁ ? ସର୍ବଶିଳ୍ପଦକ୍ଷ ଯାନ୍ତ୍ରିକମଣ୍ଡଳୀ
ନ ପାରିଣ ଗଢ଼ି ମୂର୍ତ୍ତି ପ୍ରାଣପଣ ଯତ୍ନେ
ଭଜିଲେ ସ୍ୱପ୍ରଯତ୍ନ ସହ ବୈମୁଖ୍ୟ ଅଭାବ,
ଛଦ୍ମ ସୂତ୍ରଧରରୂପ ଧରି ତହୁଁ ହରି,
ନିର୍ମାଣିଲେ ନିକାଞ୍ଚନେ ଆପଣାକୁ ଆପେ.

(୧) "ପୁରୁଷୋତ୍ତମ ମାହାତ୍ମ୍ୟ" ଦ୍ରଷ୍ଟବ୍ୟ ।

ସାର୍ଥକଲେ ଚରାଚରେ ସ୍ୱୟମ୍ଭୂବ ନାମେ ।
ତୋଳାଇ ଦେଉଳ ନୃପ ନୀଳାଦ୍ରିଶିଖରେ,
କଲେ ତହିଁ ପ୍ରତିଷ୍ଠିତ ଏହି ମୂର୍ତ୍ତିତ୍ରୟ ।
ଦ୍ୱାଦଶ ବର୍ଷାନ୍ତେ ହୁଏ ନୂଆ କଳେବର,
ନବମୂର୍ତ୍ତି ସଂସ୍ଥାପିତ ହୋଇ ସିଂହାସନେ,
ବିସର୍ଜିତ ହୁଏ ତେବେ ପ୍ରାଚୀନ ପ୍ରତିମା ।
ଭାଷିଲେ ବିକ୍ରମ ଲଭି ବିସ୍ମୟ ବିଶେଷ—
ମୃତ୍ୟୁର ଯେ ମୃତ୍ୟୁ, ଅଛି ତାର ମୃତ୍ୟୁ ପୁଣି,
ଅହୋ' କି ଅଦ୍ଭୁତ କଥା, କେବେ ନୁହେ ତାହା,
ଦେଖାନ୍ତି ଏରୂପେ କିନା ଇଙ୍ଗିତେ ଶ୍ରୀହରି
ଜନ୍ମ ମୃତ୍ୟୁ ମହାଲୀଳା, ହୁଏ ଏରୂପରେ
ଦୁର୍ବୋଧ ସୁବୋଧ, ଭବେ ମରେ ନାହିଁ କେହି,
କିମ୍ବା ଜନ୍ମେ ନାହିଁ କେହି, ଜନ୍ମ ମୃତ୍ୟୁ ଖାଲି
ସୁବେଶ ପରିବର୍ତ୍ତନ, ଅଭିନୟେ ଯଥା,
ଜନ୍ମର ନିଦାନ ମୃତ୍ୟୁ, ତଥା ମରଣର
ନିଦାନ ଜନନ, ନୁହେ ଅନ୍ୟଥା ଏ ରୀତି,
ବୃକ୍ଷୁଁ ଫଳ, ଫଳୁଁ ବୃକ୍ଷ, ପ୍ରତ୍ୟକ୍ଷ ପ୍ରମାଣ ।
କହ ଯତି, ଅଛି କିହେ ସେହିକାଳୁ ଭଳି
ଅକ୍ଷତ ଏ ଦେବାଳୟ, କିମ୍ବା ଅନ୍ୟ କେହି
ତୋଳାଇଛି ବାରନ୍ତରେ ପରବର୍ତ୍ତୀ କାଳେ ?
ବିବରିଲେ ବ୍ରହ୍ମବେତ୍ତା—ବିନଶ୍ୱର ଭବେ

ନୁହେ ଅନଶ୍ୱର କେହି—ଜଡ଼ ବା ଜଙ୍ଗମ,
କେତେଥର ଏ ମନ୍ଦିର ହୋଇଛି ଚର୍ବିତ
କାଳର କଠୋର ଦନ୍ତେ, କେତେ ଥର ପୁଣି
ଉଦ୍ଭବିଛି କାଳଗର୍ଭୁ, କେ କହିବ ତାହା ?
ଦର୍ଶନେ ଏହାର ସତ୍ତା କେତେ ପୁରାବୃତ୍ତ
କରେ କରାଘାତ ଆସି ହୃଦୟ-କପାଟେ,
ଲଭି ଆଶେ ସୌଭାଗ୍ୟର ସ୍ୱପ୍ନ ସିଂହାସନ
ଯେତେ ଥରେ ଆକ୍ରମିଲେ ଏ ଉତ୍କଳମହୀ,
ମାତ୍ର ସେ ମତ୍ସରଗଣ ଦେଖାଇ ଆଟୋପ,
ଭୀଷଣ କାନ୍ତାର କାଳ ଘନାବଳୀ ପ୍ରାୟ (୧)
ଭଜିଲେ ବଳୟ ଶେଷେ, ଭୁଞ୍ଜିଲେ ପିଶୁନେ
ଉତ୍କଟ-କରଣୀ-ବୃକ୍ଷ-ବିକଟ-କୁଫଳ ।
ଥରେ ରକ୍ତବାହୁ ନାମେ ଦୈତ୍ୟକୁଳାଧମ
ଆକ୍ରମିଲା ଏ ଉତ୍କଳେ ଯାମ୍ୟଦିଗୁ ଆସି,
ଦହି ବହୁ ଗ୍ରାମ, ଧ୍ୱଂସି ବହୁ ଦେବାଳୟ,
ଲୁଣ୍ଠିଲା ଅକୁଣ୍ଠେ ଦୁଷ୍ଟ ଶ୍ରୀକୋଠଭଣ୍ଡାର,
ଲଭି ତହୁଁ ଭୀତ ଦେବସେବକନିକର,
ପ୍ରଚ୍ଛନ୍ନେ ଶ୍ରୀମୂର୍ତ୍ତି ଘେନି ପଳାଇ ତଡ଼ିତ
ଜିଲା ସ୍ୱର୍ଣ୍ଣପୁର ମଧ୍ୟେ ଗୋପାଳୀ ଗ୍ରାମରେ
ରଖିଲେ ଦେବତାଙ୍କୁ ଭୂଗର୍ଭେ ଲୁଚାଇ ।

---

(୧) ପୂର୍ବ ଆକାଳର ମେଘ ଖଣ୍ଡମନ୍ଥରେ ଉଠାଏ, ମାତ୍ର ବଜ୍ରପାତ ଘଟାଏ ନାହିଁ ।

ଏଣେ ଦୈତ୍ୟ ଜମ୍ବୁଦ୍ୱୀପୁ ଘେନି ରତ୍ନରାଶି
ବାହୁଡ଼ିବା ବେଳେ ପଥେ, ପ୍ରଚଣ୍ଡା ଚିଲିକା
ଧରି ବିଶ୍ୱଧ୍ୱଂସୀ ରୂପ ନାଶିଲା ତାହାକୁ,
ବୁଡ଼ିଲା ଚିଲିକାଗର୍ଭେ ଆଶ୍ରୟ ତରଣୀ,
ଜୀବନ-ତରଣୀ ଯଥା କାଳସିନ୍ଧୁ ଗର୍ଭେ ।
ରହିଲା ଉତ୍କଳ ରତ୍ନ ଉତ୍କଳ-ଭଣ୍ଡାରେ ।
ଘଡ଼ିକେ ବିଜୟାନନ୍ଦ ହୋଇ ପରିଣତ
ଅଶ୍ରୁଧାରା ହାହାକାରେ, ମିଶି ଗଲା ତାହା
ଚିଲିକା ଅନନ୍ତ ନୀରେ ଅନନ୍ତ ନିର୍ଘୋଷେ ।
କେତେ ଦିନ ପରେ ହେଲେ ଉତ୍କଳେ ସମ୍ରାଟ
ଯଯାତିକେଶରୀ — ବୈରୀ-କୁଞ୍ଜର-କେଶରୀ,
ମହାଧର୍ମଶୀଳ ସିଏ, ପୁଣ୍ୟ ସଂସାଧନେ
ପୁଣ୍ୟର ପ୍ରତିଭୂ, ଧୋଇ ଦେଲେ ଯେଉଁ ସ୍ୱୀୟ
ମହିମା-ମୟୂଖ-ସ୍ରୋତେ ଉତ୍କଳ ଲଲାଟୁ
ଅବନତି-ଅନ୍ଧକାରେ, ନବ ରବି ପ୍ରାୟ,
ନୁହନ୍ତି ଖାଲି ସେ ନୃପ ଧର୍ମ-ଉପାସକ,
ସୌନ୍ଦର୍ଯ୍ୟ-ଆପଣେ ସୁଦ୍ଧା ଚତୁର ଗ୍ରାହକ ।
ଯୋଗଜନ୍ମା ସେ ନରେଶ ଲଭି ସ୍ୱପ୍ନାଦେଶ
ଜଗଦ୍ବନ୍ଧୁଙ୍କର, ଭୂମିଗର୍ଭୁଁ ଯଥାସ୍ଥାନୁ
ଉଦ୍ଧାରି ଶ୍ରୀମୂର୍ତ୍ତିଚୟ, ସଂସ୍ଥାପିଲେ ଆଣି
ନିର୍ମାଣି ଏ ଦେବାଳୟ, ଗୁରୁକାରୁଠାଣି ।

ଏ ଜୀବନ୍ତ ମାନଦଣ୍ଡ ସତ୍ୟ, ସୁନ୍ଦରର,
ହେଉଛି ଧ୍ୱନିତ ମୁହୁଃ ସର୍ବାଙ୍ଗେ ଏହାର
ଧର୍ମର ଅଖଣ୍ଡବାଣୀ, ଭାବନଗୂଢ଼ିତ,
ପ୍ରସ୍ତର ଏହାର ଯୋଡ଼ା ଭକ୍ତ ଉପାଦାନେ,
ଯେଉଁ ଜାତିସ୍ୱତନ୍ତ୍ରତା, ଜାତିସ୍ୱ ପ୍ରାଧାନ୍ୟ
ରଖିଛି ସମ୍ପାଦ ଦେହେ ଶିଳ୍ପକଳାବ୍ୟାଜେ,
କରିବ ସେ ଭାବ ଯୁଗେ ପୁଣ୍ୟପ୍ରଭାମୟ
ଭବିଷ୍ୟ ଉତ୍କଳବଂଶ ମଳିନ ଜୀବନେ ।
କହିଲେ ଦ୍ୱିଜନ୍ମୀ ନୃପ ଶୁଣି ଏ ଭାରତୀ—
ଏଭଳି ବିପୁଳକୀର୍ତ୍ତି ପାରନ୍ତି ଯେ ସ୍ଥାପି
ଧର୍ମରାଜ୍ୟେ, ସେ ଅମର, ଜୀବନ୍ମୁକ୍ତ ଭବେ,
ତାହାଙ୍କ ଦର୍ଶନେ ମିଳେ ପୁଣ୍ୟ, ଦୂର ହୁଏ
ମାନବ ସ୍ୱଭାବସିଦ୍ଧ ହୃଦସଂକୀର୍ଣ୍ଣତା,
କାହିଁଛନ୍ତି ସେ ମହାତ୍ମା, ସେ ସାଧୁପୁରୁଷ,
ବନେ ତାଙ୍କ ବାସସ୍ଥାନ ତୀର୍ଥ ଦେବାଳୟୁ,
ଆତ୍ମା ପିପାସିତ ମୋର ତାଙ୍କ ଦର୍ଶନାର୍ଥେ ।
ଭାଷିଲେ ତପସ୍ୱୀ ତହୁଁ, ଅଛନ୍ତି ଯଯାତି
ପଦ୍ମକ୍ଷେତ୍ରେ, ଜନଶ୍ରୁତି କରୁଛି ପ୍ରଚୁର,'
ଆସିବେ ବାହୁଡ଼ି ସେହୁ ନୀଳାଚଳେ ଆଜ,
କରନ୍ତୁ ଅପେକ୍ଷା ଏଥି ଆଜ ଏ ରାତିକ,
ଭେଟାଇବି କାଲି ନେଇ ଉତ୍କଳ-ସମାଟେ ।

ପୁଚ୍ଛିଲେ ବନ୍ଦମ, ଯୋଗି, କାହିଁ ଅବସ୍ଥିତ
ପଦ୍ମକ୍ଷେତ୍ର, କପାଁ ବା ସେ ଉତ୍କଳ ପ୍ରଖ୍ୟାତ ?
ବଖାଣନ୍ତୁ ତା ମାହାତ୍ମ୍ୟ ସଦୟେ ଆପଣ ।
ଉତ୍ତରିଲେ ସମାଗ୍ରହେ ଛିତାଶେ ଯତୀଶ,
ଶ୍ରୀକ୍ଷେତ୍ର ଆଗ୍ନେୟ ଦିଗେ ବାରିଧି ବେଳାରେ
ବିରାଜିତ ପଦ୍ମକ୍ଷେତ୍ର, କୋଣାର୍କ ଆଖ୍ୟାତ,
ମୈତ୍ରେୟ କାନନ ନାମେ ପ୍ରସିଦ୍ଧ ପୁରାଣେ ।
ଦ୍ୱାଦଶ ବରଷ ତହିଁ ସାଧି ଘୋର ତପ
ପିତୃଶାପଗ୍ରସ୍ତ ଶାମ୍ବ, ଭାସ୍କର ଉଦ୍ଦେଶେ,
ଲଭିଥିଲେ ମହାବ୍ୟାଧି କବଳୁ ନିସ୍ତାର । ❋
ମହାପୁଣ୍ୟପୀଠ ମୁକ୍ତ ନଗରମସ୍ତ ତୀର୍ଥ,
ସ୍ୱୟଂ ତୀର୍ଥେଶ୍ୱର ଯାର ପ୍ରକ୍ଷାଳେ ଚରଣ,
ତହିଁ ଜାମ୍ବବତୀସୁତ ତପସ୍ତୁତ ରୂପେ
ସ୍ଥାପି ଅର୍କ ପ୍ରତିମୂର୍ତ୍ତି ରଖିଲେ ଭାରତ,
ସେ ଦିନୁ ବିଦିତ ସ୍ଥଳୀ ଅର୍କକ୍ଷେତ୍ର ନାମେ ।
ଅଦୂରେ ତାହାର ସ୍ଥିତ ତୀର୍ଥ ଚନ୍ଦ୍ରଭାଗା
ଆଲିଙ୍ଗେ ସାଗରେ ଯହିଁ ଚନ୍ଦ୍ରଭାଗା ନଦୀ
ଚନ୍ଦ୍ରକାନ୍ତକାନ୍ତ ଶୁକ୍ଳ ଶୀତଳ ସଲିଳା,
ସ୍ନାନେ ତହିଁ ଛୁଟିଯାଏ ରୋଗ, ପାପ, ତାପ ।

---

❋ ଶାମ୍ବଙ୍କର ଅଭିଶାପ ବୃତ୍ତାନ୍ତ ଶାମ୍ବପୁରାଣ ଏବଂ ନାରଦ ଋଷି ସୂତ୍ରନାମକ ଗ୍ରନ୍ଥରେ ଅନୁସନ୍ଧେୟ ।

ଏଣେ ଶ୍ରୀରମୁଖୁ ଶୁଣି ଯଯାତିକେଶରୀ
ଶଙ୍କାର ଆଗମ ବାର୍ତ୍ତା, ଆରୋହି ଦ୍ୱିରଦେ,
ଆଦେଶିଲେ ମହାମାତ୍ରେ * ବାହନ ତ୍ୱରନେ
ଶ୍ରୀକ୍ଷେତ୍ରାଭିମୁଖେ, ଆଜ୍ଞା ପାଳିଲ କଶ୍ୟପ,
ଯଥାକାଳେ ଯଥାସ୍ଥାନେ ମିଳି ଉତ୍କଳେଶ,
(ଉତ୍କଳକଣ୍ଠଭୂଷା ଊର୍ଦ୍ଧ୍ୱସ୍ଥଳଶ୍ରୀର)
ପ୍ରବେଶିଲେ ରାଜହର୍ମ୍ୟ, ଏକାଳେ ତାପ
ଭେଟାଇଲେ ବନ୍ଧମାର୍ଗେ ତାହାଙ୍କ ସହିତେ,
ଭେଟାଏ ଯେସନ କର୍ମ ଅପବର୍ଗ ସହ
ଜ୍ଞାନେ, କିମ୍ବା ସତ୍ୟ ଯଥା ଭେଟାଏ ଧର୍ମକୁ
ଜମ୍ବୁ ସହ ନେଇ, ଅବା ସନ୍ତ୍ରଙ୍ଗ ଯେରୂପେ
ଭେଟାଏ ଆତ୍ମୋନ୍ନତିକୁ ମନୁଷ୍ୟତା ସଙ୍ଗେ !
ମିଷ୍ଟ ଶିଷ୍ଟ ସମ୍ଭାଷଣେ ବେନି ନରବର
ଗ୍ରହି ପରସ୍ପର ପାଶୁଁ ସ୍ୱାଗତ ସନ୍ଦେଶ,
ଉଭେ ହେଲେ ସଖ୍ୟଭାବେ ଏକ ସିଂହାସନେ,
ବସିଲେ ସନ୍ନ୍ୟାସୀ ଅନ୍ତେ ଯୋଗ୍ୟ ଆସନରେ ।
ଭାଷିଲେ ଅବନ୍ତୀପତି ଉତ୍କଳ-ମଣ୍ଡନେ—
ମଣିଲ ବରେଣ୍ୟ, ଧନ୍ୟ ଜନକୁ ମୁଁ ଆଜି,
ନରଦେବ, ଲଭି ତବ ପୁଣ୍ୟ ଦରଶନ,
ଦେବରାଜ୍ୟ ଏ ଉତ୍କଳ, ଚକ୍ରବର୍ତ୍ତୀ ଏଥି

---

* ହାତୀ ମାହୁନ୍ତ ।

ଚନ୍ଦ୍ରଧର, ତୁମ୍ଭେ ତାଙ୍କ ପ୍ରତିନିଧି ସିନା,
ମଣେ ମୁଁ ଦର୍ଶନେ ତବ ଶ୍ରୀମୂର୍ତ୍ତି ଦର୍ଶନ ।
ଉତ୍ତରିଲେ ମହାସତ୍ତ୍ୱ ମହାତ୍ମା ଯଯାତି —
ଗୁଞ୍ଜେ ତୁଳେ ରତ୍ନ ଖଣି ମାଣିକ୍ୟ ସହିତ;
ମାତ୍ର କି ଗୁଞ୍ଜାର ମୂଲ୍ୟ ତା ମୂଲ୍ୟ ସମାନ ?
ନୁହେଁ ମୁହିଁ ପ୍ରତିନିଧି ମହାପ୍ରଭୁଙ୍କର ,
ଯେ ଅଦ୍ୱୈତ, ଅଣାକାର, ଅତୁଲ୍ୟ, ଅନାଦି,
କିଏ ତାର ପ୍ରତିନିଧି ? ସେ ଅପ୍ରତିନିଧି,
କେଉଁ ଜନ୍ମ କେଉଁ ତପ ଫଳରେ କେଜାଣି
ଲଭିଛି ମୁଁ ମାତ୍ର ତାଙ୍କ ସେବକ ସୌଭାଗ୍ୟ,
ନରୁ ମୁଁ ଅଯୋଗ୍ୟ ତାଙ୍କ ନାମ ଉଚ୍ଚାରଣେ ।
କହିଲେ ବିକ୍ରମ, ଆହା, କି ଆତ୍ମ ଧିକ୍କାର,
ଅନ୍ତର ସଙ୍ଗୋଳ ଆତ୍ମପ୍ରଶ୍ନର କେବଳ,
ମାତ୍ର ତାହା ନୁହେ ଧର୍ମ ଜ୍ଞାନୀ ଭକ୍ତଙ୍କର,
ଯାର ଯେତେ ଭକ୍ତି, ତାର ଦୈନ୍ୟ ସୁଦ୍ଧା ତେତେ ;
ଯେ ଯେତେ ପ୍ରଧାନ, ମଣେ ସେ ନିଜକୁ ସିନା
ତେତିକ ଇତର, ଏହା ମହାଜନଧାରା,
ମଣୁଥିଲେ ଜନ୍ମାବଳ ଆପଣାକୁ ବଡ଼,
ବହନ୍ତା କି ପୃଷ୍ଠେ କ୍ଷୁଦ୍ର ମାନବେ କଦାପି ?
ଏହିରୂପେ ବହୁବିଧ ବାକ୍ୟାଳାପ ପରେ
ବିଦେଇଲେ ବିକ୍ରମାର୍କ ଉତ୍କଳ-ସମ୍ରାଟେ —

ଆସ ନାହିଁ ନୃପ, ମୁହିଁ ସୀମାନ୍ତୁଛି ଆଶେ
ତବ ରାଜ୍ୟ ; ନାହିଁ ମୋର ଏ ରାଜ୍ୟ ଲାଳସା,
ଜାଣୁ ଜାଣୁ ଅପହରି ଦେବସ୍ୱ କେ କହିଁ
ବରିବ ନରକ ମୃତ୍ୟୁ ଉଭେ ଯୁଗପତ,
କିଏ ଅବା କ୍ଷମ, କୁହେ କିଏ ବା ସାହସୀ
ଉତ୍ପାଟନେ ସଂଜାଗ୍ରତ କେଶରକେଶର ?
ଯାପନ୍ତୁ ଏ ମହାସ୍ୱାର୍ଥେ ଭବିଷ୍ୟ ଜୀବନ,
ମାଜ କି କରିବ, ପଛୁ ଝିଙ୍କୁଛୁ ସଂସାର,
ଯାଉଛୁ ମୁଁ ଅନବୃତ୍ତ ଆକାଂକ୍ଷା ଘେନିଣ,
ଆବର ଯାଉଛୁ ଘେନ ମହାସ୍ମୃତି, ପୁଣି
ମହାଶିକ୍ଷା, ତୁଳନାରେ ସେ ବେନି ରହିବ
କୋଟିଏ ସାମାଜ୍ୟ ସିନା ଅକିଞ୍ଚିତକର ।
ରହିବ ଅଙ୍କିତ ଚିର ସେ ପବିତ୍ର ସ୍ମୃତି
ହୃଦେ ମୋର, ଧାତୁ ପିଣ୍ଡେ ଖୋଦିତଲିପି ପ୍ରାୟ,
ସେ ସ୍ମୃତି ଉଜ୍ଜ୍ୱଳ ଦ୍ୟୁତି ନ ହେବ ମଳିନ
କାଳର କଙ୍କାଳକାନ୍ତ ଅଙ୍ଗ ସଂଘର୍ଷଣେ,
ତାପ-ତପ୍ତ ବ୍ୟଥାକ୍ଲିଷ୍ଟ ଜୀବନ-ନିଦାଘେ
ଢ଼ାଳିବ ସେ ଶିକ୍ଷା——ସେହି ଅବସ୍ମୃତ ଶିକ୍ଷା,
ପ୍ରାଣେ ମୋର ମୃଦୁ ମନ୍ଦ ମଳୟ ଅନିଳ ।
ଘେନୁଛୁ ମେଲାଣି ଏବେ, ରଖିଥିବ ମନେ,
ଏତିକି ମାଗୁଣି ଶେଷେ ନୃପ, ତବ ଛାତି,

ଚଳାଇବ ଏ ଭକ୍ତଙ୍କେ ତବ ଅଙ୍କ ସ୍ନେହ
ମୋରଶୂକ, ପାଳିବ ଏଥୁ ତ୍ରୁ ଅନୁରୋଧ ।
ଆଲିଙ୍ଗି ସାଦରେ ତାଙ୍କୁ କହିଲେ ଯଥାତ—
"ଅନନ୍ତବୃତ୍ତ ଆକାଂକ୍ଷା" ଯା ବୋଇଲେ ଆପଣ,
ତାହା ସତ୍ୟ, ମହାସତ୍ୟ, ପ୍ରକୃତ ଐଶ୍ୱର୍ଯ୍ୟ,
ପ୍ରୀତର ମାଧୁର୍ଯ୍ୟ ପୁଣି ଧର୍ମର ଗାମ୍ଭୀର୍ଯ୍ୟ,
ଏ ଶ୍ରୀକ୍ଷେତ୍ରେ ସ୍ତରେ ସ୍ତରେ ରହିଛି ସଞ୍ଚିତ,
ଯହିଁ ଦେଖ, ତହିଁ ଶୋଭାଦେବୀ ଶମ୍ବରଣୀ,
(ହାସ୍ୟ-ଆସ୍ୟା ଲାସ୍ୟବେଶା ଉତ୍‌ଫୁଲ୍ଲନୟନା)
ଅବଗାହି ଅରେ କେଉଁ ସୌନ୍ଦର୍ଯ୍ୟସେବକ
ଏ ଶୋଭା-ପ୍ରୟାଗ-ତୀର୍ଥେ ଲଭିବ ତର୍ପଣ ?
ଶ୍ରୀକ୍ଷେତ୍ର, ଭାବୁକ ନେତ୍ରେ ଭାବ-ହିମାଳୟ,
କବିନେତ୍ରେ ସାରସ୍ୱତ ନିକୁଞ୍ଜନିଳୟ,
ଯୋଗି ନେତ୍ରେ ଯୋଗବେଦୀ, ପ୍ରେମପ୍ରସ୍ରବଣ
ପ୍ରେମିକ ନୟନେ, ଉପସିନ୍ଧୁ ରସିକର,
ସଂସାରୀ ଦୃଷ୍ଟିରେ ମହା ଐଶ୍ୱର୍ଯ୍ୟଭଣ୍ଡାର,
ଦର୍ଶକ ପକ୍ଷରେ ଶୋଭା ସ୍ୱପନ-ନନ୍ଦନ,
ଶରଣାର୍ଥ ସ୍ୱର୍ଗ ପୁଣି ବୈରାଗି ଚକ୍ଷୁରେ ।
କି ଅଜ୍ଞାତ ବୈଦ୍ୟୁତିକ ଶକ୍ତି ପ୍ରଭାବରେ
ହରେ ସ୍ପର୍ଶମାତ୍ରେ ମନ ନେତ୍ର ଦର୍ଶକର ।
ଏ ବୈକୁଣ୍ଠଧାମେ ଚିରନିବାସ ଆକାଂକ୍ଷା

ବ୍ୟର୍ଥ ସ୍ୱପ୍ନ ସିନା ତୁମ୍ଭ ମୋ ଭଳି ଲୋକର,
ସେ ଭାଗ୍ୟ—ସେ ସ୍ୱାଧୀନତା ଲେଖିବାକୁ ବନ୍ଧ
ପରାଙ୍ମୁଖ ରଜା—ଥିଲେ, ବୁଡ଼ି ଆଜୀବନ
ସଂସାରଗହ୍ୱରେ ଆହା, ଯାପିବ ସମସ୍ତ
ତୁଚ୍ଛ ପ୍ରାଧାନ୍ୟର ତୀବ୍ର ଯନ୍ତ୍ରଣା ମଧ୍ୟରେ,
ଏହୁ ତ ରଜଭାଗ୍ୟର ଜ୍ୱାଳାମୟ ସୁଖ ।
ଗତ ପକ୍ଷେ ଦୂର ସିନା ତବ ରଜଧାନୀ,
ମାତ୍ର ନୁହେ ମନ ପକ୍ଷେ ଦୂର, ଦୃଷ୍ଟି ସ୍ଥାନ
ମନର ନିକଟ ଅତି—ବ୍ୟବଧାନଶୂନ ।
ପାଳିବ ଅବଶ୍ୟ ମୁହିଁ ତବ ଅନୁରୋଧ,
ମାତ୍ର ତାର ପ୍ରତିଦାନେ ରଖିବେ ଆପଣ
ମୋର ଏ ପ୍ରତ୍ୟନୁରୋଧ ବହୁ ଅନୁଗ୍ରହ,
ଆଜିକ ନଅରେ ମୋର ଗ୍ରହଣ ଆତିଥ୍ୟ,
ବାହୁଡ଼ିବେ କାଲି ପ୍ରାତୁ ସ୍ୱଦେଶାଭିମୁଖେ ।
ଏ ପ୍ରସ୍ତାବେ ବନମାର୍କ ପ୍ରକାଶି ସମ୍ମତ
ପ୍ରଦର୍ଶିଲେ କୃତଜ୍ଞତା ଉତ୍କଳେଶ ପାଶେ,
ଏକାଳେ ଆଗତ ସନ୍ଧ୍ୟା ଦେଖି ବେନ ନୃପ
ବିଜେ ହେଲେ କକ୍ଷାନ୍ତରେ ସାନ୍ଧ୍ୟକୃତ୍ୟ ହେତୁ ।

ପ୍ରଭାତେ ବନମାଦିତ୍ୟ ଧର୍ମାନନ୍ଦ ସହ
ଆରୋହି ମାତଙ୍ଗୋପରେ ବାହୁଡ଼ିଲେ ଦେଶେ,

ଖଣ୍ଡେ ଦୂର ସହଯାତ୍ରୀ ହୋଇ ଉତ୍କଳେଶ
ପ୍ରଦର୍ଶିଲେ ଶିଷ୍ଟାଚାର, ବଦାନ୍ୟ ସମ୍ଭାଷ-
ଅନ୍ତେ ଯେନ ପରସ୍ପର ସ୍ମୃତ ବେନି ନୃପେ
ଯାତ୍ରା କଲେ ପରସ୍ପର ପ୍ରତୀପାଭିମୁଖେ ।
ଚାଲିଲା ଦ୍ୱିରଦବର ସମଭୂମି ପଥେ,
ଭେଟିଲା ଦ୍ୱିଦିନ ପରେ ଚନ୍ଦ୍ରୋତ୍ପଳା ନଦୀ ।
କାଳ ପ୍ରତି ଅଟ୍ଟହାସ ପ୍ରକାଶି ତଟିନୀ
କଳ କଳ ଛଳେ, ଚାଲେ ବେନିକୂଳେ ତାର
ଅମର ଅମୃତୌଷଧି ଅନନ୍ତ ଆସବ । *
ଭାଷିଲେ ଅବନ୍ତୀପତି,—ନଦୀ ନୁହେ ଏ ତ,
ନଦୀରୂପେ ପ୍ରବାହିତା ଭାଗ୍ୟ-ଲକ୍ଷ୍ମୀ-କୃପା,
କିମ୍ବା ଏହା ଦୁଗ୍ଧନାଳୀ ଚିରଦୁଗ୍ଧବତୀ
କାମଧେନୁ-ଉତ୍କଳର, ଏହା ବିନୁ ସିନା
ଉତ୍କଳର "ରତ୍ନପ୍ରସୂ" ଅଭିଧା ଦୁର୍ଲଭ,
ବିଶ୍ୱପତିଙ୍କର ଏହା ଏ ଉତ୍କଳ ପ୍ରତି
ଅତିରିକ୍ତ ମହାଦାନ— ଅସୀମ ଶୁଭଙ୍କର !
ଏଣେ ବାମଭାଗେ ଦିଶେ ଏ କେଉଁ ପର୍ବତ
ବକ୍ରପୁଚ୍ଛ ଭୀମ, ସୁପ୍ତ ଅଜଗର ପ୍ରାୟ ?
ଉତ୍ତରିଲେ ଯୋଗିବର—ନୃପ, ଏ ଉତ୍କଳେ
ଅବସ୍ଥିତ ପଞ୍ଚ ତୀର୍ଥେ ପଞ୍ଚ ଉପାସକେ,

---

* ସାଙ୍ଗ ।

ଯାଜପୁର ଶାକ୍ତତୀର୍ଥ, ପୁରୀ ବୈଷ୍ଣବର,
କୋଣାର୍କ ଭୁବନେଶ୍ୱର ସୌର ଶୈବ ତୀର୍ଥ,
ଗାଣପତ୍ୟ ତୀର୍ଥ ନାମେ ଖ୍ୟାତ ଏ ଶିଖରୀ,
ସିଦ୍ଧିଦାତା ବିନାୟକ ଅବସ୍ଥାନ ହେତୁ
ଲୋକେ ଏ ଭୂଧର ହୁଏ ସେ ନାମେ ଆହୂତ । *
ସ୍ଥିତ ତାର ପୂର୍ବ ପ୍ରାନ୍ତେ ଚନ୍ଦନ ବନ୍ଦିତ
ଅଜିତ ଅଚଳ, ସେହି ଏକା ସାର୍ଥକଛି
ମହାମହୀୟସୀ ଏହି ଉତ୍କଳ ଭୂମିର
"ମଳୟଜସୁଶୀତଳା"-ଗୌରବ ଉପାଧି ।
ଏହିରୂପେ ନାନା ଦୃଶ୍ୟ ଦେଖି ଗତପଥେ
ମିଳିଲେ ସକଳେ ଯାଇ କେତେ ଦିନାନ୍ତରେ
ମେଘଶ୍ୟାମ ମେଘାସନ ସାନୁମାନ ପଦେ,
ଭାଷିଲେ ବନ୍ଦନ ତହୁଁ ବିନୟେ ତାପସେ—
ଦେବ, ତବ ଉପକାର-ଋଣ, ଅଶୋଧିତ
ମୋହ ପକ୍ଷେ, ଲଭିଲି ମୁଁ ତୁମ୍ଭର ପ୍ରସାଦେ
ନବ ଚକ୍ଷୁ, ନବ ଭାବେ ଚାହିଁଲି ସଂସାରେ,
ତୁମ୍ଭର କରୁଣା ଏକା ଫୁଟାଇଲା ସିନା
ଏ ନୀରସ ଶୁଷ୍କ ପ୍ରାଣେ ଆନନ୍ଦ-ମନ୍ଦାର,
ଆଣିଲା ସ୍ପନ୍ଦନ ମୋର ଅବସନ୍ନ ପ୍ରାଣେ ।
ବରିଲି ମୁଁ ଗୁରୁପଦେ ଆପଣଙ୍କୁ ଆଜ,

* ପ୍ରଚଳିତ ନାମ ମହାବିନାୟକ ପର୍ବତ । ଏହା ଦର୍ପଣ ତାଲୁକାରେ ଅବସ୍ଥିତ ।

ଶିଷ୍ୟ ଅଧିକାର ପ୍ରଶ୍ନେ, ଅର୍ପି ଅଞ୍ଜଳେ
ସେ ପାବନପଦତଳେ କରନ୍ତୁ କୃତାର୍ଥ,
ମାଗୁଛୁ ମେଲାଣି ଏବେ, ଘେନାହେଉ ମୋର
କୃତଜ୍ଞତା, ପ୍ରୀତିପୂଜା, ପ୍ରଣତି-ଆରତି ।
ତୁଷ୍ଟିଲଭି ଏ ବଚନେ ବୃଦ୍ଧ ବ୍ରହ୍ମର୍ଷି,
ନୃପଶିରେ କର ନ୍ୟସ୍ତ କରି ଆଶୀର୍ବାଦ,
ଗମିଲେ ଆଶ୍ରମ ଦିଗେ ମୃଦୁ ପଦକ୍ଷେପେ,
ପ୍ରବେଶିଲେ ବନମାର୍କ ସ୍ୱକୀୟ ଶିବିରେ ।



## ଏକାଦଶ ସର୍ଗ ।



କରଗତ କରି ଆର୍ଯ୍ୟମଣ୍ଡଳ ସମସ୍ତ
ଶମିଲା ଜଗୀଷାନଳ, ଭଜିଲା ସାଫଲ୍ୟ
ଆଶା, ତନ୍ତୁ ଚତୁରଙ୍ଗବାହିନୀ ସହିତେ
ମଣ୍ଡିଲେ ଅବନ୍ତୀ ମହୀ ଅବନ୍ତୀମଣ୍ଡନ,
ମଣ୍ଡନ୍ତି ଯେସନ ଆସି ପୂର୍ଣ୍ଣ ଶଶଧର
ତାରକାମଣ୍ଡଳୀ ସହ ପର୍ବତମିରଣୀ, *
ଅଥବା ବସନ୍ତ ଯଥା ଋତୁକୁଳନାହା
ଭମନ୍ତେ ପ୍ରକୃତ, ଯେଜ ଗନ୍ଧଣେ କୁସୁମ,
କୋକିଳ, ମଳୟାନିଳ—ସଦସ୍ୟନିକରେ ।
ଲଭିଲା ବିଜୟୋତ୍ସବ, ହସିଲା ଜଗତ,
ଖେଳିଲା ଆନନ୍ଦଢେଉ ଚୌଦିଗେ ଚହଟି,
ବିଜୟିନୀ ଉତ୍କଳିନୀ ସ୍ୱଭାବେ ସୁଦଶା,
ଦୁନେ ବିଭୂଷିତ ହୋଇ ବିଜୟାଭରଣେ
ଧରିଲା ଅପୂର୍ବ ଠାଣି ବର୍ଣ୍ଣନା ଅତୀତ ।
ଏକେ ତ କୁସୁମକୁଞ୍ଜ ଦୃଶ୍ୟାନର୍ଦ୍ଧର,

---

* ପୂର୍ଣ୍ଣିମା ରାତ୍ରି ।

ଆଲିଙ୍ଗିଲେ ତାକୁ ଆସି ବାସନ୍ତୀ ଚନ୍ଦ୍ରିକା
ସୁବର୍ଣ୍ଣ-ଭ୍ରମର ସହ, କି ଅନନ୍ତ ଶୋଭା—
ସୋତ ହୁଏ ପ୍ରବାହିତ, କଳିକ କି ଭଲି
ସେ ଶୋଭା ଗାମ୍ଭୀର୍ଯ୍ୟ ଭାଷା, ହେଉ ପଛେ ଯେତେ
ପ୍ରାଣବନ୍ତ, ଯେ ସୌନ୍ଦର୍ଯ୍ୟ ଅନନ୍ତ ପ୍ରବାହେ
ନ ପାରେ ସନ୍ତରି ଧନୀ ପ୍ରବଳା କଳ୍ପନା,
(ଚିର ସନ୍ତରଣଦକ୍ଷା ଭାବ-ପାରାବାରେ)
ଭାଷା ବିନା ଅବହେଳେ ବୁଡ଼ମରେ ତହିଁ ।
ଉପମା ବା କି ଶଟିବ ତାକୁ, ଉପମା ତ
ଭାଷାର ଅଧୀନ, ଭଜେ ତା ସହ ବିଳମ୍ବ ।
ଚନ୍ଦ୍ରୋପରି ଚନ୍ଦ୍ରୋଦୟ ହୁଅନ୍ତା ଯଦ୍ୟପି
ତେବେ ବା ନଗରୀ ସହ ହୁଅନ୍ତା ତୁଳିତ ।
ସୁଖ-ସୁରଧୂନୀ-ସୋତେ ଢାଳିଦେଲା ଦେହ
ଉତ୍ସବ-ଯମୁନା, ସେହି ପୁଣ୍ୟପ୍ରୟାଗରେ
ସ୍ନାନ କରି ନାଗରିକେ ଶୀତଳିଲେ ଆତ୍ମା ।
ମାତ୍ର ଏ ଉତ୍ସବେ ଲିପ୍ତ ନୋହି ନୃପମଣି
ରତ ପୁରସ୍କାର ଦାନେ ସେନାନୀମଣ୍ଡଳେ,
ଗୁଣ ତୁଳନାରେ ଲଭି ଶତେ ବହୁଗୁଣ
ପୁରସ୍କାର, ମଣିଲେ ତା ଭାଗ୍ୟ ଆଶାତୀତ ।
ବିପକ୍ଷ ଶିବିରେ ଯୁଝି ଯେଉଁ ଶୂରଗଣ
ଆସିଥିଲେ ବନ୍ଦୀ ହୋଇ, ଅର୍ପି ଅବ୍ୟାହତ

ତାଙ୍କୁ ପୁରସ୍କାର ଦାନେ, ଦେଲେକ ମେଲାଣି,
ଅହୋ କି ଗମ୍ଭୀର ଦୟା, ସୁସ୍ନିଗ୍ଧ ଶୀତଳ,
ମିତ୍ରପ୍ରତି ଦୟାର୍ଦ୍ରତା, ଧର୍ମ ସ୍ୱାଭାବିକ,
ମାତ୍ର ଯାର ଦୟା ବର୍ଷେ ଅରାତି ମସ୍ତକେ
ଦୈବୀବର ପ୍ରାପ୍ୟ, ସେହୁ ଦେବଙ୍କର ଦେବ ।
× × × ×
ସଖୀନ୍ତ * ସହିତେ ବନେ ରୂପସୀ ପ୍ରମୀଳା,
ପାଟେଶ୍ୱରୀ ଇନ୍ଦୁମତୀ ପ୍ରିୟ ସହଚରୀ
ଭ୍ରମୁଥିଲେ ଶୁଦ୍ଧାନ୍ତର ବହିରୁପବନେ ।
ବିସ୍ତାରି ଅଛନ୍ତି ତହିଁ ଅନନ୍ତ ସୁହାସ
ବାଳତରୁ ଲତାକୁଳ ପ୍ରସ୍ଫୁଟ-ପ୍ରସୂନେ,
ପଡ଼ୁଛି ସେ ହାସୁ ଝରି କି ଅମୃତମଖା
ମଧୁରିମା, କି ସ୍ୱର୍ଗୀୟ ପ୍ରୀତି ପୂତ ଝରି,
ହେରି ତାହା ହେଉଅଛି ନୟନ ଶୀତଳ ।
ଆନନ୍ଦେ ବାମାଏ ଫେଇ ଅଙ୍ଗୁ ଅଳଙ୍କାର
ମଣ୍ଡିଲେ ବନସୁନ୍ଦରୀ କୁସୁମିତ ବେଶ,
ଫିଟାଇ କେ କଣ୍ଠୁ ହାର ଲମ୍ବାଇଲା ନେଇ
ମଞ୍ଜୁହାସୀ କୁଞ୍ଜଲତା ହରଷିତ ବକ୍ଷେ,
ଓହ୍ଲାଇ କେ ବାଜୁବନ୍ଧ ବାନ୍ଧିଲା ହରଷେ
ମାଳତୀ ବାହୁରେ, କେହୁ ପାଇଟି ସହର

---

* ସଖୀ ସମୂହ

ଜରମୁହାଁ ପୀତ ପାଟ, ଦିଲାଇ ଖୋସାପେ
ସଜାଇଲ କନ୍ୟାବେଶେ, ଖଞ୍ଜନ୍ତେ ପାଦୁକା
ପଦେ, ଫୁଟିଗଲା କରେ କଣ୍ଟା, ତହୁଁ ବାଳା
ପ୍ରକାଶିଣ ସ୍ନେହମିଶା କୃତ୍ରିମ ଭସଗ
ଭାଷିଲା, ଉଦ୍ଦଣ୍ଡୀ ତୁ ଲୋ କେତେ ଅଲଜୁକା,
ଚମୁଟନ୍ତୁ ମୋତେ ? ଛି ଛି ବଟୋଳୀ ବାମ୍ଣୀ !
ଶୁଣିକହେ ଆନ ସଖୀ, କି ଦୋଷ ତାହାର,
ସ୍ମରିବେ ସେ ଅପାର୍ଥିବ ଭୂଷଣ-ଭୂଷଣା,
ତାହାର ସେ ଗଣ୍ଠିରତ୍ନ-ତର ପ୍ରାଣପ୍ରିୟ,
ହର ତୁହ କଲୁ ତାକୁ ସ୍ୱରକାନ୍ତ ବୃଥା
ଲଦ ଦେଇ ଗୁରୁ ଭୂଷା, ପାର୍ଥିବ, ଅସାର,
ତେଣୁ ସେ କୁପିତା, ଦେଲା ଉପଯୁକ୍ତ ଶାସ୍ତି ।
ଏରୂପେ କୌତୁକେ ଲିପ୍ତ ଅଛନ୍ତି ବାଳାଏ
ଏକାଳେ ପ୍ରବିଷ୍ଟ ତହୁଁ ରୂପରାଜ ନାମେ
ସୁରେଶଧାକୁମର, ଦେଖି ସମ୍ଭ୍ରମେ ପ୍ରମୀଳା
ପ୍ରଣମି ତାହାଙ୍କୁ, ଧୀରେ ଭାଷିଲା ଏସନ—
କୁଶଳ ତ ବିପ୍ରମଣି ? ତୁମ୍ଭେ ଭାଗ୍ୟଧର,
ନୃପତି ଗହ୍ୱରେ ଭମି ବନ୍ଧୁ ରମ୍ୟ ସ୍ଥାନେ
ଆସିଲ କାହୁଣ୍ଡ ସାଧି ଚାରୁପ୍ରସନ୍ନତା ।
ଉତ୍ତରିଲେ ଦ୍ୱିଜ—ସତ୍ୟ ତାହା, ଦେଖି ବନ୍ଧୁ
ଜନପଦ, ବନ, ନଙ୍ଗ, ଚୂଡ଼ାଳ ଶିଖରୀ,

ସେବି ନାନାଶାର୍ଥ, ଲଭୁଥିଲି ନିତ୍ୟ ସୁଖ,
ମାତ୍ର ନୃପତିଙ୍କ ଦୁଃଖ ସେ ସୁଖେ ମୋହର
ଦେଉଥିଲା ଢାଳି ସଦା ବିଷାଦ-କାଳିମା ।
ପୁଚ୍ଛିଲା ପ୍ରମୀଳା, ସ୍ଫୀତ-ଉଦ୍‌ବେଗ ବହ୍ନିଲେ—
ଅର୍ଦ୍ଧ ଭାରତର ଯେହୁ ରାଜରାଜେଶ୍ବର,
ସମସ୍ତ ଆର୍ଯ୍ୟାବର୍ତ୍ତ ଯା ଅଙ୍ଗୁଳି ସଙ୍କେତେ
ଚାଳିତ ପାଳିତ, ଭଲା କି ଦୁଃଖ ତାଙ୍କର ?
ଉତ୍ତରିଲେ ଭୂପରାଜ—କି ଦୁଃଖ ତାଙ୍କର ?
ଭୁଲିଥିଲେ କ୍ଷୁଧା ତୃଷା ଏହି କେତେ ମାସ,
ମଣୁଛ କି ଜନମାର୍ଗେ ମର୍ତ୍ତ୍ୟର ମାନବ,
ଭ୍ରାନ୍ତ ସେ ଧାରଣା ତବ, ମହାଦେବତା ସେ
କେଉଁ ଗୁପ୍ତ ନିଧିବର, ମର୍ତ୍ତ୍ୟେ ନା ବିହାର
ପ୍ରୀତିର ପାବନ ମୂର୍ତ୍ତି, ହୃଦୟ ତାଙ୍କର
କରୁଣାର ଶୁଭ୍ର ସ୍ବର୍ଗ, ସ୍ନେହ ସିଂହାସନ ।
କି ନିଷ୍କାମ ଧର୍ମ, କିବା ଆତ୍ମତ୍ୟାଗବ୍ରତ,
କି ନିଃସ୍ବାର୍ଥ, କି ଜୀବନ୍ତ ପରହିତୈଷଣା,
ଦିନସାର ନାହିଁ ତର ଶ୍ରେଷଣ ସମରେ,
ସନ୍ଧ୍ୟା ହେଲେ ଧରି ହସ୍ତେ ଜ୍ବଳନ୍ତ ଦୁହୁଣ୍ଡି
(ଶତ ପରଶୁର ସହେ) ବନେ ନରମଣି
ଶତ୍ରୁପକ୍ଷ ରଣାହତ ସୈନିକ ଶିବିରେ
ଅମୃତ ପ୍ରଲେପ ଲେପି ଅସ୍ତ୍ରଲେଖାପରେ

କରନ୍ତି କାହାକୁ ସୁସ୍ଥ ଧୋଇ ସ୍ୱହସ୍ତରେ
କାହାକ୍ଷତ ସ୍ଥଳ, ଚିର ଉତ୍ତରୀୟ ବାସ
ଦେଉଥାନ୍ତି ପଟି ବାନ୍ଧି ତହିଁ, କାହାର ବା
ଶୁଷ୍କ ଅଧର ପ୍ରାନ୍ତେ ଧରି ପଥ୍ୟପାନ
କ୍ଲାନ୍ତ ସସ୍ନେହେ ତାଙ୍କୁ, ଦେଖି ଏହି ଦୃଶ୍ୟ,
ଏହି ବାଷ୍ପମୟ ମହାଦୃଶ୍ୟ କରୁଣାର,
ଉଠୁଥାଏ ଶତ୍ରୁ ପକ୍ଷୁ ଧନ୍ୟ ଧନ୍ୟ ରବ ।
ଆହତ ଶୁଶ୍ରୂଷା ପରେ ନ ଭଜି ବିଶ୍ରାମ,
ସାହିତ୍ୟ ସନ୍ଦର୍ଭେ ପୁଣି ହୁଅନ୍ତି ନିରତ,
ସ୍ୱଭାବେ ସାହିତ୍ୟରଙ୍କ ଆମ୍ଭ ନୃପବର,
ସାହିତ୍ୟକ ପ୍ରତିଭାର ତରୁଣ ତପନ,
କାବ୍ୟ-ସହକାର କୁଞ୍ଜେ କଳନାଦ ପିକ,
ପଢ଼ୁଁ ପଢ଼ୁଁ କାବ୍ୟ, ଯାଏ ବିଭାବରୀ ପାହି,
କାହିଁ ଅବା ଅବସର ଯୋଗଣେ ଶୟନେ ।
ବିଳାସ-କୋମଳ ଅଙ୍କେ ସଦା ଯେ ପାଳିତ,
ନୁହେ କି ତାହାଙ୍କ ପକ୍ଷେ କଷ୍ଟକର ଏହା ?
ଭଣିଲା ପ୍ରମୀଳା—ଦେବ ନ ହେଲେ ସେଭଳି
ହୃଦୟାଳୁ, ଶୋଭନ୍ତା ବା କାହୁଁ ଶିରୋପରେ
ମଘବା-ମୁକୁଟ ଅର୍କ ଭାରତ-ସ୍ୱର୍ଗର ।
କହିଲ ତ ନୃପତିଙ୍କ କଥା, ଶୁଣ ଏବେ
ରାଣୀଙ୍କ ବେଭାର, ଗୁଣେ ଦୁହେଁ ଦୁହିଁଙ୍କୁହିଁ

ପଞ୍ଚାନ୍ତର, ଯୋଗ୍ୟ ମଣି ଏ ଆଦିତ୍ୟଙ୍କରେ
ଛନ୍ଦିଲ୍ ତା କରେ ବନ୍ଧି ଏକମଲ୍ଲୀଙ୍କ ।
ନାହିଁ ଅଭିମାନ, କିମ୍ବା ଆଳସ୍ୟ, ବିଳାସ,
ବନ୍ଧୁ ପରସ୍ପର ସଙ୍ଗେ ସଦା କର୍ମରତା,
ସଦା ହାସ୍ୟମୟୀ, ସୁଖେ ଦୁଃଖେ କିବା ରୋଗେ,
କାନ୍ଦିଲେ କଦାପି, ସେହି କାନ୍ଦଣା ମଧ୍ୟରେ
ଉଠୁଥାଏ ଫୁଟି ହାସ, ଫୁଟି ଦିଶେ ଯଥା
କୁହେଳିକା-ମ୍ଳାନ ଲତା କୋଳରେ ସୁମନ ।
ମହାସହ୍ୟଶୀଳା, ତେଣୁ ନ କାନ୍ଦନ୍ତି ସଦା,
ଯଦ୍ୟପି କାନ୍ଦନ୍ତି କେବେ, ତେବେ ପରଦୁଃଖେ ।
କି ବାତ୍ସଲ୍ୟ, କି ମମତା, କି ଦୀନତା, ଆହା,
ସ୍ନେହ, ପ୍ରୀତି, ସରଳତା ଏ ତ୍ରିବେଣୀ ଅବା
ବହୁଅଛି ଏକାଧାରେ, ଯୋଗଣ ସମସ୍ତେ
ଥରେ ମାତ୍ର ନେଇଛନ୍ତି ମୁଖକୁ ଆହାର,
ଏକାଳେ ଶୁଣିଲେ ଯଦି ଦୀନ ଆତୁରର
କରୁଣ ପ୍ରାର୍ଥନା ସ୍ୱର, ଉଠିଲେ ତକ୍ଷଣେ,
ସରଳ ଯୋଗଣ, ଧାଇଁ ଯାଇ କଲେ ତାର
ଉଚିତ ସତ୍କାର । ଯଦି ଶୁଣିଲେ ପୀଡ଼ିତ
କୁଅର ମଧ୍ୟରେ କେହି, ଦାସୀ ପଛେ ହେଉ
ବଳେ ବଳେ ପାଖେ ବସି କଲେ ତାର ସେବା,
ନବାରିବ ଯେବେ, ତେବେ ମିଳିବ ଉତ୍ତର—

" ମାତୃଶକ୍ତିରୂପେ ଧାତା ସୃଜିଲେ ରମଣୀ,
କି ଅଛି ତାହାର ଧର୍ମ ପାଳନ ବ୍ୟତୀତ ?"
ପୁଣି କେତେ ପାତିବ୍ରତ୍ୟନିଷ୍ଠା, ହେଲେ ଯବୁ
ନୃମଣି ପ୍ରବାସୀ, ତାଙ୍କ ରତ୍ନ ପାଦୁକାକୁ
କରୁଥିଲେ ପୂଜା ନିତ୍ୟ ଦେବତା ବିଧାନେ,
ପାଇଲେ ପ୍ରାଣେଶଙ୍କର ଶ୍ରୀହସ୍ତ ଚିଠାଉ
ଲଗାଇ ମସ୍ତକେ ପଢ଼େ ଫେଡ଼ନ୍ତି ତା ମୁଦ,
ପାଠାନ୍ତେ ସାଇତା ହୁଏ ପୂଜା କୋଥଳିରେ ।
ଯେବନ ମଣି ନୃକଳେ ବାହୁଡ଼ା ବିଜୟ,
ରାଣୀହଂସପୁରେ ହେଲା ଦୁହିଙ୍କର ଭେଟ
ହେଲା ସ୍ଥିରଚକ୍ଷୁ ଏକଚକ୍ଷୁ, ଆହା କିବା
ତରଳ ଶୀତଳ ଦୃଷ୍ଟି, କା ନେତ୍ର-ଚକୋର,
ପିଇଲା କା ମୁଖେନ୍ଦୁର ଅନନ୍ତ ଅମିୟ,
ହେଲା ନାହିଁ ବାର ତାହା ମୁହୂର୍ତ୍ତେ ତ କିଛି ।
ଦେଖୁଛୁ କି ପୂର୍ଣ୍ଣ ଶଶୀ ଧରାମୁଖ, ଧରା
ଶଶିମୁଖ । ମହାରାଣୀ ନମିଲେ ପଦ୍ମରେ,
ନମେ କି ପାର୍ବତୀ ନଦୀ ସାଗର ଚରଣେ
ଖେଳିଗଲା କି ପ୍ରେମର ମଳୟ ମାରୁତ,
ଫୁଟିଗଲା କି ଅବ୍ୟକ୍ତ ଘନାନୁରାଗର
ଶୁଭ କଣ୍ଠାବଳୀ, ଆହା, ସେକାଳ ଆନନ୍ଦ,
ସେକାଳର ଶୂନ୍ୟ ଶୋଭା, ଭୁଞ୍ଜିଲେ କେବଳ

ଆନନ୍ଦ-ସୌନ୍ଦର୍ଯ୍ୟ-ଶାନ୍ତି-ସେ ବେଦନାଏ ॥
କି ମଙ୍ଗଳ ଦିନ ଆଜି, ଏଭଳି ସୁଦିନ
ଭାଗ୍ୟଧର ଜୀବନରେ ପ୍ରାୟଶଃ ଦୁର୍ଘଟ ।
ଧୋଇ ପତି ପଦ୍ମପଦ, ପଣତେ ପୋଛିଣ
ବସାଇ ଆସନେ କଲେ ଗୃହର ବ୍ୟଜନ,
ନୃବର ଛଡାଇ ନେଇ ଗୃହର ତତ୍ତ୍ୱ
ଭଷିଲେ ସସ୍ମିତେ, ପ୍ରିୟେ, ଏତେ ସେବକାରେ
ରହିବ କି ମୋର ସେବା ଅପୂର୍ଣ୍ଣ ତଳେହେଁ ?
ତୁମ୍ଭର ଏ କାର୍ଯ୍ୟ, ଛୁଟ ଛୁଟ ବସ ଆସି ପାଶେ ;
ଉତ୍ତରଲେ ରାଣୀ, ମୁଁ ଯେ ପ୍ରଧାନ ସେବକା ।
ଆହା, କି ଦାମ୍ପତ୍ୟ ପ୍ରେମ, ମଧୁର, ପାବନ,
ତା ମହତ୍ତ୍ୱ, ତା ଗାମ୍ଭୀର୍ଯ୍ୟ, ଜ୍ଞାତ ଭୁକ୍ତଭୋଗୀ ।
ପୁଚ୍ଛିଲେ ମହିଷୀ, ବୀରବର, ପୂର୍ଣ୍ଣ ହେଲା
ନରମେଧ ? କି ନିଷ୍ଠୁର ବୀର ଶିଳାହୃଦ,
ନାହିଁ ଦୟା ମାୟା ଲେଶ, ଅକାତରେ ବୀରେ
ନିର୍ବିକାରେ ବିନାଶନ୍ତି କେତେ ମହାପ୍ରାଣୀ ।
ଉତ୍ତରଲେ ନୃପ, ପ୍ରିୟେ, ରମଣୀ କି ଊଣା ?
ବଧନ୍ତି ଅସ୍ତ୍ରେ ବୀରେ, ମାତ୍ର ବିନା ଅସ୍ତ୍ରେ
ମାରନ୍ତି ରମଣୀ କରି କୋଟି ନରହତ୍ୟା
ମୁହୂର୍ତ୍ତକେ, ଜାଣେ ଭୀରୁ, ମାତ୍ର କାର୍ଯ୍ୟେ ବୀରା ।
କରନ୍ତି ମୁଁ ହତ୍ୟା ସତ୍ୟ, ମାତ୍ର ସେ ହତ୍ୟାରେ

ତୁମ୍ଭର ଅଗାଧ ସ୍ୱାର୍ଥ ନିବିଡ଼େ ଜଡ଼ିତ
ଭୁଞ୍ଜିବ ସାମ୍ରାଜ୍ୟ, ବସି ସାମ୍ରାଜ୍ଞୀ ଆସନେ ।
ଉତ୍ତରିଲେ ଇନ୍ଦୁମତୀ ରାଣୀ, ମହାରାଜ,
ଲୋଡ଼ା ନାହିଁ ସେ ସୌଭାଗ୍ୟ, ଲଭିଛି ମୁଁ ଯେଉ
ମହାରାଜ୍ୟ,ତବ ସୌମ୍ୟ ପୁଣ୍ୟ ପଦଦ୍ୱୟ,
ତାହା ତୁଳନାରେ ଏହି ସାମ୍ରାଜ୍ୟ ମୃଣ୍ମୟ—
ପର ରୁଧିରଶ୍ରୁସିକ୍ତ ଏହି ତୁଚ୍ଛ ରାଜ୍ୟ
କେଉଁ ଛାର ନାଥ ? ତାହା ସ୍ୱର୍ଗରାଜ୍ୟ ମୋର,
ତଭିନ୍ନ ସୁବର୍ଣ୍ଣ ରାଜ୍ୟ ମୋ ପକ୍ଷେ ଅଲଣା ।
ଭାଷିଲେ ବିକ୍ରମାଦିତ୍ୟ ରାଣୀ କର ଧରି,
ଦେବି, ଏହି ଦୈନ୍ୟ ଏକା ମହତ୍ତ୍ୱ ତୁମ୍ଭର,
ତୁମ୍ଭେ ଗୁଣବତୀ, ସତୀ, ମୁ ତୁମ୍ଭର ପତି,
ଏହାହିଁ ମୋ ପକ୍ଷେ ଏକା ଗୌରବକାରଣ ।
ନୁହେ ଯୁଦ୍ଧ ଅକର୍ତ୍ତବ୍ୟ, ଧର୍ମରକ୍ଷାପାଇଁ,
ପୁଣି ଦୁଷ୍ଟ ଦମନାର୍ଥେ କର୍ତ୍ତବ୍ୟ ସମର,
ଏ ଭାରତେ ଧର୍ମରାଜ୍ୟ ବିଶୃଙ୍ଖଳା ଦେଖି
(ଦ୍ୱିଜାତିର ସ୍ୱାର୍ଥଭୂତ ଦୁର୍ବାର ପ୍ରାଧାନ୍ୟ)
ଧର୍ମରାଜ୍ୟ ସ୍ଥାପନାର୍ଥେ ଧରିଥିଲି ଅସି,
ସାଙ୍ଗ ଏବେ ସେ ସୁବ୍ରତ, ଆଜଠାରୁ ଦେବି,
ସେବିବି ମୁଁ ମସିଦଣ୍ଡ ଅସିଦଣ୍ଡ ତେଜି ।
ଶୁଣି ପତି ବାଣୀ ସତୀ ଭାଷିଲେ ଏସନ—

କେଉ଼ ଅନ୍ତରସ୍ଥ ତବ ମନୋରଥ ପଥେ ?
କିନ୍ତୁ ନାଥ, ସେବକାର ଏତିକ ମାଗୁଣି,
କରିବେ ନିଯୁକ୍ତ ମୋତେ ଲେଖିକାପଦରେ ।
ଏହା କହି ପୁରୋହିତେ ପ୍ରମୀଳା ସୁନ୍ଦରୀ
ଗମିଲା ସଙ୍ଗିନୀ ସହ ଅନ୍ତଃପୁର ମୁଖେ,
ଯଥାସ୍ଥାନେ ପୁରୋହିତେ କଲେକ ପ୍ରସ୍ଥାନ,
ନୀରବିଲା ଉପବନ, ନୀରବେ ଯେସନ
ଉଡ଼ିଗଲେ ଶୁକ ସାରୀ ଆଦି ଖଗାଳିଏ ।

ଇନ୍ଦ୍ରଦତ୍ତ ସିଂହାସନେ ମହାସଭା ମଧ୍ୟେ
ବସେ ହୋଇ ଇନ୍ଦ୍ରନପ୍ତା ନରେନ୍ଦ୍ର-ଗୌରବ,
ସୁଶାସିଲେ ଆର୍ଯ୍ୟାବର୍ତ୍ତ ହିରଣ୍ମୟୀ ମହୀ;
ଅନ୍ତର ସୌନ୍ଦର୍ଯ୍ୟମୟୀ ସେ ବିରାଟ ସଭା
ନବରତ୍ନେ ଜ୍ୟୋତିଷ୍ମତୀ, ଜ୍ୟୋତିଷ୍ମତୀ ଯଥା
ମାନବର ଆଶା-ନିଶା ସାଫଲ୍ୟ-ଜୋତିଷ୍କେ,
ରମ୍ୟା ଯଥା ହିମାଳୟ ଅନନ୍ତ କନ୍ଦର,
ଚିରଦୀପ୍ତା ମହୌଷଧି ଜ୍ୟୋତିର୍ଲତା ଯୋଗେ ।
ସେ ଅମୂଲ୍ୟ ମହାରତ୍ନ ଅନଶ୍ୱର ଆଭା
ଉଜ୍ଜ୍ୱଳ ଭାରତବକ୍ଷ, ଉଜ୍ଜ୍ୱଳାଏ ତାର
ସୀମାତୀତ ସଂଖ୍ୟାତୀତ ଭୂଖଣ୍ଡ ଅଦ୍ୟାପି ।
ସଭା ଆଖ୍ୟାତ ସେ, ମାତ୍ର ପ୍ରକୃତ ପକ୍ଷରେ

ବାଣୀ-ମଣି-ଦେବାଳୟ, ପୂଜକମୁଖର,
ସେ ମହାପୂଜା ବାଣୀର ମଧୁର ମୂର୍ଚ୍ଛନା,
ସୁପ୍ତ ଇତିହାସ ଅଙ୍ଗେ ପ୍ରକାଶେ ସ୍ପନ୍ଦନ,
ଶୁଣୁଛି, ଶୁଣିବ ତାହା ଉତ୍କଣ୍ଠେ ଜଗତ
ଶୁଣେ ଯଥା ସିନ୍ଧୁ କଣ୍ଠୁ ନିର୍ବାଣ ସଙ୍ଗୀତ
ଯୋଗସ୍ଥା ଯୋଗିନୀ ବେଳା, ସତତ ତନ୍ମୟେ ।
ଶୋକସ୍ମୃତ ବଙ୍କିମ ଏକାଳେ ତା ନାମ,
ମାନ ବୁଦ୍ଧି ଅଗ୍ରତରେ କରେ ସେ ଅଙ୍କିତ
ସୁଦୂର ଭବିଷ୍ୟତର ଜୀବନ୍ତ ଆଦର୍ଶ,
ଏଣୁ ତାର ସ୍ମୃତି ଭସ୍ମ ବୋଲି ହୋଇ କାଳ,
ପ୍ରକାଶୁଛି କୃତଜ୍ଞତାଜ୍ଞାପକ ଗୁମାନ ।
ଆର୍ଯ୍ୟଜାତି-ସର୍ବବିଧ-ଉନ୍ନତି ଜାହ୍ନବୀ
ଥିଲା ରୁଦ୍ଧସ୍ରୋତା ହୋଇ ବହୁକାଳଯାଏଁ,
ଐରାବତ ଦନ୍ତ ତୁଲ୍ୟ ଏ ସଖା ତାହାକୁ
କରି ଦେଲା ଶତମୁଖୀ, ଆବର ପ୍ରଖର,
ଅନନ୍ତ ବିଜ୍ଞାନ-ସିନ୍ଧୁ ଅଭିମୁଖେ ତହୁଁ
ହେଲା ସେ ଧାବିତା, ଯେନ ଫେନ-ପୁଷ୍ପାଞ୍ଜଳି ।
ଗତ ଆର୍ଷ-ମହାଯୁଗ ସଭ୍ୟତା-ଲହରୀ
ଖେଳିଲା ଭାରତେ, ହେଲା ଭୂତ ବର୍ତ୍ତମାନ ।
କୋଟି ପରିମିତ ସୈନ୍ୟ ସେ ମହାସମର
ବିରାଟ ପରିଧି ବେଢ଼ି ଅବସ୍ଥିତ ସଦା,

ଉଜ୍ଜ୍ୱଳାନ୍ତ ସେ ସଭାର ଏକ ଅଂଶେ ବସି
ମହାକବି କାଳିଦାସ, କାବ୍ୟ-କଳାବାସ,
ଆସନ ବସନ ଶୁଭ୍ର, ଶୁଭ୍ର ଉତ୍ତରୀୟ-
ଉପବୀତ ବିଲମ୍ବିତ ସ୍ୱଚ୍ଛ କବିତାର
ସରଳ ପ୍ରବାହ ପ୍ରାୟ, ମୂରତି ମଧୁର,
ଦୃଷ୍ଟି ରସିକତାପୂର୍ଣ୍ଣ, ବିରାଜନ୍ତି ଯଥା
ସାହିତ୍ୟ-ମହାସୌଧର ତୁଙ୍ଗ ସ୍ୱର୍ଣ୍ଣଚୂଡ଼ା ।
ଗାଢ଼ ଚିନ୍ତାଶୀଳତାର ସମୁଦାର ରେଖା
ଅଙ୍କିତ ସୁଢ଼ଳ ମୁଖେ, କେଜାଣି କେବଣ
ଚିନ୍ତାରାଜ୍ୟ ରହିଅଛି ସମ୍ମୁଖେ ବିସ୍ତୃତ,
କି ମହାକବିତା ଯେହ୍ନେ ରହିଛି ଅଧରେ
ଅସମ୍ଭାଳେ, ସତେ ଅବା ପଡ଼ିଲା ବାହାର ।
ବିରହୀ ଯକ୍ଷର କାକୁ କରୁଣ କବିତା
ବହିଯିବ ତଦଣ୍ଡେ ବା ତରଳ ଛନ୍ଦରେ ।
ସାରସ୍ୱତ ପୁଷ୍ପାସ୍ତୃତା ଲେଖନୀ ଯାହାର
ସଞ୍ଚିଲା ସାହିତ୍ୟ-କୋଷେ ବ୍ରହ୍ମକାନ୍ତ ହୀରା,
ମେଷଚକ୍ଷୁମାଳା ❋ , ପୁଣି ବାରବାମା ସୁଜା,
ପ୍ରଦର୍ଶିଲା ଯେ ଲେଖନୀ ସମଗ୍ର ଜଗତେ
ଆର୍ଯ୍ୟସାହିତ୍ୟର ଶକ୍ତି, ବିଶ୍ୱବିଜୟିନୀ,
ଆବର ମହାପ୍ରାଣତା— ଗମ୍ଭୀର, ଅକଳ ;

---

❋ ସଟେକାଲ୍ଲସ୍ଥ ମାଳା ।

ନିରୁପମା ଯା ଉପମା, ସ୍ୱୟଂ ବୀଣାପାଣି
କରନ୍ତି ଦର୍ଶନ ଯାର ଜିହ୍ୱାଗ୍ରେ ସତତ,
ଯା ମହାପ୍ରତିଭାପାଶେ ବିଶ୍ୱଚକ୍ଷୁ ରବି
ମ୍ଳାନପ୍ରଭ, ମ୍ଳାନପ୍ରଭ ଯଥା ଦୀପଶିଖା
ତାହାର ଅନନ୍ତତେଜେ ନିମଜ୍ଜି ଦିବସେ,
ପ୍ରାତର୍ନମ୍ୟ କଲଙ୍ଗୀବା ସେ ମହାପୁଂସର
ମହିମା ବର୍ଣ୍ଣିବା ସିନା ଧୃଷ୍ଟତା କେବଳ,
କେ ଗଣିବ ସମୁଦ୍ରର ଅନନ୍ତଲହରୀ ?
ଉପବିଷ୍ଟ ଆନ ଅଂଶେ ମହାବାଗ୍ମୀବର
ବରରୁଚି, ଊର୍ଦ୍ଧ୍ୱଚୂଳ ମୁଣ୍ଡିତ ମସ୍ତକ,
ଦୀର୍ଘ ବପୁ, ତେଜସ୍ୱିତା ଜୀବନ୍ତ ପ୍ରତିଭୂ,
ପୂର୍ଣ୍ଣ-ସ୍ୱାଧୀନତା ଆଉ ସ୍ପଷ୍ଟବାଦିତାରେ
ଗଢା ଯେହ୍ନେ ଓଜସ୍ୱିନୀ ପ୍ରକୃତି ତାଙ୍କର ।
ସୂକ୍ଷ୍ମତମ ଯୁକ୍ତି ତର୍କେ, ଅପକ୍ଷପାତତ୍ୱେ,
ଅକାଟ୍ୟ ମନ୍ତ୍ରଣା ଦାନେ, ସୁମନ୍ତ୍ର କେବଳ
ହେଲେ ହେବେ ତାଙ୍କ ସର ସାକେତ ସଚିବ ।
ତାଙ୍କ ପାଶେ ଧନ୍ୱନ୍ତରୀ, ପର * ଦାର୍ଶନିକ
ଉପବିଷ୍ଟ ଯୋଗ୍ୟାସନେ, ସମାଧିସ୍ଥ ଯଥା
ପ୍ରକୃତିର ମହାଯୋଗୀ ପ୍ରାଚୀନ ଶିଖରୀ,
ଗାମ୍ଭୀର୍ଯ୍ୟ ଔଦାର୍ଯ୍ୟ ଦୋଳା ଉଜ୍ଜ୍ୱଳ କପାଳ

* ଶ୍ଳେଷ ।

ଚହ୍ନାଏ ସଙ୍କେତେ ତାଙ୍କୁ ବ୍ରାହ୍ମଣ ବୋଲିଣ ।
କି ଭକ୍ତ ଉଜୁଡ଼ା ଦୃଷ୍ଟି, ବନ୍ଧା ରଖି ଥରେ
ହେବ ନାହିଁ ମୁକୁଳାଇ ତାହା ପାଶୁ ମନେ,
ଶାନ୍ତି, ତୃପ୍ତି, ସଂଯମର ମୁଦ୍ରା ସୁମୋହନା
ମୁଦିତ ମଙ୍ଗଳମୟ ନୟନଯୁଗଳେ ।
ତହିଁ ପରେ ଉପବିଷ୍ଟ ଧବଳଶ୍ମଶ୍ରୁଳ
ମିହିର-ତେଜସ୍ୱୀ ବୃଦ୍ଧ ବରାହମିହିର:
ଅନନ୍ତ ଅନନ୍ତେ ଯାଙ୍କ କଳ୍ପନା ସନ୍ତରି
ସୃଷ୍ଟିର ଜଟିଳ ଜାଲ ଭେଦି ଅବହେଳେ
କଲେ ଗ୍ରହଜଗତର ତତ୍ତ୍ୱ ଆବିଷ୍କାର,
ପ୍ରକାଶେ ଯେ କ୍ରିୟା ସଦା ନରଭାଗ୍ୟ ପରେ ।
ଦୁରୂହ ଜ୍ୟୋତିଷ ତତ୍ତ୍ୱ ହେଲା ପ୍ରତିଭାତ
ବିଶ୍ୱେ ଯେଣେ, ଯାହା ବିଶ୍ୱକଲ୍ୟାଣନିଦାନ ।
ଏଡ଼େ ବଡ଼ ହିତୈଷୀ ଯେ ଭବପ୍ରପଞ୍ଚର,
କି ଆଶ୍ଚର୍ଯ୍ୟ, ହୃଦ ତାର ଈର୍ଷାର ନରକ,
କୁସୁମ ତ ନୁହେ ଖାଲି ସୁରଭି ଆଗାର,
ଦୁଷ୍ଟ ବିଷ କୀଟ ସୁଦ୍ଧା ଧରେ ସେ ଗରଭେ ।
ହା ବରାହ, କି ଅଶୁଭକ୍ଷଣେ କେ ବହିଲା
ଅଶିବ ଅଭିଧା ତବ ? ଆଚରିଲ ହାୟ,
ନାମ ଅନୁରୂପ ଧର୍ମ, କେଉଁ ଗ୍ରହ ଦୋଷେ ?
ଯା ନଖ ଦର୍ପଣେ ଥିଲା ଭୂଗୋଳ, ଖଗୋଳ,

ଯାହା ବର୍ତ୍ତମାନ ତଥ୍ୟ, ସେହି ମେଧାବତୀ,
ସେ ମହାପ୍ରତିଭାବତୀ, ପ୍ରତିଭା ସୁନ୍ଦରୀ *
କଲା ଆତ୍ମହତ୍ୟା ସିନା ତୁମ୍ଭର ସକାଶେ ?
ତୁମ୍ଭ ଦୋଷୁ ସିନା ଦେଖ ଭାରତମାତାର
ମୁକୁଟୁ ମହାର୍ଘମଣି ଝଡ଼ିଗଲା ଏକ !
ଜନନୀର ଆଶା-ପକ୍ଷୀ ଯାହାକୁ ନିରେଖି
ବାନ୍ଧି ଆସୁଥିଲା ନୀଡ଼, ସେ ସୌମ୍ୟ ଶାବକେ
ବଧି ତୁମ୍ଭେ ବ୍ୟାଧରୂପେ, ଭାଙ୍ଗି ଦେଲ ହାୟ,
ଅନନ୍ତ ଆକାଂକ୍ଷାପୂର୍ଣ୍ଣ ସେ ସୁଖକୁଲାୟ,
କଲ ଦୁଃଖିନୀର ନେତ୍ର ଚିର ଅଶ୍ରୁଝର,
ସହିଲାଟି ଏହା ତୁମ୍ଭ ଦାରୁଣ ହୃଦୟ ?
ଏହି ମହାପାପ—ଏହି ଅଧୌତ କଳଙ୍କ,
ବହିବ ମସ୍ତକେ ତୁମ୍ଭେ ଇହ ପରକାଳେ ।
ବରହ ପୁରତେ ସ୍ଥିତ ଅମରପ୍ରତିଭ
ମହାତ୍ମା ଅମର ସିଂହ, ଅଦ୍ଭୁତ ଶାବ୍ଦିକ,
ସୂକ୍ଷ୍ମ ଅଭିଧାନବେତ୍ତା, ସରଳ ସ୍ୱଭାବ,
କଳେବର ତୁଳନାରେ ବୃହତ ମସ୍ତକ,
ଚିନ୍ତା-ନିର୍ନିମେଷ ନେତ୍ର ଭାବ-ଭରାକ୍ରାନ୍ତ,
ଖେଳେ ତାର ପ୍ରାନ୍ତେ କିବା ମହିମାର ରାଗ

* ପ୍ରକୃତ ନାମ ଖନା । ମହାରାଜ ବିକ୍ରମାଦିତ୍ୟ ତାଙ୍କୁ ନବରତ୍ନରେ ନେବାକୁ ସଙ୍କଳ୍ପ କରିଥିଲେ, ମାତ୍ର ଖନା ମିହିରର ସେନ୍ଦ୍ରର ଅନ୍ତର୍ଭୁକ୍ତ ହେଲେ ।

ତରଳ ଶୀତଳ, ଯଥା ପ୍ରୋତ୍ଫୁଲ୍ଲ ଚନ୍ଦ୍ରିକା ॥
ତାଙ୍କ ପାର୍ଶ୍ୱେ ଯଥାକ୍ରମେ ଶଙ୍କୁ, କ୍ଷପଣକ,
ମନସ୍ୱୀ ବେତାଳଭଟ୍ଟ, ଶ୍ରୀ ଘଟକର୍ପୂର,
ଶ୍ରୁତସେନ, ମଣିରଥ, ତ୍ରିଲୋଚନ ହରି,
କୁଣ୍ଡଳୀ କୁମାର ସିଂହ, ଆଶୁଦତ୍ତମଣି,
ବାଦରାୟଣାଦି ଖ୍ୟାତ ପଣ୍ଡିତମଣ୍ଡଳୀ
ଅବସ୍ଥିତ ପ୍ରଭାବନ୍ତ ନକ୍ଷତ୍ରସଂକାଶ ।
ଏତଦ୍ଭିନ୍ନ ଷୋଳଜଣ ବିଜ୍ଞ ବ୍ରହ୍ମବିପ୍ର,
ପୁଣି ସେହି ପରିମିତ ଦକ୍ଷ ଟିକାସ୍ତକ
ସତତ ସେ ସଭା ମଧ୍ୟେ ଥାନ୍ତି ଉପସ୍ଥିତ ।
ସେ ସଭା ଆର୍ଯ୍ୟସଭ୍ୟତା-ଦେହା-ମେରୁଦଣ୍ଡ,
କିମ୍ବା ଉନ୍ନତିର କଳ୍ପଲତା, ଧରିଲା ସେ
ନାନା ଫଳ-ଇତିହାସ, ସାହିତ୍ୟ, ବିଜ୍ଞାନ,
ଦର୍ଶନ, ଜ୍ୟୋତିଷ ଆଦି, ସୁସ୍ୱାଦୁ ରସାଳ,
ଯା ସ୍ଥାୟୀ ମଧୁର ରସ କରୁଛି ଅଦ୍ୟାପି
ଭାରତ ରସନା ତୃପ୍ତ, ପୁଣି ଅପରର ।
ଆର୍ଯ୍ୟଜାତି ଉନ୍ନତିର ଯାବତ କଲ୍ଲୋଳ
ଜନ୍ମ ଲଭି ଏହି କେନ୍ଦ୍ରୁ ବ୍ୟାପିଲା ସର୍ବତ୍ର,
ବ୍ୟାପେ ଯଥା ଲୋଷ୍ଟ୍ରାଘାତ ସମୁତ୍ଥିତ ଢେଉ
କ୍ରମଶଃ ଗୁଳିତ ହୋଇ କାସାର ପରିଧି ।
ଏହିଲା ସଭାରେ ବସି ଶ୍ରୀ ବିକ୍ରମାଦିତ୍ୟ

ଅଷ୍ଟ ଶତ ନରପତି ପରିବୃତ ହୋଇ
କରନ୍ତି ବ୍ୟବସ୍ଥାମତେ ବିଚାର ମୀମାଂସା ।
ଗୁଞ୍ଜି ସୂକ୍ଷ୍ମ ବିଚାରକୁ ନ୍ୟାୟ-ଗୁଞ୍ଜୁଣୀରେ
ନେଉଥିଲେ ତୋଳି ସାର, ସାରୁ ପୁଣି ସାର,
ହେଉ ବ୍ୟବହାର ଯେତେ ଜଟିଳ କୁଟିଳ,
ବିଚକ୍ଷଣ ଶକ୍ତିବଳେ ନଅନ୍ତି ସେ ବାଛି
ସତ୍ୟଟିକ ତହୁଁ, ଦଣ୍ଡ ବିହନ୍ତି ତଦ୍ରୂପ ।
ପୁରସ୍କାର ରୂପାନ୍ତର ତାଙ୍କ ଦତ୍ତ ଦଣ୍ଡ,
କେବଳ ଦୋଷର ବିହି ଶାସ୍ତି ଯଥାତଥ
ନୁହନ୍ତି ସେ କ୍ଷାନ୍ତ, ମଣି ଦେତକରେ ଖାଲି
ସ୍ୱକୀୟ କର୍ତ୍ତବ୍ୟ ଶେଷ, ତୀକ୍ଷ୍ଣ ବୁଦ୍ଧିବଳେ
କରୁଥିଲେ କାହାର ସେ ଅଶୁଭରୁ ଶୁଭ ;
ଦୋଷିର ଚରିତ୍ର ନୃପ କରି ସଂଶୋଧନ
ବିବିଧ ସୁଶିକ୍ଷାଦାନେ, ଆଣନ୍ତି ସତ୍ପଥେ
ତାକୁ, ଦଣ୍ଡଭୋଗ ପରେ ଯୋଗାଇ ସୁବୃତ୍ତି
ଗଢ଼ନ୍ତି ଜୀବନ ତା'ର ନବ ଉପାଦାନେ,
ଦେଖି ସେ ଗନ୍ତବ୍ୟ ପଥ ସରଳ ସୁଗମ
ମହାସୁଖେ ସାଧୁଭାବେ ହୁଏ ଅଗ୍ରସର ।
ଦୁର୍ଗମ ଦୁର୍ଜ୍ଞେୟ ଗୂଢ଼ ରାଜନୀତି ପଥ
କଲେ ସାଧାରଣ ପକ୍ଷେ ସୁଗମ, ସୁଜ୍ଞେୟ ।
ବସ୍ତୋବୃଦ୍ଧି ସହ ତାଙ୍କୁ କଲି ଆଲିଙ୍ଗନ

ପ୍ରତଭା, ସହସ୍ର ବାହୁ ବସ୍ତାର ଚୌପାଶୁ,
କରେ ଆଲିଙ୍ଗନ ଯଥା ଶୋଭା ସ୍ୱର୍ଣ୍ଣଲତା
ଚପଳା, ଆସନ୍ନବର୍ଷୀ ଆଡ଼ମ୍ବରୀ ଘନେ ।
ବ୍ୟାପିଲା ସର୍ବତ୍ର ଯଶ—ସମ୍ରାଟ-ବାଞ୍ଛିତ,
ହୋଇ ଆକର୍ଷିତ ତହିଁ ବହୁ ଗୁଣିଜନେ
ଆସିଲେ ତାହାଙ୍କୁ ଅସି, ଆଶ୍ରନ୍ତ ଯେସନ
କୁସୁମେ କୁସୁମଲିଟ ଚହଟିଲେ ବାସ,
ଅବା ପକ୍ୱଶାଳୀପୂର୍ଣ୍ଣ କେଦାରେ ଖଗାଳି,
କିମ୍ବା ଯଥା ଆକାଙ୍କ୍ଷାକୁ ବିବିଧ ଉଦ୍‌ବେଗ,*
ବୈରାଗ୍ୟେ ସଂଯମ, ଶାନ୍ତି, ସାମ୍ୟ, ତୃପ୍ତି, ପ୍ରୀତି ।
ଦେଖାଇ ସ୍ୱକୀୟ ବିଦ୍ୟା ଉତ୍କର୍ଷ ସମ୍ମୁଖରେ,
ଲଭି ଉପଯୁକ୍ତ ବୃତ୍ତି ନିବସିଲେ ମୋଦେ ।
ବର୍ଷେ ରାଜସଭା ମଧ୍ୟେ ନିତ୍ୟ ପ୍ରଦର୍ଶନୀ,
ପୁରସ୍କାର ପ୍ରଲୋଭନେ ପ୍ରବର୍ତ୍ତି ପ୍ରଜାଏ
ଉତ୍କୃଷ୍ଟ ପଦାର୍ଥ ବହୁ—କୃଷିଶିଳ୍ପଜାତ
ଭେଟନ୍ତି ସମ୍ମୁଖରେ ଆଣି ପ୍ରତ୍ୟକ୍ଷ ସୋତ୍ସାହେ ।
"ନ ହେଲେ ଅଭାବ ସହ କଠୋର ସଂଗ୍ରାମେ
ରତ, ଜନ୍ମେ ନାହିଁ ଆତ୍ମନିର୍ଭରଣୀ ଶକ୍ତି",
ଏ ଅମୂଲ୍ୟ ଉପଦେଶ ସତ୍ୟଶିବମୟ
ଅର୍ପନ୍ତି ବିକ୍ରମାଦିତ୍ୟ ପ୍ରଜାପୁଞ୍ଜେ ସଦା ।



## ଦ୍ୱାଦଶ ସର୍ଗ ।



ସାହିତ୍ୟ ମାହାତ୍ମ୍ୟେ ସଭା ଭୂତଳେ ଅତୁଳ,
ମିଳନ୍ତି ପଣ୍ଡିତ କବି ଏକତ୍ରେ ଯେକାଳେ,
ସାରସ୍ୱତ କଳକଣ୍ଠ ବିହଙ୍ଗେ ମୁଖର
ହୁଏ ସଭା, ଖେଳେ ନବରସର ଉଲ୍ଲୋଳ
କଲ୍ଲୋଳ ବିବିଧ ରଙ୍ଗେ, ବହେ ଜ୍ଞାନ-ଗଙ୍ଗା,
ସତେ ଯେହ୍ନେ ବୀଣାପାଣି ବିଦ୍ୟାବିନୋଦିନୀ
ପରିଗ୍ରହି ବହୁ ରୂପ, କରି ଉତ୍ଖନନ
ଅନନ୍ତ ବିଦ୍ୟାର ଖଣି, ବିତରନ୍ତି ଦେବୀ
ଅନର୍ଗଳ ଅବିକଳେ ଅନନ୍ତ ରତନ ।
ହୁଏ କେତେ ଗଦ୍ୟ ପଦ୍ୟ ସାହିତ୍ୟାଲୋଚନା,
ନ୍ୟାୟର ମୀମାଂସା, ଶ୍ଳୋକ ସମସ୍ୟା ପୂରଣ,
ଅଳଙ୍କାର ଶାସ୍ତ୍ରାଦିର ସରଳ ବିଚାର,
ବର୍ଷିଯାଏ ସ୍ନିଗ୍ଧ ସୁଧା—ମୃତ ସଞ୍ଜୀବନୀ,
ଫୁଟିଯାଏ ପାରିଜାତ—ପ୍ରାଣଉନ୍ମାଦକ,
ଉପୁଜେ କଳହ—ଯୁକ୍ତି-ପ୍ରତିଯୁକ୍ତିଶଂସୀ,
କି ମଧୁର ସେ କଳହ—କର୍ଣ୍ଣରସାୟନ,
କି ଉଜ୍ଜ୍ୱଳ, କି ସରସ, କେତେ କି ଗମ୍ଭୀର,

ନାହିଁ ସେ କଳହେ ତୀବ୍ର କଟୂକ୍ତିର ଜ୍ୱାଳା,
କିମ୍ବା ଘୃଣ୍ୟ ଲାଞ୍ଛନାର ମର୍ମାନ୍ତିକ ତାପ,
ଅବା କ୍ରୋଧ-ମାତ୍ସର୍ଯ୍ୟାଦି-ଜନିତ ସ୍ତନିତ,
ଉଦ୍ଭାସିତ ସେ କଳହେ ପରମ କଲ୍ୟାଣ,
ସଂସାରର ଚିରନ୍ତନ ରହସ୍ୟ ନିଗୂଢ଼ ।
ମାନବବାଞ୍ଛିତ ତାହା, ମାନବପୂଜିତ,
ଆତ୍ମୋନ୍ନତି ସାଧନର ଅମୃତ ସୋପାନ ।
ଜୀବନର ମଳିନତା ହୁଏ ତହିଁ ଦୂର,
କନକ-କଳଙ୍କ ଅଙ୍କ ଅନଳେ ଯେସନ ।

ଏବେ ଶ୍ରୀ ବିକ୍ରମାଦିତ୍ୟ ପୁଚ୍ଛିଲେ ସଭାକୁ—
"ଜନ୍ମାନ୍ତରବାଦ ସତ୍ୟ, କି ଭ୍ରାନ୍ତ ଧାରଣା ?"
ପ୍ରଥମେ ଦଣ୍ଡାୟମାନ ହୋଇ କ୍ଷପଣକ
ଉତ୍ତରିଲେ— ଅନ୍ଧକାର ସୃଷ୍ଟିର ରହସ୍ୟ,
ମାନବର ଦୃଷ୍ଟ— ଜ୍ଞାତ, ଅଦୃଷ୍ଟ— ଅଜ୍ଞାତ,
ନୁହେ ଆତ୍ମ-ଅନୁଭୂତ ଯାହା, ତା ସନ୍ଦେହ,
କେ ଦେଖିଛି ବା ଭୁଞ୍ଜିଛି ଜନ୍ମାନ୍ତର କାହିଁ ?
କିଏ କହେ ଜନ୍ମାନ୍ତର ସତ୍ୟ, କିଏ କହେ
ମିଥ୍ୟା, ଏହି ମତଭେଦ ଅଛି ଚିରକାଳ,
ଯହିଁ ମତାନ୍ତର, ତହିଁ ଆତ୍ମପ୍ରତୀତିର
ପ୍ରତିବନ୍ଧ କ୍ଷୀଣତର, ଅସ୍ପଷ୍ଟ ଅତୀବ ।

ମାନବର ଜଣା ଅଳ୍ପ, ଅଜଣା ଅନନ୍ତ,
ସୃଷ୍ଟି ମହାତତ୍ତ୍ୱ, ନରଧାରଣା ଅତୀତ,
କହିବ ଏପରି ସ୍ଥଳେ କେବଣ ସାହସ
ଅସ୍ୱୀକାର୍ଯ୍ୟ ଜନ୍ମାନ୍ତର, ଅଥବା ସ୍ୱୀକାର୍ଯ୍ୟ ।
ଏହୋ ଋଷି କ୍ଷପଣକ ଗ୍ରହନ୍ତେ ଆସନ,
ଉଭା ହେଲେ ଧନ୍ୱନ୍ତରି—ପୁରାଣସମର୍ଥୀ,
କହିଲେ ସେ, ସତ୍ୟ ନିଶ୍ଚେ ଜନ୍ମାନ୍ତରବାଦ,
ଯାହା ଶାସ୍ତ୍ରସିଦ୍ଧ, ମିଥ୍ୟା କେ କହିବ ତାହା ?
ଶାସ୍ତ୍ର ଯଦି ସୁବିଶ୍ୱାସ୍ୟ, ମହାସତ୍ୟପୂର୍ଣ୍ଣ,
ତେବେ କିପାଁ ଅବିଶ୍ୱାସ୍ୟ ମିଥ୍ୟା ଜନ୍ମାନ୍ତର ?
ପୁତ୍ରରୂପେ ଜନ୍ମେ ପିତା, ଶାସ୍ତ୍ରମତ ଏହା,
ଅତଏବ ଜନ୍ମାନ୍ତର ଧ୍ରୁବ ଧ୍ରୁବ ଧ୍ରୁବ ।
ଶେଷେ ଉଠି କାଳିଦାସ—ବାଣୀବର ଶିଷ୍ୟ,
ଭାଷିଲେ ଆଲଙ୍କାରିକ ଉତ୍ତେଜକ ଗିରେ—
ପୁତ୍ରରୂପେ ଜନ୍ମେ ପିତା, ନୁହେ ଜନ୍ମାନ୍ତର
ତାହା—ଅଂଶାନ୍ତର ମାତ୍ର, ନିହିତ ତହିଁରେ
ବ୍ୟଷ୍ଟି ସମଷ୍ଟିର ଭାବ, ସ୍ୱତନ୍ତ୍ର ସେ କଥା,
ଆଉ ଶାସ୍ତ୍ର, ସେ ତ ଅପ୍ରତ୍ୟକ୍ଷ ଘଟଣାର
ସୁପ୍ତ ପ୍ରତିଧ୍ୱାନ, ତେଜି ପ୍ରତ୍ୟକ୍ଷ ପ୍ରମାଣ
କେଉଁ ଫଳ ଅପ୍ରତ୍ୟକ୍ଷେ କରିବ ଆଶ୍ଳେଷେ ?
କିପାଁ କିଏ ନ ମାନିବ ଜନ୍ମାନ୍ତରବାଦ,

ଲାଗିଅଛି ଯାତାୟାତ ସଦା ଏ ସଂସାରେ
ସକଳର, କି ସ୍ଥାବର କି ଅବା ଜଙ୍ଗମ,
ଅସ୍ତଗତ ରବି ଶଶୀ ହୁଅନ୍ତି ଉଦିତ,
ବାଷ୍ପାକାରେ ଉଡ଼ିଯାଇ ଊର୍ଦ୍ଧ୍ୱେ ଜଳରାଶି
ଆସେ ପୁଣି ବର୍ଷାରୂପେ ଫେରି ପୂର୍ବସ୍ଥାନେ,
କରି କ୍ଷୁଦ୍ର ବୀଜଟିଏ ଭୂଗର୍ଭେ ପ୍ରୋଥିତ,
କିଛି କାଳେ କୋଟି ବୀଜ ଉପୁଜିବ ତହୁଁ,
ହୁଏ ନାହିଁ ଉପ୍ତ ବୀଜ ନଷ୍ଟ କଦାଚନ,
ପ୍ରାପ୍ତ ହୁଏ ଭବାନ୍ତର ମାତ୍ର, ବୃକ୍ଷରୂପେ
ପୁନଶ୍ଚ ସ୍ୱରୂପ ଧରି ଆସେ ବହୁଗୁଣେ,
ପ୍ରତ୍ୟକ୍ଷରେ ଦେଖି ଏହି ଜୀବନ୍ତ ଦୃଷ୍ଟାନ୍ତ
କେଉଁ ଯୁକ୍ତି ବଳେ କିଏ କରିବ ଖଣ୍ଡନ
ଜନ୍ମାନ୍ତରବାଦ ? ଭବେ ସର୍ବେ ଗତିଶୀଳ
ପୁଣି ଅବିନାଶ, ତେବେ ଖାଲି କି ଜୀବାତ୍ମା
ଅଚଳ ଅସାଡ଼ ପୁଣି ଧ୍ୱଂସର ଅଧୀନ ?
ଅମର ଅଜର ଆତ୍ମା, ଜୀର୍ଣ୍ଣ ବସ୍ତ୍ର ପ୍ରାୟ
ତେଜି ଏକ ରୂପ ସେହୁ ଧରେ ଆନ ରୂପ,
ଦେଖାଇ ଅଛନ୍ତି ପାର୍ଥେ ଶ୍ରୀକୃଷ୍ଣ ଏଥିର
ସୂକ୍ଷ୍ମ ଦୃଷ୍ଟାନ୍ତ ଯାର କୁରୁକ୍ଷେତ୍ର ରଣେ;
ତହୁଁ ସବ୍ୟସାଚୀ ହୋଇ ବିମୁକ୍ତସଂଶୟ
ହୋଇଥିଲେ ଯୁଦ୍ଧେ ରତ ଔଦାସ୍ୟ ବରଜି ।

ଦେହ ସଙ୍ଗେ ଆତ୍ମା ଯେବେ ହେଉଥାନ୍ତା ଧ୍ୱଂସ,
ହୁଅନ୍ତାଣି କେଉଁ କାଳୁ ତେବେ ଏ ଧରଣୀ
ଜୀବସୃଷ୍ଟି ଶୂନ୍ୟ, ଭାଙ୍ଗି ସୁବର୍ଣ୍ଣ ପ୍ରତିମା
ନିର୍ମାଣିଲେ ଘଟ, ହୁଏ କି ସୁବର୍ଣ୍ଣ ନଷ୍ଟ ?
ଅତଃ ଜନ୍ମାନ୍ତର ସତ୍ୟ ଏହା ନିଃସନ୍ଦେହ ।
ନୀରବନ୍ତେ ମହାକବି, ଉଠିଲା ସଭାରୁ
ପୁଣି ଧନ୍ୟ ଧନ୍ୟ ଶବ୍ଦ - ସମର୍ଥନଶଂସୀ
ଶୁଣି ଆର୍ଯ୍ୟାବର୍ତ୍ତପତି ଲଭି ପରିତୋଷ,
ପ୍ରଦାନିଲେ କାଳିଦାସେ ବହୁ ପୁରସ୍କାର—
କନକ କୁଣ୍ଡଳ, ବଳା, ଉପାଦେୟ ଗ୍ରନ୍ଥ,
ପଞ୍ଚବସ୍ତ୍ର, ସ୍ୱର୍ଣ୍ଣ ମୁଦ୍ରା, ପରିଚ୍ଛଦ ଆଦି ।
ଏହିପରି ନରବର ଅର୍ପନ୍ତି ଗୁଣୀରେ
ଅହରହ ଆଶାତୀତ ସଦ୍ୟ ପୁରସ୍କାର,
ମଣି ମୁକ୍ତା ଗଜ ବାଜି ସ୍ୟନ୍ଦନ ପ୍ରଭୃତି
ଥିଲା ତାଙ୍କ ନିତ୍ୟ ଦାନ, ତାହାଙ୍କ ସମାନ
ପ୍ରତିଭାର ଉପାସକ, ଗୁଣି—ଗୁଣଗ୍ରାହୀ,
ଷୋଳକଳାପୂର୍ଣ୍ଣ ନୃପ ତ୍ରିକାଳଦୁର୍ଲଭ ।

ପ୍ରଶ୍ନ କଲେ ଆଉ ଦିନେ ଶ୍ରୀବିକ୍ରମାଦିତ୍ୟ
ସଭା ପ୍ରତି, "ଅତ୍ମୋନ୍ନତି ସାପେକ୍ଷ କାହାର ?"
ଉଭା ହୋଇ ତହୁଁ ଶଙ୍କୁ ଭାଷିଲେ ଏସନ—

ଭାଗ୍ୟର ସାପେକ୍ଷ ତାହା, ରଜା, ଧନୀ,
ଦରିଦ୍ର, ପଣ୍ଡିତ, ମୂର୍ଖ, ସମସ୍ତେ ମାନବ,
ହସ୍ତ ପଦ ଚକ୍ଷୁ କର୍ଣ୍ଣେ ସମସ୍ତେ ସମାନ,
ମାନ ଦେଖ ଗୌରବରେ ଇତର ବିଶେଷ,
ପିତାର ଯୁଗଳ ପୁତ୍ର, ଉଭୟର ପ୍ରତି
ସମ ସ୍ନେହ, ସମ ଯତ୍ନ, ସମାନ ତାଡ଼ନା,
ତଥାପି ତ ଦେଖାଯାଏ ଜଣେ ଗଜମୂର୍ଖ,
ଅପର ପଣ୍ଡିତ, ଏହି ତାରତମ୍ୟ ହେତୁ,
ନୁହେ କି ଅଦୃଷ୍ଟ, ଏକା ଅଦୃଷ୍ଟହିଁ ମୂଳ ?
ଉଠି ଖରେ କାଳିଦାସ କଲେ ପ୍ରତିବାଦ—
ଅଦୃଷ୍ଟହିଁ ମୂଳ, ଏହା ଗତରସ୍ଥାନର *
ଶୂନ୍ୟଗର୍ଭ ଆଶା, ବ୍ୟର୍ଥ କଳ୍ପନାପ୍ରସୂତ,
"ଅଦୃଷ୍ଟହି ମୂଳ" ଏହି ଅଚେତନ ଉକ୍ତି
ବାତବ୍ୟାଧି ପ୍ରାୟ, ତାର ଦାରୁଣ ବ୍ୟଥାରେ
ଘାରିଯାଏ ସର୍ବାଙ୍ଗର ଗଣ୍ଠା ପ୍ରତିଗଣ୍ଠା ;
ପରନ୍ତୁ ସେ ବ୍ୟାଧି ପାଶେ ସ୍ୱୟଂ ଧନ୍ୱନ୍ତରି ।
ଯାକୁ ବୋଲି ଅପ୍ରତ୍ୟକ୍ଷ, ଅଦୃଷ୍ଟ ତାହାହିଁ,
ଫଳତଃ ସେ ଅନିର୍ଣ୍ଣିତ, ତା' ପ୍ରତି ନିର୍ଭର
ପ୍ରାଣ, କି ବିଷମ କଥା, କରିବ କି କେବେ

---

* ଜଗତ୍ ।

ମହାଶୂନ୍ୟେ ଶତଧୂସି ଅଟ୍ଟାଳୀ ନିର୍ମାଣ ?
ସଂକଳ୍ପେ ଭୋଜନ ପାନ କରି ଯେବେ କେହି
ଧରି ପାରେ ସଂକଳ୍ପରେ ପ୍ରାଣ, କରୁ ତେବେ
ସେହୁ ଅଦୃଷ୍ଟୋପାସନା, ମାତ୍ର ଭ୍ରଷ୍ଟ ନୁହେ
ସଂକଳ୍ପରେ ଯେହୁ, ଲୋକେ ପ୍ରକୃତ, ତାହାର
କର୍ମ ବିନା ଗତ୍ୟନ୍ତର ନାହିଁ କେଉଁ କାଳେ,
ହସ୍ତେ ଧରି ମୁଖେ ନେଇ ନ ଦେଲେ ଆହାର,
ଅଦୃଷ୍ଟ କି ଦେବ ଆଣି ଉଦରେ ପୂରାଇ ?
ମୋ ମତରେ ଆତ୍ମୋନ୍ନତି ସାପେକ୍ଷ ଶ୍ରମର ।
ଲାଗନ୍ତେ ଅନେକ ତର୍କ ବିତର୍କ ଏପରି,
ଶେଷେ ନବରତ୍ନପାଳ କଲେ ଏ ମୀମାଂସା --
"ଶ୍ରମେ ଆତ୍ମୋନ୍ନତି" ଖାଲି କହିଲେ ଏତିକି
ହେଲା ନାହିଁ ଏ ପ୍ରଶ୍ନର ସମ୍ପୂର୍ଣ୍ଣ ଉତ୍ତର,
ନ ହେଲେ ଅଭାବ କିପାଁ କେ କରିବ ଶ୍ରମ,
ନ ହେଲେ ବୁଭୁକ୍ଷା ଉଦେ, ଭୁଞ୍ଜିବ କି କେହି ?
ଅତଏବ ଅଭାବହିଁ ଉନ୍ନତିର ହେତୁ ।
ଏ ସୂକ୍ଷ୍ମ ମୀମାଂସା ଶୁଣି ସର୍ବ ସଭାଜନେ
ପ୍ରଶଂସିଲେ ଶତକଣ୍ଠେ ସମ୍ରାଟ ବିକ୍ରମେ ।

ସାହିତ୍ୟସନ୍ଦର୍ଭେ ଏବେ ରତ ନୃପନାହା
ଅନେକ-ପଣ୍ଡିତ କବି ସାହିତ୍ୟିକ ସହ,

ସାହିତ୍ୟର ସଂଜ୍ଞା ଘେନ ଲାଗିଅଛି ତର୍କ,
କେ କହେ, ସମ୍ୟକ ହିତ କରେ ଯେ ସାଧନ,
ସେ ସାହିତ୍ୟ; କା ମତରେ ହେଲେ ଅଳଙ୍କୃତ
ଭାଷା, ହୁଏ ଅଭିହିତ ସାହିତ୍ୟ ଆଖ୍ୟାରେ;
କେ କହେ, ସାହିତ୍ୟ ରସସିକ୍ତ ବାକ୍ୟାବଳୀ;
ଆବର କେହି ବା କହେ, ମହାପୁରୁଷଙ୍କ
ଉଚ୍ଚଭାବ, ଉଚ୍ଚଚିନ୍ତା ସାହିତ୍ୟ କେବଳ ।
ଶେଷେ ଉଠି କାଳିଦାସ ଭଣିଲେ ଏସନ—
ସାହିତ୍ୟ ଜୀବନ୍ତ ଏକ ତେଜସ୍ୱୀ ଦେବତା,
ଭାଷା ତାର ପ୍ରାଣ, ଭାବ ଆତ୍ମା, ରସ ଦେହ,
ଅଳଙ୍କାର ଅଳଙ୍କାର ତୁଲ୍ୟ । ସେ ଦେବତା
ସଙ୍ଗେ ମାନବର ନିତ୍ୟ ଅଚ୍ଛେଦ୍ୟ ସମ୍ପର୍କ,
ଏମନ୍ତ କି, ସହାନ୍ତି ସେ ମାନବ ମାତ୍ରର
ପ୍ରତି ନିଃଶ୍ୱାସରେ । ଆଣେ ଯେ ମହାପ୍ରାଣତା
ମାନବ ଜୀବନେ, ଯେହ୍ନୁ ମହାମହୌଷଧ
ନାଶନ୍ତି ନୈରାଶ୍ୟ ଅଉ ଅବସାଦ ରୋଗେ,
ସେ ମହାହିତୈଷୀ'ଧର୍ମେ ସାହିତ୍ୟ ଅଭିଖ୍ୟା ।
'ଏକାଳେ ପ୍ରବେଶି ଏକ ସୁପଣ୍ଡିତ ଦ୍ୱିଜ
ଥୋଇ ଲେଖ ଚକ୍ରବର୍ତ୍ତୀ ବିକ୍ରମ ଛାମୁରେ
ଭଣିଲା ଆଶିଷ ଅନ୍ତେ—ନୃପମୌଳିଟୀକା,

ନିବାସ ବିଦର୍ଭେ ମୋର, ଶୁଣି ତୁମ୍ଭଙ୍କର
ନବରତ୍ନ ସଭାଖ୍ୟାତ, ବିଦ୍ୱଜ୍ଜନମାନ୍ୟ,
ଆଣିଛୁ ଏ ଶ୍ଳୋକ ପାଦେ ପୂରଣ ସକାଶେ ।
ଆଗନ୍ତୁକେ ସମ୍ମାନେ ବସାଇ ଆସନେ,
ସାଗ୍ରହେ ଅର୍ପିଲେ ସେ ଅସମ୍ପୂର୍ଣ୍ଣ ଶ୍ଳୋକେ
ନବରତ୍ନ ସଭାକରେ, ହେଲା ଶ୍ଳୋକ ପାଠ—
"କବି ପକ୍ଷେ କାହାତୁଲ୍ୟ ନୃପେନ୍ଦ୍ରକଟକ ?"
ଲାଗିଲା ସମସ୍ୟାପୂର୍ତ୍ତି କବିକୁଳ ମଧ୍ୟେ,
କେ ବୋଇଲା ଶୂନ୍ୟେ ଗୃହିଁ ଭବ କ୍ଷଣକାଳ,
"ଦରିଦ୍ର ଭାଗ୍ୟରେ ଯଥା ସଂପ୍ରାପ୍ତି କନକ ।"
କେ ଭଣିଲା ଇତସ୍ତତଃ ହୋଇ ବାରମ୍ବାର,
"ଆତୁର ଚାତକ ତୁଣ୍ଡେ ଯଥା ଘନୋଦକ ।"
କେହୁ ଅବା ପୂର୍ତ୍ତି କଲା ଗର୍ବରେ ଉଚାଟ,
"ବସନ୍ତ ଲଭିଲା ଯେହ୍ନେ ମ୍ରିୟ ମଣିବକ ।"
ପରିଶେଷେ କାଳିଦାସ କହିଲେ ଏସନ—
"ଶେଷ ପଦାଦ୍ୟରେ ଲେଖ ଅନୁସ୍ୱାର ଏକ ।" ※
ଶୁଣି ଆଗନ୍ତୁକ ଦ୍ୱିଜ ଲଭି ମହାମୋଦ,
କହିଲା ଧନ୍ୟ ହେ ତୁମ୍ଭେ କବି କାଳିଦାସ,

---

※ ଶେଷ ପଦ "କଟକ"ର ଆଦ୍ୟବର୍ଣ୍ଣରେ ଅନୁସ୍ୱାର ଯୋଗ କଲେ "କଣ୍ଟ
ହେଲା, ଅର୍ଥାତ୍ କବି ପକ୍ଷରେ ନୃପ-ଇନ୍ଦ୍ର କଣ୍ଟକ ତୁଲ୍ୟ, ଏହାହିଁ ଭାବାର୍ଥ ।

( କବୀନ୍ଦ୍ର-କଣ୍ଠ-ଭୂଷା-ସ୍ୱର୍ଣ୍ଣ ପାରିଜାତ )
କବିତ୍ୱ ଭଙ୍ଗିରେ ଦେଲ ପ୍ରଶ୍ନର ଉତ୍ତର,
ଧନ୍ୟ ହେ ବିକ୍ରମାଦିତ୍ୟ, ସାହିତ୍ୟସମ୍ରାଟ,
ସାଧୁ ତୁମ୍ଭେ, ଧନ୍ୟ ତବ ରତ୍ନଗର୍ଭା ସଭା,
ଶୁଣିଥିଲି ଏତେ କାଳ ଯାହା ଲୋକମୁଖେ,
କଲି ମୁଁ ପ୍ରତ୍ୟକ୍ଷ ଆଜି ବହୁ ଗୁଣ ତାର,
ରାଜକୁଳେ ତୁମ୍ଭେ ସୁଖୀ, ମହାଭାଗ୍ୟଧର,
ଚିର ହାହାକାରମୟ ନରଜୀବନରେ
ସତ୍ୟପୂର୍ଣ୍ଣ ନିତ୍ୟ ସୁଖ କେବଳ ଯୋଗାଏ,
କାବ୍ୟରସ-ସୁଧା ପାନ, ସଜ୍ଜନ ଆଳାପ,
ସୌଭାଗ୍ୟରୁ ବେନ ସୁଖ ସୁଲଭ ତୁମ୍ଭର ।
ତୁମ୍ଭେ ନବରତ୍ନାଶ୍ରୟ, ମଳୟାଦ୍ରି ବିନା
କେ ବୁଝିବ ଏ ସୁରଭି ଚନ୍ଦନ ଗୌରବ,
କେବା ପୁଣି ହୃଦେ ଠାବ, ପୋଷିବ ଶୋଣିତେ ?
ଧନ୍ୟ ତବ ମହାସଭା, ବିଶ୍ୱଜ୍ଞାନଗର୍ଭା,
ଏକା ଏ ଭାରତେ ନୁହେଁ, କରୁଛି ଏ ସଭା
ଜଗତେ ଉଜ୍ଜ୍ୱଳ, ଜାଳି ମାଣିକ୍ୟ-ଦୀପ୍ତି,
ସତ୍ୟ ସାହିତ୍ୟ ଆଲୋଚନା ହୁଏ ଯହିଁ ନିତି,
ପ୍ରତ୍ୟକ୍ଷ ବାରସ୍ୱତୀ * ସେ, ପୁଣ୍ୟରେଣୁ ତାର

---

* ବୈକୁଣ୍ଠ ।

ଅମର-ବାଞ୍ଛିତ ; ସ୍ୱର୍ଣ୍ଣ-ଶାନ୍ତିନିଳୟ ସେ
ଜଞ୍ଜାଳଝଟିକାପୂର୍ଣ୍ଣ ଅଶାନ୍ତ ସଂସାରେ,
ଥାଇ ଆଜ କ୍ଷୁଧା ତୃଷା କରେ ସେ ହରଣ ।
କି ଅବା ବର୍ଣ୍ଣିବ କାଳିଦାସଙ୍କ ମହିମା,
ଯାହାଙ୍କ ଲେଖନୀରୂପ ହିମାଦ୍ରି କନ୍ଦରୁ
ବହେ କାବ୍ୟାମୃତ-ଗଙ୍ଗା ସହସ୍ର ପ୍ରବାହେ,
ଅଶୁଷ୍କ ସେ ମହାଗଙ୍ଗା, ଚିର ପୂର୍ଣ୍ଣନୀର,
ବାରିଧି ଶୋଷଣେ କ୍ଷମ ମହର୍ଷି ଅଗସ୍ତ୍ୟ,
ମାନ ଶତ ଅଗସ୍ତ୍ୟର ସୁତୀବ୍ର ଶୋଷଣେ
ହେବ ନାହିଁ ତେବେ ଶୁଷ୍କ ସେ ଗଙ୍ଗା କଦାପି,
ପ୍ରତ୍ୟୁତ ଶୋଷିବ ଯେତେ, ତହୁଁ ବହୁ ଗୁଣେ
ଉଠିବ ସେ କୂଳଙ୍କଷା ବନ୍ୟାରେ ଉଛୁଳି ।
ପ୍ରତ୍ୟୁତ୍ପନ୍ନମତିତ୍ୱରେ, କବିତ୍ୱେ, ପାଣ୍ଡିତ୍ୟେ
କିଏ କାଳିଦାସ ସରି, ବର୍ତ୍ତମାନ ତେଜି
ଖୋଜିଲେ ଭବିଷ୍ୟେ, ଜଣେ ନ ମିଳିବ ଆନ,
କଳିରେ ସେ ଅଦ୍ୱିତୀୟ ମହାକବି, ନୁହେ
ଅତ୍ୟୁକ୍ତି ଏ କଥା କେବେ, ତାଙ୍କ ତୁଳନାରେ
ଆନ କବି ଛନ୍ଦ ପାଶେ ଶିଳୀନ୍ଧ୍ର * ସମାନ ।

---

* ଛତୁ ।

ପ୍ରତ୍ୟହ ଏରୂପେ କେତେ ସାହିତ୍ୟସମସ୍ୟା
ଧର୍ମନୀତି, ରାଜନୀତି, ସମାଜନୀତିର
ଗୂଢ଼ତତ୍ତ୍ୱ ସେ ସ୍ଥାନରେ ହୁଏ ମୀମାଂସିତ
ଦେଶାଦେଶାନ୍ତରୁ ଆସି, ସ୍ଥୂଳତଃ ସେ ସଭା
ମହୀରେ ଆଦର୍ଶ ମହାବିଶ୍ୱବିଦ୍ୟାଳୟ,
ଚିର ସ୍ଥିର ଯାହା ଯୋଗୁଁ ଭାରତର ଆଣି,
ଯା ଯୋଗୁଁ ଭାରତମାତା ଜଗତର ରାଣୀ,
ବିଶ୍ୱପ୍ରପୂଜିତା, ନିତ୍ୟ ଗୌରବଗର୍ବିତା,
ଅନନ୍ତ ଉନ୍ନତିମୟ ଜାତୀୟ ଜୀବନ
କଲା ଗଠନ ସେ ସଭା, ତେଣୁ ତାଂହା ନାମ
ହୋଇଅଛି ଅଗ୍ରସ୍ୟୂତ ମୁଖପତ୍ର ରୂପେ
ଆର୍ଯ୍ୟଜାତି ସଭ୍ୟତାର ଅମରେତିହାସେ ।

ପ୍ରଜା ପାଇଁ ଅବାରିତ ସମ୍ରାଟଙ୍କ ଦ୍ୱାର,
ଶୁଣିବାକୁ ପ୍ରଜାଙ୍କର ହାରି ବା ଗୁହାରି,
ନ ଥିଲା ତାଙ୍କର କାଳ ନିର୍ଦ୍ଦିଷ୍ଟ ସ୍ୱତନ୍ତ୍ର,
ବେଳନିର୍ବିଶେଷେ ଯାଇ ସମ୍ମୁଖରେ ସକଳେ
ନିବେଦି ସ୍ୱ ଅଭିଯୋଗ, ଲଭୁଥିଲେ ତାର
ଯଥାଯୋଗ୍ୟ ପ୍ରତିକାର ନିର୍ବିଘ୍ନେ ତକ୍ଷଣେ,
'କ ବାଳକ, ବୃଦ୍ଧ ପ୍ରବୀଣ, ପ୍ରବଳ ଦୁର୍ବଳ,
ସମସ୍ତଙ୍କ ଆବେଦନ ହୁଏ ସମଭାବେ
ତପନା, ହୁଏ ବିଚାରିତ ଅପକ୍ଷପାତରେ ।

ରାଜକର୍ମଚାରୀ ହସ୍ତେ ଲାଞ୍ଛିତ, ପୀଡ଼ିତ
ନ ହେବେ ପ୍ରଜାଏ ଯହିଁ ଭ୍ରମେ ବା ସଜ୍ଞାନେ,
କରିଥିଲେ ସେଏ ତାର ବିହିତ ବିଧାନ ।
ନ ହୋଇ ସେବକ ମତେ ଗ୍ଳାନ ବଙ୍କିମ,
ପ୍ରାକୃତ ନୃପତି ପ୍ରାୟ, କରୁଥିଲେ ତାଙ୍କୁ
ଗ୍ଳାନ ସ୍ୱକାର୍ଯ୍ୟ ମତେ ସତର୍କେ ସତତ ।
ଅପରାଧୀ କର୍ମଚାରୀ ଦଣ୍ଡଭୋଗ ପରେ
ହେଉଥିଲା ରାଜକାର୍ଯ୍ୟେ ପୁଣି ନିୟୋଜିତ,
କ୍ଷଣେମାତ୍ର ରୁଦ୍ଧ କରି ଚିତ୍ତମାର ବେଗ,
ପରକ୍ଷଣେ ଧରେ ତାକୁ ହୃଦେ ଦୀନନାଥ ।
ପୁତ୍ରର ମଙ୍ଗଳ ଲାଗି ଦଣ୍ଡ ଅର୍ପେ ପିତା,
ମାତ୍ର ଲହମାକ * ପରେ ଦେଉଛି ତାହାକୁ
ଭୁଞ୍ଜାଏ ସୁଖାଦ୍ୟ ଆଣି, ଏହା ପ୍ରାକୃତିକ ।
ପିତାର ଯଦ୍ରୂପ ଅଛି ଶାସନକ୍ଷମତା,
ଗୁରୁତମ ତହୁଁ ବଳି ପାଳନଦାୟିତ୍ୱ,
ନୁହେ ତ ଅଜ୍ଞାତ, ଏହା ଆଦର୍ଶ ପିତାର ।
କର୍ମଯୋଗୀ ବଙ୍କିମଙ୍କ ମାହାତ୍ମ୍ୟ ଅତୁଳ
ଅଗାଧ, ବର୍ଣ୍ଣନାତୀତ, ବର୍ଣ୍ଣିଲେ ତାହାଙ୍କୁ
ଆଦର୍ଶ ନୃପତି ବୋଲି, ନ ହେବ ତାଙ୍କର

---

* ମୁହୂର୍ତ୍ତେକ ।

ପ୍ରଥଭର ଅନୁରୂପ ଅର୍ଥପ୍ରାଣ ଭାଷା,
ଆଦର୍ଶର ମହାଦର୍ଶ କହିଲେ ତଥାପି
ପୂର୍ଣ୍ଣାଂଶରେ ହେବ ନାହିଁ ଉପମା ସଙ୍ଗତ ।
ଝନମଙ୍କ ପରି ରାଜା, ଭାରତ ଭାଗ୍ୟରେ
ବର୍ଦ୍ଧିତ ଅତିରିକ୍ତ ମହାଦାନ ସିନା,
ପ୍ରକୃତର ମହାକାର୍ଯ୍ୟ ସଂସାଧନପାଇଁ
ସବୁ ଯୁଗେ ଧରାଧାମେ ହୁଅନ୍ତି ପ୍ରେରିତ
ବିଶିଷ୍ଟ ମହାତ୍ମାଙ୍କର ଐଶୀ ଶକ୍ତି ରୂପେ,
ମାତ୍ର ଜନମଙ୍କ ପରି ପୂର୍ଣ୍ଣ କଳାଧାରୀ
ଯାତ୍ର ଶକ୍ତି ଅବତାର ଆସନ୍ତି କ୍ୱଚିତ ।
ଯଶୋନିଧି ଜନମାର୍କ, ପ୍ରକୃତ ଦେଶର
ପ୍ରଶସ୍ତିବର୍ଦ୍ଧନଦକ୍ଷ ଆଦର୍ଶ ବଲ୍ଲଭ,
ଆଦର୍ଶ ସୋଦର, ପୁତ୍ର, ମିତ୍ର, ଭୃତ୍ୟ ଆଦି ।
ପ୍ରକୃତର ପୁରୋହିତ, ପ୍ରକୃତର ପ୍ରାଣ,
ପ୍ରକୃତି ତାଙ୍କର ପ୍ରାଣ, ତାହାଙ୍କ ସଦ୍ଗୁଣ
ପ୍ରକୃତର ମହାଗୁରୁ ପୁଣି ମହାଶିଷ୍ୟ
ସେହି ଏକା । ଭକ୍ତିଯୁକ୍ତ ଥିଲେ ସିନା ଭାରତୀୟେ
ସଂକଳ୍ପରେ ରାମଯୁଗ ସୁଖ ରାମାୟଣେ,
ମାତ୍ର ତା ଜନମଯୁଗେ ଭୋଗିଲେ ଦେହକେ,
ସଂକଳ୍ପର ମନ୍ତ୍ର ହେଲା ସତ୍ୟ ରସଗୋଲ୍ଲ । ❋

---

❋ ଗ୍ରନ୍ଥାବଶେଷ ·

ହୋଇଥିଲା ମଧ୍ୟବର୍ତ୍ତୀ କାଳେ ଶୈବଳିତ
କାଳୀୟ ଉନ୍ନତ-ସରଃ, ଫୁଟାଇଲେ ତହିଁ
ସ୍ୱପ୍ନସ୍ୱର୍ଣ୍ଣ ଶତଦଳ ଅବନ୍ତୀ-ନାୟକ ।
ଉନ୍ନତର ବୈଦ୍ୟୁତିକ ତୀବ୍ର ଉତ୍ତେଜନା
ବହିଲା ଏ ଭାରତର ନିଃଶ୍ୱାସ-ପବନେ,
ଉଠିଲାକ ଚେଇଁ ସୁପ୍ତ ନର୍ଦ୍ଦୋଷ ସଭ୍ୟତା ।
ନହିଲେ ସେ ଭାରତର ମନୀଷା-ମୁକୁଟେ
ମହାର୍ଘ-ମହିମା-ମଣି, ସେ ମଣି ସମୀପେ
ପରାସ୍ତ ଦୁରନ୍ତକାଳ-ଧ୍ୱଂସ-ପଟୁ-ହସ୍ତ,
ଏ ଭାରତ-କଳ୍ପଦ୍ରୁମ ଚିର ଫଳବାନ,
ଗୁଣୀପଣେ ତା ମୂଳେ ସେ ଦେଲେ କାଠପାଣି *
ଚିର ଚନ୍ଦ୍ରାଗାର ସିଏ, ଘେରିଥିଲା ତାଙ୍କୁ
ନିତ୍ୟ ନବ ନବ କର୍ମ, ନଗାନ ଚନ୍ଦ୍ରାର
ଆଶାମୟ ଅବଚ୍ଛିନ୍ନନୀରବ ଆହ୍ୱାନ,
ପ୍ରସ୍ତୁତ ସତତ ଯଥା ଆତ୍ମଦାନପାଇଁ
ଥାଏଫଳ, ତଥା ନୃପ ସଦା ପ୍ରତୀକ୍ଷିତ
ଅର୍ପିବାକୁ କର୍ମପଦେ ନିଜକୁ ସର୍ବଥା,
ଖୋଜୁଥାନ୍ତି କର୍ମ ପୁଣି କର୍ମେ ଲିପ୍ତ ଥାଇ ।
ତାଙ୍କ ମହାଜୀବନର ପ୍ରତି ଦଣ୍ଡ ଲତା,
ବିଶ୍ୱର କଲ୍ୟାଣମୟ ବିଧାନରେ ଭରା,

* ଫଳପାଣି । ଅର୍ଥାତ ମନ୍ତ୍ରୀପାଣି ଗଛ ମୂଳରେ ଦେଲେ ଫଳ ଅଧିକ ହୁଏ ।

ପ୍ରଭୁତା-ମଦର ନଶା ଥିଲା ନାହିଁ ପାଇ
ଆଣି ତାହାଙ୍କର ପ୍ରାଣେ କ୍ଷଣିକ ସକାଶେ
ସମୁଦ୍‌ଭ୍ରାନ୍ତ ଅନାସ୍ୱାଦ ବ୍ୟାକୁଳ ବାସନା,
ଅବା ଦୁରାକାଙ୍କ୍ଷାବିଷ ଉଗ୍ର ଉନ୍ମାଦନା,
ନ ଥିଲା କୋଷ୍ଠୀରେ ତାଙ୍କ ଦୁର୍ବଳ-ଦଳନ ।

କ୍ରମେ କ୍ରମେ ରାଜଅଙ୍ଗେ ଆକ୍ରମିଲା ଜରା,
(ଜୀବନ-ଭାରତ ଗ୍ରନ୍ଥେ ଶାନ୍ତିପର୍ବରୂପା)
ମାତ୍ର ଭସ୍ମେ ନ ପାରିଲା ପଶି ମନକଥ,
ଦେବେ ଯଦ ଛୁଇଁ ଥାନ୍ତା ତାକୁ, 'କଷ୍ଟେ ତେବେ
ପଡ଼ିଥାନ୍ତା ଦୁଷ୍ଟା ଆପେ ଆପଣା କବଳେ,
ବୃକ୍ଷର ପଳଶେ ‡ ସିନା ମାଟିକରେ ଉଭ
ମାତ୍ର ତାର କିବା ସାଧ୍ୟ ସ୍ପର୍ଶିବ ମସ୍ତକୁ ?
ବୟୋଧର୍ମେ ହୋଇଗଲେ ଇନ୍ଦ୍ରିୟେ ନିସ୍ତେଜ,
କିନ୍ତୁ ଚିତ୍ତବୃତ୍ତି କେବେ ନୋହିଲା ମଳିନ,
ସୁକର୍ମର କର୍ମଲିପ୍ସା ଅଜର, ଅମର ।
ସନ୍ତୋଷାନ୍ତେ ସମ ଧୈର୍ଯ୍ୟେ ଶାସି ବସୁନ୍ଧରା
ଦୀର୍ଘ ଶତବର୍ଷ କାଳ ସୁଖରୁ ଶାସନେ,
ଉପସ୍ଥିତ ବନମାର୍ଗ ଜୀବନ-ସାୟାହ୍ନେ,
ଶୁଣି ଅନୁକ୍ଷଣ ରାଏ ମାନସ-ଶ୍ରବଣେ

‡ ଢଳ,ଢଳ ।

କେଉଁ ଅବଗସ୍ତ ରାଜ୍ୟ ଅମୃତ ଆହ୍ୱାନ
ଶୁଣିଲେ ଏମନ—ନୁହେ ପରାଜସ୍ମି କେବେ
ଭୋଗଦ୍ୱାରା ରୋଗେ, ହୁଏ ତ୍ୟାଗଦ୍ୱାରା ତାହା,
ଇନ୍ଧନେ ଅନଳ କାହିଁ ଲଭଇ ନିର୍ବାଣ,
କାମ୍ୟ ନୀର ସେବେ † ଭୂମି ଲଭଇ ଶୁଷ୍କତା-
ଭୁଞ୍ଜାଇଲେ ଯେତେ ଆଣି ରୋଗୀକୁ କୁପଥ୍ୟ,
ତେତେକ ବଢ଼ିବ ହିନା ରୋଗର ଯନ୍ତ୍ରଣା ।
ଯୌବନ-ବସନ୍ତ ଗତ, ଉପସ୍ଥିତ ଏବେ
ବାର୍ଦ୍ଧକ୍ୟ-ନିଦାଘ, ଉଗ୍ର ବ୍ୟାଘ୍ର ପ୍ରାୟ ଦେହ
ଶୋଷିଲା ସେ ଜନ୍ତୁ, ତୀବ୍ର ଶୋଷଣ କୌଶଳୀ,
ବିକୃତ ବୀଭତ୍ସ ବେଶ ଆଣିଦେଲା ଜରା,
ଉଡ଼ିଲା ଶୁକ୍ଲିମା କେଶ, ଗଲା ଦନ୍ତ ଝଡ଼ି,
ଅସ୍ପଷ୍ଟ, ଅସ୍ପଷ୍ଟ ହେଲା ଶବ୍ଦ ଉଚ୍ଚାରଣ,
ହୁଏ ଶ୍ଳେଷ୍ମା ବହିର୍ଗତ ନବଦ୍ୱାର ପଥେ,
ଜୀବନ୍ତ ନରକ ଭୋଗ ଏହା ବିନା ପ୍ରାଣେ ।
କିନ୍ତୁ କି ଆଶ୍ଚର୍ଯ୍ୟ, ଅହୋ, ସଂସାରକୁହକ,
ତେବେ ଝୁଣ୍ଟା କହେ ଆଶା, ଅଳି ଯଥା ଫୁଲ-
କର୍ଣ୍ଣମୂଳେ—ସଦା ଶ୍ରୁତି-ଶୀତଳ ବାଣୀରେ
କେଉଁ ମାୟା ଭୁବନର ଅଳୀକ ବାରତା —
କେଉଣ ଅସତ୍ୟ ସ୍ୱର୍ଗ ସ୍ୱପନ କାହାଣୀ !

---

† ଗ୍ରୀଷ୍ମକାଳେ ।

ହୋଇ ତା ମୋହନ ମନ୍ତ୍ରେ ଆବାଲ୍ୟ ଦୀକ୍ଷିତ,
ସେବି ତା ଅତୃପ୍ତ ପଦ ପଡ଼ିଲିଣି ଥକି,
ଶାନ୍ତ ଶ୍ରାନ୍ତ ଲୋଡ଼େ ଏବେ ଲିପ୍ସ ଜୀର୍ଣ୍ଣ ତନୁ
ପ୍ରାପ୍ତ ହେଲେ ଅବସର, ମୃତ୍ୟୁ ପ୍ରତୀକ୍ଷାର
କରିବି ମୁଁ ପାରତ୍ରିକ ପାଥେୟ ସଂଗ୍ରହ ।
ବିଶେଷତଃ ଏ ଜୀବନ ଚିର ଢଳଢଳ
ପଦ୍ମପତ୍ରେ ଜଳବିନ୍ଦୁ ପ୍ରାୟ, ଗଡ଼ି ପଡ଼ି
ଏହିକ୍ଷଣି ମିଶି ପାରେ ଅନନ୍ତ ସଲିଳେ,
ନିୟତିର ପ୍ରତିକୂଳ ବାତବିତାଡ଼ନେ,
କି ବିଶ୍ୱାସ ତାକୁ ? ଅତଃ ଜୀବନସଂଗ୍ରାମେ
ସନ୍ଧି ସଂସ୍ଥାପନେ ନୁହେ ଔଦାସ୍ୟ କର୍ତ୍ତବ୍ୟ ।
ଜୀବନ ଦିନାନ୍ତ କାଳ † ଉପସ୍ଥିତ ଆସି,
ହେବ ଏବେ ଅନ୍ଧକାର, ବେଳ ଗତପ୍ରାୟ,
ଗନ୍ତବ୍ୟ ସୁଦୀର୍ଘ ପଥ, ଥାଉଁ ଥାଉଁ ନଭେ
କ୍ଷୀଣ ସନ୍ଧ୍ୟାଲୋକ ପଥ ଧରିବା ଉଚିତ ।
ଏହା ଭାବି ବିକ୍ରମାର୍କ ଶୁଭ ମୁହୂର୍ତ୍ତରେ
ସ୍ୱପୁତ୍ର "କୁମାର ଗୁପ୍ତେ" ଅର୍ପି ରାଜ୍ୟଭାର
ହେଲେ ଚିରଦିନପାଇଁ ବିଷୟୁ ଅନ୍ତର,
ପୂର୍ଣ୍ଣିମା ଦିନାନ୍ତେ ଛବି ଧରିଲା ଅବନ୍ତୀ
ଗଗନେ ପ୍ରାଚୀନ ରବି ହେଲେ ଅସ୍ତମିତ,

---

† ସନ୍ଧ୍ୟା

ନବ ପୂର୍ଣ୍ଣ ଇନ୍ଦୁ ଉଇଁ ରଞ୍ଜିଲେ ଧରଣୀ ।
ରାଜର୍ଷି ବିକ୍ରମାଦିତ୍ୟ ତେଜି ରାଜଭୋଗ
ରତ ହେଲେ ଯୋଗେ, ପିନ୍ଧି ଗୈରିକବସନ,
ମହାଧର୍ମନିଷ୍ଠ ରାଏ, ପୁଣ୍ୟର ଦାୟାଦ,
ସାଧି ସୁକଠୋର ଯୋଗ ଏକାଗ୍ରତା ସହ,
ଯଥାକାଳେ ଦିବ୍ୟଲୋକେ କଲେକ ପ୍ରୟାଣ,
ଏକମାତ୍ର ପାରିଜାତ ଭାରତ ନନ୍ଦନୁ
ପଡ଼ିଲା ମଉଳି ଝଡ଼ି, ଏକ ମହାରବି,
ହୋଇଗଲେ ଅସ୍ତ କାଳ-ଅସ୍ତାଦ୍ରିଶିଖରେ ।

ଚଳିଲେ ମର୍ତ୍ତ୍ୟରୁ ହାୟ ସେ ମର୍ତ୍ତ୍ୟ-ମଘବା,
ଯାଙ୍କ ତିରୋଧାନେ ହୁଏ ଜଗତର କ୍ଷତି,
ତାହାଙ୍କୁ ଈର୍ଷାନ୍ଧୁ ଦାନେ ପ୍ରାୟଶଃ କୃପଣ
ଧାତା, ନତୁ କି ହୁଅନ୍ତେ ଅସ୍ତ ଶାକ୍ୟସିଂହ,
ଚୈତନ୍ୟାଦି ସତ୍ୟଧର୍ମ ସଂସ୍ଥାପକଗଣ
ଅକାଳେ, ବଧିର ମହାକଠୋର ଆହ୍ୱାନେ ?
ଯାଇଛ ବିକ୍ରମାଦିତ୍ୟ, ମାତ୍ର ଏ ଭାରତେ
କରିଗଲ ଯେଉଁ ମହା ନବଶକ୍ତି ଦାନ,
ସେହି ଶକ୍ତିବଳେ, ହେଉପଛେ ଯେଡ଼େ କ୍ଷୀଣ
କଙ୍କାଳାବଶିଷ୍ଟ, ଯୁଗଚକ୍ର ଆବର୍ତ୍ତନେ
ଜାତୀୟେତିହାସ ଥିବ ପ୍ରାଣବନ୍ତ ସଦା ।

କେବଣ ଅଜ୍ଞାତ ଦେଶୁ ଆଣି କ କୌଶଳେ
ଜ୍ୟୋତିର୍ମୟ ପ୍ରଭାତର ଆନନ୍ଦ-ଆଲୋକ
ଧୋଇଦେଲ ଉର୍ଜ୍ଜସ୍ୱଳ, ଭାରତ-ଲଲାଟ ?
ନିଦାଘ ନିଶାନ୍ତେ ଯଥା ଶୀତଳ ପବନ
ଅଦୃଶ୍ୟରେ ଲେପି ଦେଇ ଆଶୀର୍ବାଦ-ଲେପ
ରୌଦ୍ରତପ୍ତ ସୃଷ୍ଟିଶିରେ, ପ୍ରଦାନେ ତା ପ୍ରାଣେ
ନବାନନ୍ଦ, ତଥା ତୁମ୍ଭେ କଲ ଏ ଭାରତେ,
ଉଠାଇ ତୁମ୍ଭେ ହେ ଦେବ ସ୍ୱର୍ଗେ ଏ ଭାରତେ
ଆଣିଲ ଭାରତେ ସ୍ୱର୍ଗ । ଦୈନିକ ଜୀବନେ
ଭାରତର ପ୍ରତିଷ୍ଠିଲ ଯେଉଁ ଉଚ୍ଚାଦର୍ଶ
ସତ୍ୟ ଶିବ ସୁନ୍ଦରର, ବର୍ଣ୍ଣିବାକୁ ତାହା
କାହିଁ ବାଣୀଭଣ୍ଡାରରେ ତୁଲ୍ୟମୂଲ୍ୟ ଭାଷା ?
କରୁଥିଲ ମାତୃଭୂମି ଅଶ୍ରୁ ମୋଚନ
ଜୀବିତେ, ମରଣେ ମାଙ୍କ ଲୁଚିଲ ତା ବକ୍ଷେ
ଅଭ୍ରବର ଦୁର୍ବିସହ ତୁଙ୍ଗ ହିମାଙ୍କସ୍ଥ,
ଧରେ ଯେ ଅବ୍ୟକ୍ତଗତ ଜୀବନ ମହୀରେ,
ପୁଣି ଯେ ଶାନ୍ତିକୁ ଭଙ୍ଗି ସେହି ଉପଦାନେ
କରି ପାରେ ମନୋମତ ନୂତନ ସର୍ଜ୍ଜନା,
ତାହାର ଅଭାବେ ମଣେ ଜଗତ ଅଭାବ ।

ଯେତେକାଳ ଥିବ ସୃଷ୍ଟି, ଥିବ ଏ ଭାରତ,
ତେତେଦିନଯାଏ ଦେବ, ଭାରତବାସିଏ
ପୂଜିବେ ତୁମ୍ଭଙ୍କୁ ନତ ଅର୍ପି ତବ ପଦେ
ସ୍ମୃତି-ସ୍ୱର୍ଣ୍ଣ-ପାରିଜାତ— ଶୁଦ୍ଧ ଅଶ୍ରୁ ଧାରେ ।




Printed by B. S. Das. at the Mukur Press, Cuttack—1925.

## କବିବର ଶ୍ରୀଯୁକ୍ତ ଚିନ୍ତାମଣି ମହାନ୍ତି ମହୋଦୟଙ୍କ ପ୍ରଣୀତ ।

ନିମ୍ନଲିଖିତ ପୁସ୍ତକମାନ କଟକର ପ୍ରଧାନ ପୁସ୍ତକାଳୟମାନଙ୍କରେ
ଏବଂ ନିମ୍ନଠିକଣାରେ ବିକ୍ରୀତ ହୁଏ ।



### ପୌରାଣିକ ଓ ଐତିହାସିକ କାବ୍ୟ :—

| | |
|---|---|
| ଶ୍ରୀ ମୁକୁନ୍ଦଦେବ | ଟ ୲୧ |
| ଜନମାଦତ୍ୟ (ଦ୍ୱିତୀୟସଂସ୍କରଣ) | ଟ ୧୪ |
| ସୁଭଦ୍ରା କାବ୍ୟ | ଟ ୧୪ |
| ସପ୍ତରଥୀ | ଟ ୦୪ |
| ଶିଶୁପାଳ ବଧ | ଟ ୦୪ |
| ସୁରଙ୍ଗୀ କାବ୍ୟ | ଟ ୦୳ |
| ଆର୍ଯ୍ୟବାଳା | ଟ ୦।/ |
| ଭାରତ-ଲଳନା | ଟ ୦। |
| ସପ୍ତସତୀ | ଟ ୦। |

### କାଳ୍ପନିକ କାବ୍ୟ :—

| | |
|---|---|
| ଜଣ୍ଣୁଚନ୍ଦ | ଟ ୧୧ |
| ତ୍ରିଣସ୍ଥ-ଚଟାଇ | ଟ ୦୳ |
| କଳ୍ପଲତା | ଟ ୦୪/ |
| ଉତ୍କଳ-କମଳା | ଟ ୦।୷/ |
| ପ୍ରତଲେଖ | ଟ ୦।/ |
| ଶଶୀପ୍ରଭା | ଟ ୦। |

### ବର୍ଣ୍ଣନାତ୍ମକ କାବ୍ୟ :—

| | |
|---|---|
| ମହେନ୍ଦ୍ର (ସଚିତ୍ର) | ଟ ୦୳ |
| ମହୋଦଧି | ଟ ୦୪ |
| ହିନ୍ଦୁରାଜ | ଟ ୦। |
| ସାଳନ୍ଦୀ-(ଦ୍ୱିତୀୟସଂସ୍କରଣ) | ଟ ୦୷/ |
| ମେଘାସନ | ଟ ୦୷/ |
| ଉଦ୍ୟାନ ଖଣ୍ଡ-(ଦ୍ୱିତୀୟସଂସ୍କରଣ) | ଟ ୦୷/ |
| ସମାଧିକ୍ଷେତ୍ର | ଟ ୦/୬ |

### ଉପନ୍ୟାସ :—

| | |
|---|---|
| ଟଙ୍କାଗଛ | ଟ ୧। |
| ରୂପାଚୂଡ଼ି | ଟ ୧୧ |
| ଯୁଗଳମଠ | ଟ ୦୪ |
| ବୁଲାଫକୀର | ଟ ୦।୵ |
| ପ୍ରତିଶୋଧ | ଟ ୦।/ |
| ଶନସପ୍ତା- (ଯନ୍ତ୍ରସ୍ଥ) | |
| ଯୋଗଚଦ୍ୟା- (ଯନ୍ତ୍ରସ୍ଥ) | |

### ଗଦ୍ୟସାହିତ୍ୟ :—

| | |
|---|---|
| ଉତ୍କଳ-ଭ୍ରମଣ | ଟ ୦୪ |

ପୁଣ୍ୟପୀଠ ଟ ୦।୵
ସଂଯମଶିକ୍ଷା-(ଦ୍ୱିତୀୟସଂସ୍କରଣ) ଟ ୦।/
ବିବିଧଚିନ୍ତା ଟ ୦ ୪

## ଖଣ୍ଡକବିତା :—

ପଦ୍ମପୁଷ୍ପ ଟ ୧।
ସାନ୍ଧ୍ୟତାରା ଟ ୦ ୪୵
ବଣମାଳତୀ(ଦ୍ୱିତୀୟସଂସ୍କରଣ) ଟ ୦।
ତୀର୍ଥବାରି ଟ ୦।
କଳ୍ପନାକୁଞ୍ଜ ଟ ୦୵
ଫୁଲଡାଲି ଟ ୦୵
ଶତଦଳ- (୨ୟ ସଂସ୍କରଣ) ଟ ୦ ୵
ସଜଭକ୍ତ (୨ୟ ସଂସ୍କରଣ) ଟ ୦ ୵
କୈବଲ୍ୟ-କଣିକା ଟ ୦ ୵
ଜନନୀ (୨ୟ ସଂସ୍କରଣ) ଟ ୦/

## ବିବିଧ ପୁସ୍ତକ :—

ମଧୁଚକ୍ର ଟ ୦ ୵
ସମୁଦ୍ରଯାତ୍ରା ଟ ୦ ୵
ପାଚକ-(ରନ୍ଧନଶିକ୍ଷା) ଟ ୦ ୵
ନାମ ମାହାତ୍ମ୍ୟ ଟ ୦ /୬
ପ୍ରକୃତିପେଟିକା ଟ ୦ /୬
ଧର୍ମକାଟଦର୍ଶନ ଟ ୦ /
ମୋହିନୀ ଟ ୦ /
ନୀତିକୁସୁମ ଟ ୦ /

## କୃଷି ପୁସ୍ତକ :—

ଚେରଚଣାଚାଷ-(୨ୟ ସଂସ୍କରଣ) ଟ ୦/
କଦଳୀଚାଷ „ ଟ ୦ /
ତମାଖୁଚାଷ „ ଟ ୦ /
ହଳଦୀଚାଷ „ ଟ ୦ /
ଶିଳାଆଳୁଚାଷ „ ଟ ୦ /
ପଟୋଳ ଚାଷ „ ଟ ୦ /
କପାଚାଷ „ ଟ ୦ /
ମାଣ୍ଡିଆଚାଷ „ ଟ ୦ /

### କଟକ ଠିକଣା :—

କଟକ ଟ୍ରେଡିଂ କୋମ୍ପାନୀ —କଟକ।
ଶ୍ରୀରାଧାକୃଷ୍ଣବସୁ ପୁସ୍ତକାଳୟ—କଟକ।
ମୁକୁର ପୁସ୍ତକାଳୟ —କଟକ।
ଚନ୍ଦ୍ରୋଦୟ ପୁସ୍ତକାଳୟ —କଟକ।

### ପ୍ରାପ୍ତିସ୍ଥାନ :—

ଶ୍ରୀ ସୋମନାଥ ମହାନ୍ତି
ବାଣୀ ସାହିତ୍ୟମନ୍ଦିର
ଭଦ୍ରକ ପୋ:
(ବାଲେଶ୍ୱର ଜିଲ୍ଲା)

ବିଜ୍ଞାପନ ।

ନୂତନ କାବ୍ୟ ଓ ଉପନ୍ୟାସ ।

# ଶ୍ରୀ ମୁକୁନ୍ଦଦେବ ।

ଏହା ଉତ୍କଳ-ସାହିତ୍ୟ ଭଣ୍ଡାରର ମହାନ୍ ମହୋଜ୍ଜ୍ୱଳ, ଗୌରବ ମହାମଣି, କାବ୍ୟ-କଳା କୌଶଳର କୋଣାର୍କମନ୍ଦିର ଏବଂ ଶିକ୍ଷା, ଜ୍ଞାନ, ଉପଦେଶ, ଜାତୀୟତା ଏବଂ ଦେଶାତ୍ମବୋଧର ଦର୍ପଣରତ୍ନ ପ୍ରଦୀପ । ଏଥିରେ ଉତ୍କଳର ଐତିହାସିକ, ଭୌଗୋଳିକ, ନୈତିକ, ସାମାଜିକ ଘଟଣା, ଉତ୍କଳର ଅତୁଳ ଅତୀତର ଗୌରବ, ବିଭବ, ଶୌର୍ଯ୍ୟ, ବୀର୍ଯ୍ୟ, ସମ୍ଭ୍ରମ ଏବଂ ଶିଳ୍ପାଗ୍ରର କାବ୍ୟଚ୍ଛଟାରେ ଆଲଙ୍କାରିକ ଭାଷାରେ ଚିତ୍ରିତ ହୋଇଅଛି । ପ୍ରାକୃତିକ ବର୍ଣ୍ଣନାର ମୋତିମାଣିକ୍ୟ କାବ୍ୟର ପ୍ରତିପତ୍ରରୁ ଝରି ପଡ଼ୁଅଛି । ଅଳ୍ପକଥାରେ ଏ କାବ୍ୟର ପରିଚୟ ଅସମ୍ଭବ । କାବ୍ୟପାଠହିଁ କାବ୍ୟର ପରିଚୟ । ଉତ୍କୃଷ୍ଟ ଆଣ୍ଟିକ କାଗଜରେ ବଡ଼ଅକ୍ଷରରେ ପରିପାଟିରେ ମୁଦ୍ରିତ । ପ୍ରାୟ ତିନିଶତ ପୃଷ୍ଠାବ୍ୟାପୀ ଏହି ପ୍ରକାଣ୍ଡ କାବ୍ୟର ମୂଲ୍ୟ ଦୁଇଟଙ୍କା ମାତ୍ର ।

# ଟଙ୍କାଗଛ ।

ନୂତନ ପ୍ରକାଶିତ ଉପନ୍ୟାସ । ଏହା ଡିଟେକ୍‌ଟିଭ ଗଳ୍ପଠାରୁ ମନୋହର । ଚରିତ୍ର ଚିତ୍ରଗୁଡ଼ିକ ନିପୁଣ ତୂଳିକାରେ ଉଜ୍ଜ୍ୱଳ ସୁନ୍ଦର ରଙ୍ଗରେ ଚିତ୍ରିତ ହୋଇଅଛି । ପାଠକ ପଢ଼ୁ ପଢ଼ୁ କେଉଁଠାରେ ଆଶ୍ଚର୍ଯ୍ୟ ହେବେ, କେଉଁଠାରେ ହସି ଉଠିବେ, କେଉଁଠାରେ କାନ୍ଦି ପକାଇବେ, କେଉଁଠାରେ ବା ଆନନ୍ଦରେ ଗଦ୍‌ଗଦ ହେବେ । ଏହାପରି ଜିନିଷ

ଐନ୍ଦ୍ରଜାଲିକ କୌତୁକରେ ମୁଗ୍ଧ ହେବେ । ପ୍ରାୟ ସାର୍ଦ୍ଧ ଦୁଇଶତପୃଷ୍ଠା ବିଶିଷ୍ଟ ଏହି ବୃହତ୍ ଉପନ୍ୟାସର ମୂଲ୍ୟ ଏକଟଙ୍କା ଚାରିଅଣା ମାତ୍ର ।

## ରୂପାବତୀ ।

ନୂତନ ଓଡ଼ିଆ ଉପନ୍ୟାସ । ଭାଷା, ଭାବ ଓ ଚରିତ୍ର ଚିତ୍ରଣ ସୁନ୍ଦର ଓ ମନୋମୁଗ୍ଧକର । ଉପନ୍ୟାସର ଆମୂଳଚୂଳ ବୈଚିତ୍ର୍ୟମୟ ଏବଂ ମାଧୁର୍ଯ୍ୟମୟ । ୨୧୩ ପୃଷ୍ଠା ବିଶିଷ୍ଟ ଏହି ବୃହତ୍ ଉପାଦେୟ ଉପନ୍ୟାସର ମୂଲ୍ୟ ଏକଟଙ୍କା ମାତ୍ର ।

# ବିକ୍ରମାଦିତ୍ୟ ।

## (ଦ୍ୱିତୀୟ ସଂସ୍କରଣ)

କାବ୍ୟଖଣ୍ଡି ସାହିତ୍ୟଗୌରବରେ ଏବଂ ବାହ୍ୟ ଓ ଆଭ୍ୟନ୍ତରିକ ସୌନ୍ଦର୍ଯ୍ୟସମ୍ପଦରେ ଭରକାନ୍ତ । ସ୍ଥୂଳତଃ ଏହା ସାରସ୍ୱତୋପବନର ଶିଶିରାମୃତସ୍ନାତ ଊଷାରାଗରଞ୍ଜିତ ସ୍ନିଗ୍ଧମଧୁର ହାସ୍ୟୋଜ୍ଜ୍ୱଳ ସୁବର୍ଣ୍ଣ ଚମ୍ପକ । ବର୍ଣ୍ଣନା ସରସ, ସମୁଜ୍ଜ୍ୱଳ, ସଜୀବ ଏବଂ ଆଧୁନିକ ରୁଚିସଙ୍ଗତ । କାବ୍ୟର ଆମୂଳଚୂଳ ନବୀନଭାବ ଏବଂ ନବୀନ ଉପାଦାନରେ ଗଠିତ । ଉତ୍କୃଷ୍ଟ ଆଣ୍ଟିକ କାଗଜରେ ପରିପାଟୀସହ ମୁଦ୍ରିତ । ମୂଲ୍ୟ ଦେଢ଼ଟଙ୍କା ମାତ୍ର ।

## ସୁଭଦ୍ରା କାବ୍ୟ

ଏ ସୁଭଦ୍ରା, ଦେବୀସୁଭଦ୍ରା,—ତପସ୍ୱିନୀସୁଭଦ୍ରା ଏବଂ ଆଦର୍ଶନାରୀ-ସୁଭଦ୍ରା । ଏହି କାବ୍ୟ ମୁକୁରରେ ନାରୀତ୍ୱର ପୂର୍ଣ୍ଣାଦର୍ଶଚିତ୍ର ପ୍ରତିଫଳିତ ହୋଇଅଛି । କାବ୍ୟର ଉପାଦେୟତାର ସାଟୋପବର୍ଣ୍ଣନା ନିଷ୍ପ୍ରୟୋଜନ । ଏକାଦଶ ସର୍ଗବିଶିଷ୍ଟ ଏହି ପ୍ରକାଣ୍ଡ କାବ୍ୟର ମୂଲ୍ୟ ଦେଢ଼ଟଙ୍କା ମାତ୍ର ।

## ପତ୍ର ପୁଷ୍ପ

ଏଥିରେ ୧୧୬ ଗୋଟି ଶିକ୍ଷଣୀୟ କବିତା ଅଛି । କବିତାଗୁଡ଼ିକ କାବ୍ୟୋଦ୍ୟାନରେ ପୁଷ୍ପ । "ପତ୍ରପୁଷ୍ପ"ରେ ଆନନ୍ଦ, କୌତୁକ, ହାସ୍ୟ,

କ୍ରନ୍ଦନ, ଆଶା, ନୈରାଶ୍ୟ, ବିଷାଦ, ଉତ୍ସାହ, ଅନୁତାପ, ସାନ୍ତ୍ୱନା ଏକାଧାରରେ ସନ୍ନିବିଷ୍ଟ । ଅଧିକନ୍ତୁ ବାଣୀନ୍ତ୍ରୀଭଷାର ସ୍ନିଗ୍ଧ ସୁନ୍ଦର ଉଜ୍ଜ୍ୱଳଜ୍ୟୋତି, ଶାରଦପର୍ବରଜନୀର ଢ଼ଳଢ଼ଳ ହାସ୍ୟୋଦ୍ଭବ ଏବଂ ଭକ୍ତି ପ୍ରୀତି ନୀତିର ତରଳର ତ୍ରିବେଣୀଧାରା ଅଛି । ଉତ୍କୃଷ୍ଟ କାଗଜରେ ନୂତନ ଧରଣରେ ମୁଦ୍ରିତ । ମୂଲ୍ୟ ଏକଟଙ୍କା ଚାରିଅଣା ମାତ୍ର ।

## ବିଶ୍ୱଚିତ୍ର

ଉତ୍କଳଭାଷାରେ ଏ ଧରଣର କାବ୍ୟ ଏହି ନୂତନ । ବିଶ୍ୱଚିତ୍ରର ରଚନା, କଳ୍ପନା, ଭାବ, ଅଳଙ୍କାର ସବୁ ନୂତନ । କାବ୍ୟମଧ୍ୟରେ ନୂତନଚିନ୍ତାର ପବିତ୍ରଧାରା ଅପ୍ରତିହତ ଗତିରେ ପ୍ରବାହିତ ହୋଇଅଛି । ବୋଲିବା – ବାହୁଲ୍ୟ—ଏକାବ୍ୟଖଣ୍ଡି ଉତ୍କଳସାହିତ୍ୟଭଣ୍ଡାରକୁ ବୈଚିତ୍ର୍ୟ-ମୟ ନୂତନ ସମ୍ପଦ ଦାନ କରିଅଛି । ଉତ୍କୃଷ୍ଟ ଆଣ୍ଟିକ କାଗଜରେ ମୁଦ୍ରିତ, ମୂଲ୍ୟ ଏକଟଙ୍କା ମାତ୍ର ।

## ପ୍ରଣୟ ଚିତ୍ତାଉ

ଏଥିରେ ସାତଖଣ୍ଡ ପ୍ରଣୟ-ପତ୍ର ସାତସର୍ଗରେ ଲିପିବଦ୍ଧ ହୋଇଅଛି ଯଥା:—ବସନ୍ତପ୍ରତି ବସୁମତୀ, ଭ୍ରମରପ୍ରତି କୁସୁମ ସୁନ୍ଦରୀ, ଘନପ୍ରତି ଚାତକୀ ନିଶାନାଥପ୍ରତି କଶିଥିନୀ, ଅଗସ୍ତ୍ୟପ୍ରତି ଦକ୍ଷିଣାଶା, ମୃଗପ୍ରତି ମୃଗତୃଷ୍ଣା ଏବଂ କୋକିଳପ୍ରତି ରସାଳ-କଳିକା । ବିଷୟଗୁଡ଼ିକର ଭାଷା ଚିତ୍ତୋନ୍ମାଦକ ଭାବପରିପୂର୍ଣ୍ଣ ସୁନ୍ଦର ଏବଂ ସୁଗମ୍ଭୀର । ପୁସ୍ତକର ଛପା ସୁନ୍ଦର ଏବଂ ଚିତ୍ତାକର୍ଷକ । ଶତାଧିକ ପୃଷ୍ଠାବିଶିଷ୍ଟ ଏହି ଉପାଦେୟ କାବ୍ୟର ମୂଲ୍ୟ ବାରଅଣା ମାତ୍ର ।

## ମହେନ୍ଦ୍ର କାବ୍ୟ

### ( ସଚିତ୍ର )

ଉପରୋକ୍ତ କାବ୍ୟର ପଦ୍ଧତି କବିତ୍ୱମୟୀ ଅପୂର୍ବ ରଚନା ବାସ୍ତବରେ ଉପଭୋଗ୍ୟ । ଭାଷା ପ୍ରାଞ୍ଜଳ ଚିତ୍ତମାଦକତା ଉଚ୍ଛ୍ୱାସମୟୀ, ପ୍ରାଣବତୀ ଏବଂ ମଧୁଝଙ୍କାରିଣୀ । ପ୍ରତିପଦରେ ନୂତନତ୍ୱ ଏବଂ କବିତ୍ୱଶକ୍ତି ପ୍ରତିଭାତ । ପରିଷ୍କା-

ବେଳେ ମଧୁର ସ୍ୱପ୍ନର ସୁବର୍ଣ୍ଣରାଜ୍ୟରେ ଆନନ୍ଦାମୃତ ପାନକଲାତୁଲ୍ୟ ବୋଧହୁଏ । ପୁସ୍ତକରେ ସ୍ୱରଖଣ୍ଡ ସୁନ୍ଦରଚିତ୍ର ସନ୍ନିବିଷ୍ଟ ହୋଇଅଛି । ମୂଲ୍ୟବାନ୍ ଆଣ୍ଟିକ କାଗଜରେ ମୁଦ୍ରିତ ଚାରିଅଣା ମାତ୍ର ।

## ମହୋଦଧି

ଏ କାବ୍ୟ ସମ୍ବନ୍ଧରେ ପ୍ରଶଂସାଗର୍ଭିକ ଆଡ଼ମ୍ବର ଜ୍ଞାପନ ଅନାବଶ୍ୟକ । କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, ଏ କାବ୍ୟଖଣ୍ଡି ଭାଷା, ଭାବ ଏବଂ ଅଳଙ୍କାରର ତ୍ରିବେଣୀ ସଙ୍ଗମସ୍ୱରୂପ । ଉତ୍କଳ କାବ୍ୟ ସଂସାରରେ ଏହା ଅଭିନବ ସ୍ୱର୍ଣ୍ଣପଦ୍ମ । ପରିଷ୍କାର କାଗଜରେ ପରିପାଟୀରୂପେ ମୁଦ୍ରିତ, ମୂଲ୍ୟ ଆଠଅଣା ମାତ୍ର ।

## କଳ୍ପଲତା ।

ମିତ୍ରାକ୍ଷର କାବ୍ୟ । ଭାଷା ମାର୍ଜିତ, ରଚନାମଧୁର, ଭାବପରିପକ୍ୱ ଓ ହୃଦୟସ୍ପର୍ଶୀ । କବିତା-ଜାହ୍ନବୀ ଧୀର ଚଳ ଚଳ ସୁବର୍ଣ୍ଣ ତରଙ୍ଗ ବିସ୍ତାର ପୂର୍ବକ ପ୍ରବାହିତ । ସୁନ୍ଦର ସରଳ ଭାବଗର୍ଭ ରଚନା—ମନୋହର ପ୍ରାକୃତିକ ଦୃଶ୍ୟପୁଞ୍ଜର ବର୍ଣ୍ଣନା । ସୁଲଭ ମୂଲ୍ୟ ଦଶଅଣା ମାତ୍ର ।

## ଚିଲିକା—ଭ୍ରମଣ ।

ସରସ ଭ୍ରମଣ ବୃତ୍ତାନ୍ତ ପୁସ୍ତକ । ଏଥିରେ ସାହିତ୍ୟିକ, ଐତିହାସିକ, ଭୌଗୋଳିକ, କିମ୍ବଦନ୍ତୀକ ବିବରଣ ଏକାଧାରରେ ସନ୍ନିବିଷ୍ଟ । ଅଧିକନ୍ତୁ ସରସ ପ୍ରାକୃତିକ ବର୍ଣ୍ଣନାରେ ଏରୂପ ମନୋମଦ ଯେ, ଅନେକ ଏହାକୁ ଗଦ୍ୟ କାବ୍ୟ ଆଖ୍ୟା ପ୍ରଦାନ କରିଅଛନ୍ତି । ମୂଲ୍ୟ ଆଠଅଣା ମାତ୍ର ।

## ଯୁଗଳ ମଠ ।

ସାମାଜିକ ଉପନ୍ୟାସ । ପୁସ୍ତକର ଭାଷା ସରଳ, ସରସ ; ଭାବ—ପ୍ରାଣୋନ୍ମାଦକ ଏବଂ ନୂତନତ୍ୱ ପୂର୍ଣ୍ଣ, ରଚନାପ୍ରଣାଳୀ ଅମୃତୋପମ । ମୂଲ୍ୟ ଆଠଅଣା ମାତ୍ର ।

## ସାନ୍ଧ୍ୟତାରା ।

ନୂତନ ପ୍ରକାଶିତ କବିତାଗ୍ରନ୍ଥ । ଏଥିରେ ୫୭ ଗୋଟି ଶିକ୍ଷଣୀୟ, ସୁରସ, ଭାବୋଦ୍ଦୀପକ ନୂତନ କବିତା ସ୍ଥାନ ପାଇଅଛି । ଉତ୍କୃଷ୍ଟ କାଗଜରେ ସୁନ୍ଦର ପରିପାଟୀରେ ମୁଦ୍ରିତ । ମୂଲ୍ୟ [illegible]ଅଣା ମାତ୍ର ।